# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



# ଭାଗବତ କଥା

( ଅଷ୍ଟାବିଂଶତି ଖଣ୍ଡ )


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ପଣ୍ଡିତ ନୀଳମଣି ମିଶ୍ର



ପ୍ରକାଶକ :



[illegible] ଷ୍ଟୁଡେଣ୍ଟସ୍ ଷ୍ଟୋର

# ଭାଗବତ କଥା

## ଅଷ୍ଟାବିଂଶତି ଖଣ୍ଡ

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୮

ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ

ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ

ମୂଲ୍ୟ :
ସାଦା : ୧୫ ଟଙ୍କା
ବନ୍ଧାଇ : ୧୮ ଟଙ୍କା

# BHAGABAT KATHA

(Twentyeighth part)

Sri Prabhudatta Brahmachari

Publisher :
Smt. Annapurna Mishra
Cuttack Students' Store
Cuttack-753002

First Edition-1988

Price :
Popular Rs. 15-00
Deluxe Rs. 18-00

# ସୂଚୀ



—

# ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ

ଗୁର୍ବର୍ଥେ ତ୍ୟକ୍ତରାଜ୍ୟୋ ବ୍ୟଚରଦନୁବନଂ
ପଦ୍ମପଦ୍ଭ୍ୟାଂ ପ୍ରିୟାୟାଃ
ପାଣିସ୍ପର୍ଶାକ୍ଷମାଭ୍ୟାଂ ମୃଜିତପଥରୁଜୋ ଯୋ
ହରୀନ୍ଦ୍ରାନୁଜାଭ୍ୟାମ୍ ।
ବୈରୂପ୍ୟାଚ୍ଛୂର୍ପଣଖ୍ୟାଃ ପ୍ରିୟ ବିରହରୁଷା
ଽରୋପିତଭ୍ରୂବିଜୃମ୍ଭ
ତ୍ରସ୍ତାବ୍ଧିର୍ବଦ୍ଧସେତୁଃ ଖଳଦବଦହନଃ
କୋଶଳେନ୍ଦ୍ରୋଽବତାନ୍ନଃ ॥

(ଶ୍ରୀ ଭା ୯ସ୍କନ୍ଧ, ୧୦ଅ, ୪, ଶ୍ଳୋକ)

## ଛପ୍ପୟ

ରାମନାମ ଅଛି ମଧୁର ସୁଖଦ ସବକୁଁ ସୁଖକାରୀ ।
ରାମଧାମ ଅଛି ବିମଲ ପୁଣ୍ୟପ୍ରଦ ସବ ଅଘହାରୀ ॥
ରାମ ରୂପ ଅଛି ସୁନ୍ଦର ମନୋହର ସୁଖ ସରସାବନ ।
ରାମପ୍ରିୟା ଜଗ ଜନନି ଜୀବ ଜଗ ଜରନି ଜରାବନ ॥
ରାମ ଅନୁଜ ଆଦରଣୀ ଅଛି, ରାମଭକ୍ତ ସୁଖସାର ହେଁ ।
ରାମ-ଚରିତ ପାବନ ପରମ, ହୋବେଂ ସୁନି ଭବ ପାର ହେଁ ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ, ରାମଚନ୍ଦ୍ର ପିତାଙ୍କ ପ୍ରତିଜ୍ଞା ପୂରଣ ଲାଗି ରାଜ୍ୟ ତ୍ୟାଗ କରିଥିଲେ । ସେ ଅତ୍ୟନ୍ତ ସୁକୁମାର, ନିଜ ପ୍ରିୟାଙ୍କ ପାଣି ସ୍ପର୍ଶକୁ ମଧ୍ୟ ସେ ସହନ କରି ପାରୁ ନଥିଲେ । ସେହି ଶ୍ରୀରାମ ନିଜର

କୋମଳ ପାଦ ଯୁଗଳରେ ଅରଣ୍ୟ ମଧ୍ୟରେ ବିଚରଣ କରୁଥିଲେ । ତାହାଙ୍କର କଠିନ ଶ୍ରମକୁ ଲକ୍ଷ୍ମଣ ଓ ହନୁମାନ୍ ଦୂର କରୁଥିଲେ । ସେ ପ୍ରିୟା ବିରହରେ ବ୍ୟଥିତ ହୋଇ-ସୂର୍ପଣଖାକୁ ବିରୂପ କରାଇଥିଲେ । ତାଙ୍କର କ୍ରୋଧପୂର୍ଣ୍ଣ ଭ୍ରୂକୁଟୀ ଦେଖି ସାଗର ଭୟଭୀତ ହୋଇଥିଲେ । ସେ ସାଗରରେ ସେତୁ ନିର୍ମାଣ କରି ଦୁଷ୍ଟ ରୂପକ ବନର ଦାବାନଳ ହୋଇଥିଲେ । କୋଶଳ ଦେଶର ସେହି କିଶୋର କୁମାର ଆମମାନଙ୍କୁ ରକ୍ଷା କରନ୍ତୁ ।

ହେ ରାମଚନ୍ଦ୍ର, ଆପଣଙ୍କର ନାମ କେଡ଼େ ମଧୁର ! ପ୍ରତ୍ୟେକ ବ୍ୟକ୍ତି କୌଣସି ପ୍ରକାର ହେଉ ରାମ ନାମ ଉଚ୍ଚାରଣ ନକରି ରହିପାରୁ ନାହାନ୍ତି । ଯେଉଁ ବ୍ୟକ୍ତି ରାମ ନାମର ମାଧୁରୀ ପାଇଛି, ସେ ଦିନେ ନ ଖାଇ ନ ପିଇ ରହି ଯାଇ ପାରେ, କିନ୍ତୁ ରାମ ନାମ ଛାଡ଼ିପାରେ ନାହିଁ । ହୁଏତ ଜୀବନର ଉପଯୋଗୀ ବସ୍ତୁ ଗୁଡ଼ିକରୁ ମନ ଦୂରେଇ ଯାଇ ପାରେ, କିନ୍ତୁ ବିଳାସୀମାନେ ମଧ୍ୟ ରାମନାମ ଛାଡ଼ି ପାରନ୍ତି ନାହିଁ । ସେମାନେ ଜୀବନ ଥିବା ପର୍ଯ୍ୟନ୍ତ ରାମନାମାମୃତ ପାନ କରିବାକୁ ସତତ ଚେଷ୍ଟା କରନ୍ତି । ପ୍ରାଣଯିବାବେଳେ ରାମନାମ ମୁଖରେ ଉଚ୍ଚାରଣ କରିବା ଲାଗି ପ୍ରତ୍ୟେକ ଲୋକ ଚାହେଁ । ହେ ପ୍ରଭୋ, ତୁମ ନାମରେ କି ମାଦକତା ରହିଛି କେଜାଣି, ତାହା ଆଦୌ ଛାଡ଼ ହେଉ ନାହିଁ । ଏହି ରାମ ନାମର ମହତ୍ତ୍ୱ ଅଜ୍ଞପ୍ରାଣୀ କୁଆଡ଼ୁ ଜାଣିବ ?

'ରାମ' ଏହି ଦୁଇଟି ଅକ୍ଷରରେ ଯେପରି ମହତ୍ତ୍ୱ ରହିଛି, ଶ୍ରୀରାମଙ୍କ ଚାରୁ ଚରିତରେ ମଧ୍ୟ ସେହିପରି ଆକର୍ଷଣୀ ଶକ୍ତି ବିଦ୍ୟମାନ । କବିମାନେ ଆପଣଙ୍କ ଚରିତକୁ ଗାନ କରି ନିଜ କବିତାକୁ ସାର୍ଥକ କରୁଛନ୍ତି । ରାମନାମାତ୍ମକ କବିତାରେ କାବ୍ୟିକ ଦୋଷ ତ୍ରୁଟି ଥିଲେ ମଧ୍ୟ ମନୀଷୀମାନେ ତା'ର ପ୍ରଶଂସା ଗାନ କରନ୍ତି । ଅନେକ ବ୍ୟକ୍ତିଙ୍କର ଏହା ଏକ ବ୍ୟସନରେ ପରିଣତ ହୋଇଛି । ସେମାନଙ୍କ କାନ ଆଉ କିଛି ଶୁଣିବା ଲାଗି ପ୍ରସ୍ତୁତ ନୁହେଁ । ସେମାନଙ୍କ ମୁଖରୁ ରାମ ନାମ ବ୍ୟତୀତ ଆଉ କିଛି ବାହାରେ ନାହିଁ । ଅନେକ ବ୍ୟକ୍ତି ସାରାଜୀବନ କେବଳ ଆପଣଙ୍କ ଗୁଣଗାଥା ଲେଖି ଲେଖି ବିତାଇ ଦେଲେଣି । କିଏ ଜାଣେ ସେ ନାମରେ କି ଅମୃତ ଭରି ରହିଛି, ବାରମ୍ବାର ତାକୁ ଶୁଣିଲେ ମଧ୍ୟ ତାହା ନିତ୍ୟ ନୂତନ ରୂପରେ ପ୍ରତିଭାତ ହୁଏ ।

ଭକ୍ତମାନଙ୍କ କଥା ସ୍ୱତନ୍ତ୍ର ! ସେମାନେ ଇହ ଜଗତର ପ୍ରାଣୀ ନୁହନ୍ତି । ସେମାନେ ଶ୍ରୀରାମଙ୍କ ଅନୁଗ୍ରହ ସୃଷ୍ଟିର ପ୍ରାଣୀ । କିନ୍ତୁ ସଂସାରୀ ଲୋକମାନେ ଆପଣଙ୍କ ଚରିତକୁ ଆଦର୍ଶ ବୋଲି ମନେ କରି ଆପଣଙ୍କ ଲୀଳାର ଆଲୋଚନା କରନ୍ତି । ଶ୍ରୀରାମଙ୍କ ଜନ୍ମଠାରୁ ପୁଣି ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ଅବସ୍ଥାରେ ଆଦର୍ଶ ପୂରି ରହିଛି । ସେଥିରେ କୌଣସି ତ୍ରୁଟି ପରିଲକ୍ଷିତ ହୁଏ ନାହିଁ ।

ଶ୍ରୀରାମଙ୍କ ଜୀବନ ଚରିତ ଉପରେ ଏକ ବିହଙ୍ଗମ ଦୃଷ୍ଟି ପକାଇଲେ ମଧ୍ୟ କୌଣସିଠାରେ ଅପୂର୍ଣ୍ଣତା ଥିବାର ଦୃଷ୍ଟିଗୋଚର ହୁଏ ନାହିଁ । ଯେଉଁ ସମୟରେ ଯେପରି କାର୍ଯ୍ୟ କରାଯିବା କଥା, ଶ୍ରୀରାମ ଠିକ୍ ସେହି ଭଳି କାର୍ଯ୍ୟ କରିଛନ୍ତି । ଶ୍ରୀରାମ ହେଉଛନ୍ତି-ପରିପୂର୍ଣ୍ଣ । ତେଣୁ ସେ ଗୀତ, ନୀତ, ପ୍ରୀତ ଓ ଭୀତ ସବୁକିଛି ଜାଣିଥିଲେ । ସେଇଥିପାଇଁ ସେ ହେଉଛନ୍ତି—ଆଦର୍ଶ । ଶ୍ରୀରାମ ନିୟମ ଓ ପରମ୍ପରାର ଏକ ଆଦର୍ଶ ସ୍ଥାପନ କରି ଯାଇଛନ୍ତି । ତାଙ୍କ ତ୍ୟାଗର ତୁଳନା ନାହିଁ । ଶ୍ରୀରାମ ଈଶ୍ୱର ହୋଇ ମଧ୍ୟ ମାନବ ରୂପରେ ସମସ୍ତ ଲୀଳା କରି ଯାଇଛନ୍ତି । ତାହାହିଁ ହୋଇଛି—ମାନବ ଜାତିର ଶିକ୍ଷଣୀୟ । ସେ ମାୟାତୀତ ପୁରୁଷ ହୋଇ ମାୟାର ବନ୍ଧନ ମଧ୍ୟରେ ମାନବ ଲୀଳା ସମ୍ପାଦନ କରିଛନ୍ତି । ସେ ଏପରି କଲେ କାହିଁକି ? ଉତ୍ତରରେ କେବଳ ଏତିକି କହି ହେବ—ଧର୍ମ ସଂସ୍ଥାପନ ପାଇଁ ସେ ଏହା କରିଛନ୍ତି । ଧର୍ମ କ'ଣ ? ଯାହାର ଅଧୀନ ହୋଇ ମନୁଷ୍ୟ ଅତ୍ୟନ୍ତ କର୍ତ୍ତବ୍ୟ ନିଷ୍ଠାର ସହିତ କାର୍ଯ୍ୟ କରିଯାଏ । ଅପରିସୀମ ବିଷୟ ବାସନାକୁ ନିଜ ଜୀବନରେ ସୀମିତ କରାଇ ନିଜେ ନିର୍ବିଷୟ ହୋଇ-ଯାଏ । ଧର୍ମ ସାଧ୍ୟ ନୁହେଁ, ସାଧନ । ଭଗବାନ୍‌ଙ୍କ ଅବତାର ସାଧନ ଶିଖାଇବା ପାଇଁ ଅବତୀର୍ଣ୍ଣ ହୋଇଥିଲେ, କାରଣ ମନୁଷ୍ୟ ହେଉଛି—ସାଧକ ।

କର୍ମ ହେଉଛି—ଦୋଷମୟ, ଅପୂର୍ଣ୍ଣ ତଥା ବନ୍ଧନର କାରଣ । ଏଇଥିପାଇଁ କର୍ମ ବିହୀନ ସ୍ଥିତିକୁ ଶ୍ରେଷ୍ଠ ବୋଲି କୁହାଯାଇଛି । କେବଳ କର୍ମ ମାଧ୍ୟମରେ ବ୍ୟକ୍ତି ନୈଷ୍କର୍ମ୍ୟ ଅର୍ଥାତ୍ କର୍ମ ବିହୀନ ଅବସ୍ଥାକୁ ଲାଭ କରିପାରେ । ତେଣୁ ଧର୍ମ ପୂର୍ବକ କର୍ମ କରିବାକୁ ଉତ୍ତମ ସାଧନ ବୋଲି କୁହା ଯାଇଛି । ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି ହେଉଛି—ଇନ୍ଦ୍ରିୟ ଗୁଡ଼ିକର ଆସକ୍ତି ଅନୁସାରେ ଉପଭୋଗ କରିବା । କିନ୍ତୁ ଯେତେ ଭୋଗ କଲେ ମଧ୍ୟ ଇନ୍ଦ୍ରିୟ ପରିତୃପ୍ତ ହୁଅନ୍ତି ନାହିଁ । ତେଣୁ ଇନ୍ଦ୍ରିୟମାନଙ୍କୁ ନିୟମରେ ରଖିବାହିଁ ହେଉଛି—ଧର୍ମ । ରତି-ଲାଳସାର ପରିତୃପ୍ତି ପାଇଁ ପତ୍ନୀଙ୍କ ଆଶ୍ରୟ ଗ୍ରହଣ କର । ସେଠାରେ ମଧ୍ୟ ନିୟମ ଓ ସଂଯମର ଆବଶ୍ୟକତା ରହିଛି । ତାହାହିଁ ଆମକୁ ଧର୍ମରୁ ଶିକ୍ଷା ମିଳିଥାଏ । ଏହି ଧର୍ମଶିକ୍ଷାର ଏକମାତ୍ର ଉଦ୍ଦେଶ୍ୟ ହେଉଛି—ଭୋଗରୁ ନିବୃତ୍ତି ଓ ତ୍ୟାଗରେ ପ୍ରବୃତ୍ତି । ଏକମାତ୍ର ତ୍ୟାଗରେ ହିଁ ଅମୃତତ୍ୱ ପ୍ରାପ୍ତି ହୋଇ ପାରେ । ଶାସ୍ତ୍ର କହେ—'ତେନ ତ୍ୟକ୍ତେନ ଭୁଞ୍ଜୀଥା' ଭୋଗ କର, କିନ୍ତୁ ତ୍ୟାଗର ଭାବନା ମନରେ ସର୍ବଦା ରଖିଥାଅ । 'ମା ଗୃଧ କସ୍ୟସ୍ୱିଦ୍ ଧନମ୍'—ଅନ୍ୟର ଧନ ଅପହରଣ କରନାହିଁ । ଅଧର୍ମ ଆଚରଣ କରି କିମ୍ବା ଅନ୍ୟାୟ ଉପାୟରେ କାହାରି ବସ୍ତୁକୁ ଗ୍ରହଣ କରି ଉପଭୋଗ କର ନାହିଁ । ତେଣୁ କୁହାଯାଇଛି—ତ୍ୟାଗ ହିଁ ମହାନ୍ ଧର୍ମ । ତ୍ୟାଗ ଫଳରେ ତୁମେମାନେ ପରମପଦ ପାଇ ପାରିବ । ଶ୍ରୀରାମଚନ୍ଦ୍ର ତାଙ୍କ ଜୀବନରେ ତ୍ୟାଗକୁହିଁ ଶ୍ରେଷ୍ଠସ୍ଥାନ ଦେଇଥିଲେ । ତ୍ୟାଗ ଭାବନା ମନରେ ପୋଷଣ କରି ସେ ନିଜକୁ ଓ ନିଜର କର୍ମଧାରାକୁ ଆବୃତ୍ତ କରି ରଖିଥିଲେ । କେବଳ ତ୍ୟାଗରେ

ମର୍ଯ୍ୟାଦା ସେ ଉପଲବ୍ଧ କରିଥିବାରୁ, ଲୋକମାନେ ତାଙ୍କୁ 'ମର୍ଯ୍ୟାଦା ପୁରୁଷୋତ୍ତମ' ନାମରେ ନାମିତ କରିଥିଲେ । ଶ୍ରୀରାମଙ୍କ ଜୀବନରେ ନିୟମର ଦୃଢ଼ତା ଏବଂ ତ୍ୟାଗର ପ୍ରାବଲ୍ୟ ଦେଖାଯାଏ । କିନ୍ତୁ ଶ୍ରୀକୃଷ୍ଣଙ୍କ କର୍ମଧାରାରେ ପ୍ରେମର ପ୍ରବଳତା ଓ ତ୍ୟାଗର ଦୃଢ଼ତା ପରିଲକ୍ଷିତ ହୁଏ । ଏହାହିଁ ହେଉଛି—ଦୁଇଟି ଅବତାରର ବିଶେଷତ୍ୱ । ସେଥିପାଇଁ ଶ୍ରୀକୃଷ୍ଣଙ୍କ ଉପାସନାରେ ବ୍ୟକ୍ତିର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । କିନ୍ତୁ ଶ୍ରୀରାମଙ୍କ ଉପାସନା ସାର୍ବଜନୀନ । ଶ୍ରୀରାମଙ୍କ ଜୀବନଧାରା ଅନୁକରଣୀୟ, ଶିକ୍ଷାପ୍ରଦ ଏବଂ ଆଦର୍ଶମୟ । କିନ୍ତୁ ଶ୍ରୀକୃଷ୍ଣଙ୍କ ଚରିତ୍ର ଅନୁକରଣୀୟ ନୁହେଁ । ତାହା କେବଳ ମାତ୍ର ଶ୍ରବଣୀୟ, ପଠନୀୟ ! ଯେଉଁଥିରୁ ଅନେକ ପ୍ରକାର ଅର୍ଥ ପ୍ରକାଶ ପାଇଥାଏ । ତନ୍ମଧ୍ୟରେ ଶ୍ରେଷ୍ଠ ଅର୍ଥ ହେଉଛି—ଜଗତକୁ ଭଲ ପାଅ । ସମସ୍ତଙ୍କୁ ପ୍ରେମ ଡୋରିରେ ବାନ୍ଧି ପ୍ରେମକର ! କେବଳ ପ୍ରେମହିଁ ଜୀବନ !

ନିୟମ ଓ ପ୍ରେମ ତ୍ୟାଗ ବିନା ନିରର୍ଥକ । ତେଣୁ ଦୁଇ ଯୁଗାବତାରଙ୍କ ଜୀବନ ତ୍ୟାଗରେ ଓତପ୍ରୋତ ହୋଇଛି । ତ୍ୟାଗ ବିହୀନ ଜୀବନ ଜୀବନ ନୁହେଁ । ତାହା କେବଳ ବନ୍ଧନ ଏବଂ ମୋହଗ୍ରସ୍ତ । ଶ୍ରୀରାମଙ୍କ ଜୀବନରେ ସଂଯମପୂର୍ଣ୍ଣ ପ୍ରେମର ଜୟଗାନ କରାଯାଇଛି । ତେଣୁ ତାହା ସାର୍ବଜନୀନ ପ୍ରେମ । ଶ୍ରୀକୃଷ୍ଣଙ୍କ ଚରିତ୍ରରେ ପ୍ରେମହିଁ ସର୍ବସ୍ୱ, ପ୍ରେମ ସମ୍ମୁଖରେ ସମସ୍ତ ନିୟମ ତୁଚ୍ଛ । ତେଣୁ ସେ ମାର୍ଗ ଅତ୍ୟନ୍ତ କଠିନ । ସେ ମାର୍ଗରେ ପଦେ ପଦକେ ପତନର ସମ୍ଭାବନା ରହିଛି ।

ଶ୍ରୀରାମଙ୍କ ପ୍ରଦର୍ଶିତ ମାର୍ଗ ଯାନବାହାନ ବିହୀନ ରାଜପଥ । ସେ ପଥରେ ଆଖିରେ ଅନ୍ଧପୋଟଳି ବାନ୍ଧି ଅନାୟାସରେ ଚାଲି ହେବ । କୌଣସି ସ୍ଥାନରେ ବାଟ ହୁଡ଼ି ଯିବାର ଭୟ ନାହିଁ । ନିଶ୍ଚିତ ଭାବରେ ଯାଇ ଲକ୍ଷ୍ୟସ୍ଥଳରେ ପହଞ୍ଚି ହେବ । ଶ୍ରୀରାମ ମାନବଧର୍ମର ମହତ୍ତ୍ୱ ବୃଦ୍ଧି କରିବା ପାଇଁ ଅବତାର ଧାରଣ କରିଥିଲେ । ସେ ଜନସମାଜ ମନରେ ନିୟମ, ଶୃଙ୍ଖଳା ଏବଂ ଆଦର୍ଶ ଚରିତ୍ରର ଯେଉଁ ଛାପ ଦେଇ ଗଲେ, ତାହା ଅବିସ୍ମରଣୀୟ । ମାନବ ସମାଜ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ଅନାୟାସରେ ଭବସାଗରକୁ, ପାରି ହୋଇ ପାରିବ ।

ଶ୍ରୀରାମ କୃପଣ ନୁହନ୍ତି । ସେ ସର୍ବଦା ସବୁକିଛି ତ୍ୟାଗ କରିଛନ୍ତି । ଅନ୍ୟର ସନ୍ତୋଷ ଲାଗି ନିଜେ ଅସାମାନ୍ୟ କଷ୍ଟ ସହିଛନ୍ତି । ତେଣୁ ଶାସ୍ତ୍ରକାରମାନେ ଶ୍ରୀରାମଙ୍କର ଦୁଇଟି ସ୍ୱରୂପ ଆମ ଆଗରେ ଉଦ୍‌ଘାଟିତ କରିଛନ୍ତି । ଗୋଟିଏ ହେଉଛି—ପରଂବ୍ରହ୍ମ ଏବଂ ଅନ୍ୟଟି—ପୁରୁଷୋତ୍ତମ । ପରଂବ୍ରହ୍ମ ସ୍ୱରୂପ ଅତ୍ୟନ୍ତ ଅଗମ୍ୟ । ମହା ମହା ଯୋଗୀମାନେ ତାଙ୍କର ଅନ୍ତ ପାଇ ନାହାନ୍ତି । ତେଣୁ ସେ ଅନନ୍ତ । ସେଠାରେ ତର୍କ ବିତର୍କର ସ୍ଥାନ ନାହିଁ । ତାହା କେବଳ ଅନୁଭବ ଯୋଗ୍ୟ ଓ ଜ୍ଞାନଗମ୍ୟ !

କିନ୍ତୁ ଶ୍ରୀରାମଙ୍କ ପୁରୁଷୋତ୍ତମ ସ୍ୱରୂପର ବିଗ୍ରହ କରାଯାଇ ପାରେ । ସେ ନର ରୂପରେ ଜନ୍ମ ଗ୍ରହଣ କରି ଯେଉଁ ଲୀଳାବିସ୍ତାର କଲେ ତାହାହିଁ ହେଉଛି ସର୍ବୋତ୍ତମ ଆଦର୍ଶ । ବାଲକ କାଳରୁ ଅନ୍ୟର ସନ୍ତୋଷ ପାଇଁ ନିଜେ କିଛି ନା କିଛି ତ୍ୟାଗ କରିବା ଥିଲା ତାଙ୍କର ଆଦର୍ଶ ଓ ନିୟମ । ସେହି ତ୍ୟାଗରେହିଁ ସେ ସନ୍ତୋଷ ଅନୁଭବ କରୁଥିଲେ । ଅନ୍ତରରେ ତାଙ୍କର ଝଡ଼ର ପ୍ରବଳ ବେଗ ଉତ୍ଥିତ ହୋଇଥିଲେ ହେଁ ସେ ପ୍ରଜାରଞ୍ଜନ ପାଇଁ ପ୍ରାଣପ୍ରିୟା ସୀତା ଦେବୀଙ୍କୁ କଥା କଥାକେ ତ୍ୟାଗ କରିଥିଲେ ।

ରାଜା ଦଶରଥ ଶ୍ରୀରାମଙ୍କୁ ଯୁବରାଜ ପଦରେ ବସାଇବାକୁ ଚାହିଁଲେ, ଗୁରୁଦେବଙ୍କ ଆଜ୍ଞା ମଧ୍ୟ ମିଳିଗଲା । ଶ୍ରୀରାମଚନ୍ଦ୍ର ପିତା ଓ ଗୁରୁଙ୍କ ଆଜ୍ଞା ଲଙ୍ଘନ କରନ୍ତେ କିପରି ? ସେ ଅଭିଷେକ ଲାଗି ପ୍ରସ୍ତୁତ ହୋଇଗଲେ । ସମଗ୍ର ରାଜଧାନୀ ସୁସଜ୍ଜିତ ହୋଇଗଲା । କିନ୍ତୁ ଶ୍ରୀରାମଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା, କାରଣ ସେ ସମୟରେ ଭରତ ଓ ଶତ୍ରୁଘ୍ନ ରାଜଧାନୀରେ ଉପସ୍ଥିତ ନଥିଲେ । ସେହି ଦିନକୁ ଶୁଭଲଗ୍ନ ଜୁଟିଥିଲା । କିନ୍ତୁ ରାଜ୍ୟାଭିଷେକ ହେଉଁ ହେଉଁ ହଠାତ୍ ବନ୍ଦ ହୋଇଗଲା । ମନ୍ଥରାର ପ୍ରେରଣାରେ କୈକେୟୀ ରାଜା ଦଶରଥଙ୍କୁ ଦୁଇଟି ବର ମାଗିନେଲେ । ସତ୍ୟ ଓ ଧର୍ମ ପାଶରେ ଆବଦ୍ଧ ରାଜାଙ୍କର ଆଉ କିଛି ଉପାୟ ନଥିଲା । ସେ ବାଧ୍ୟ ହୋଇ ବର ଦୁଇଟି ଦେଇ ଦେଲେ । ଶ୍ରୀରାମ ଏ ସମ୍ବାଦ ପାଇଲେ । ସେ ଟିକିଲେମାତ୍ର ବିଚଳିତ ନ ହୋଇ ପୂର୍ବପରି ଆନନ୍ଦ ଓ ଉଲ୍ଲାସର ସହିତ ସୀତା ଓ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ବଣକୁ ଚାଲିଗଲେ । ରାଜା ଦଶରଥ ଅନେକ ବୁଝାଇଲେ; କିନ୍ତୁ ଶ୍ରୀରାମ ପିତାଙ୍କୁ ସତ୍ୟଭ୍ରଷ୍ଟ ହେବାର ଅବସର ଦେଲେ ନାହିଁ । ସେହି ଦୁଃଖରେ ରାଜା ସୁରପୁରର ଅତିଥି ହେଲେ । ଭରତ ମାମୁଁ ଘରୁ ଫେରି ରାଜସିଂହାସନ ଗ୍ରହଣ କଲେ ନାହିଁ । ସେ ଶ୍ରୀରାମଙ୍କୁ ଫେରାଇ ଆଣିବାପାଇଁ ଚିତ୍ରକୂଟ ପର୍ଯ୍ୟନ୍ତ ଗଲେ ସତ, କିନ୍ତୁ ଶ୍ରୀରାମ ଆଉ ଫେରିଲେ ନାହିଁ । ଭରତ ତାଙ୍କ ଶ୍ରୀଚରଣ ପାଦୁକା ନେଇ ଫେରି ଆସିଲେ । ଏ ସମ୍ବନ୍ଧରେ ଲୋକମାନେ ନିଜ ନିଜ ମଧ୍ୟରେ ତର୍କ ବିତର୍କ କରିବାକୁ ଲାଗିଲେ—

କ—ଶ୍ରୀରାମ ବନକୁ ଯାଇ ବୁଦ୍ଧିମତ୍ତାର କାର୍ଯ୍ୟ କରି ନାହାନ୍ତି ।

ଖ—ରାଜା ଦଶରଥ ସ୍ତ୍ରୀବଶ ହୋଇଥିଲେ । ଏପରି ଏକ ସ୍ତ୍ରୈଣ ରାଜାଙ୍କ ଆଜ୍ଞା ପାଳନ କରିବା ଉଚିତ ହୋଇ ନାହିଁ ।

ଗ—ଶ୍ରୀରାମ ଥିଲେ କ୍ଷତ୍ରିୟ, ପ୍ରଜାପାଳନ ଥିଲା ତାଙ୍କର ଧର୍ମ । ସେ କୁଳଧର୍ମ ତ୍ୟାଗ କରି ମୁନିମାନଙ୍କ ଆଚରଣରେ ବ୍ରତୀ ହେବା ଉଚିତ ନଥିଲା ।

ଘ— ରାଜଧାନୀରେ ଭରତ ଶତ୍ରୁଘ୍ନ ନଥିଲେ, ରାଜା ସ୍ତ୍ରୀବଶରେ ବଶୀଭୂତ, ଅଯୋଧ୍ୟାର ପ୍ରଜା ଶୋକାକୁଳ, ମାତା କୌଶଲ୍ୟା ଦୁଃଖିନୀ । ଏପରି ଅବସ୍ଥାରେ ମରଣାପନ୍ନ ରାଜାଙ୍କୁ ଛାଡ଼ି ବନକୁ ଯିବା ଶ୍ରୀରାମଙ୍କ ପକ୍ଷରେ ଉଚିତ ହୋଇନାହିଁ । ସେ ଭରତଙ୍କୁ ଅପେକ୍ଷା କରି ଥାଆନ୍ତେ । ସେ ଯଦି ରାଜ୍ୟ ଅଧିକାର ଆବୋରି ନେଇ ଥାଆନ୍ତେ, ତା'ହେଲେ ବନଗମନ କରିବା ତାଙ୍କ ପକ୍ଷରେ ଉଚିତ ହୋଇଥା'ନ୍ତା । ଅଯୋଧ୍ୟା ରାଜ୍ୟର ସମଗ୍ର ପ୍ରଜା ଚାହୁଁ ନାହାନ୍ତି, ସ୍ୱୟଂ ରାଜା ଚାହୁଁ ନାହାନ୍ତି, ମନ୍ତ୍ରୀ ଓ ପୁରୋହିତ ଚାହୁଁ ନାହାନ୍ତି, ଯାହାଙ୍କ ପାଇଁ ବର ଉଦ୍ଦିଷ୍ଟ ସେହି ଭରତ ମଧ୍ୟ ଚାହୁଁ ନାହାନ୍ତି, ସେପରି ଅବସ୍ଥାରେ ଗୋଟିଏ ବିକୃତ ମସ୍ତିଷ୍କା ନାରୀର କଥାରେ ସେ ବଣକୁ ଚାଲିଗଲେ କାହିଁକି ?

ଙ— ହେଲା ଏବେ ସେ ବନକୁ ଯାଇ ଥାଆନ୍ତେ ! କିନ୍ତୁ ଦିନେ ଦି'ଦିନ ରାଜପୁରୀରେ ରହି ରାଜାଙ୍କୁ ଆଶ୍ୱସ୍ତ କରି ଥାଆନ୍ତେ । ତାଙ୍କ ସହିତ ଭୋଜନ କରି ପରିସ୍ଥିତିକୁ ଆୟତ୍ତାଧୀନ କରିବା ପରେ, ସେ ବନକୁ ଯାଇଥିଲେ ଭଲ ହୋଇଥାଆନ୍ତା !

ଚ—ବନଗମନ ବିଷୟରେ ରାମ ନିତାନ୍ତ ନିଷ୍ଠୁର ହୋଇ ଉଠିଲେ । ପିତା, ମାତା, କୁଳଗୁରୁ, ପୁରୋହିତ, ବିପ୍ରଗଣ, ପ୍ରଜାବୃନ୍ଦ ତଥା ଆତ୍ମୀୟ ସ୍ୱଜନଙ୍କ ପ୍ରତି ନିଷ୍ଠୁର ବ୍ୟବହାର ଦେଖାଇ ସେ ବଣକୁ ଚାଲିଗଲେ, ଶେଷକୁ ରାଜା ଇହଧାମ ତ୍ୟାଗ କଲେ, କିନ୍ତୁ ସେ ଆଉ ରାଜପୁରୀକୁ ଫେରିଲେ ନାହିଁ ।

ଏପରି ଭାବରେ ଆହୁରି ଅନେକ ଶଙ୍କା ମନରେ ଆସି ପାରେ; କିନ୍ତୁ ଏହାର ଗୋଟିଏ ମାତ୍ର ଉତ୍ତର ମନକୁ ଆସେ—ବିରୋଧ ଫଳରେ ଶତ୍ରୁତାବୃଦ୍ଧି ପାଏ । ଅଧିକାର ସାବ୍ୟସ୍ତ କରିବାକୁ ଚାହିଁଲେ ବିବାଦ ଉପସ୍ଥିତ ହୁଏ । କେବଳ ତ୍ୟାଗ ଫଳରେ ସମସ୍ତଙ୍କ ମନକୁ ଜୟ କରାଯାଇ ପାରେ । କ୍ଷୁଦ୍ରମନା ଲୋକମାନେ ଲୋଭରେ ଅଧିକ ବଶବର୍ତ୍ତୀ ହୁଅନ୍ତି । ଉଚ୍ଚମନା ବ୍ୟକ୍ତିମାନେ ଲୋଭୀ ଲୋକମାନଙ୍କ କାର୍ଯ୍ୟକୁ ଉପେକ୍ଷା କରି ଥାଅନ୍ତି । ସେମାନଙ୍କ ପ୍ରତି ପ୍ରେମଭାବ ପ୍ରଦର୍ଶନ ପୂର୍ବକ ନିଜ ଅଧିକାର ତ୍ୟାଗ କରି ଦିଅନ୍ତି । ବାପା ମାଆମାନେ ନିଜ ଥାଳିରେ ପିଲାମାନଙ୍କୁ ଖୁଆନ୍ତି । ଥାଳିରେ ପରଶା ଯାଇଥିବା ଭଲ ଭଲ ଜିନିଷ ଗୁଡ଼ିକୁ ପିଲାମାନେ ପ୍ରଥମେ ଆବୋରି ନିଅନ୍ତି କିମ୍ବା ସେ ଗୁଡ଼ିକୁ ଶୀଘ୍ର ଶୀଘ୍ର ଖାଇ ଦିଅନ୍ତି । ପିଲାମାନଙ୍କର ଏ ପ୍ରକାର ବ୍ୟବହାର ଦେଖି ବାପା ମାଆମାନେ ହସି ଦିଅନ୍ତି । ସେମାନେ ସେତେବେଳେ

ନିଜର ଅଧିକାର ସାବ୍ୟସ୍ତ କରନ୍ତି ନାହିଁ କିମ୍ବା ପିଲାମାନେ ଖାଇ ଦେଉଥିବାରୁ, ସେଥିଲାଗି ଆକଟ କରନ୍ତି ନାହିଁ । ତେଣୁ ଜଣାଯାଏ—ନୀଚଲୋକମାନଙ୍କ କାର୍ଯ୍ୟାବଳୀ ପ୍ରତି ଦୃଷ୍ଟି ନ ଦେଇ, ନିଜର ତ୍ୟାଗବୃତ୍ତି ବଳରେ ଉଚ୍ଚମନା ବ୍ୟକ୍ତିଗଣ ସେମାନଙ୍କ ହୃଦୟକୁ ଜୟ କରନ୍ତି । ଯୁଦ୍ଧରେ ଜୟ କରି ଅଧିକାର ସାବ୍ୟସ୍ତ ଫଳରେ ହୃଦୟ ଜୟ କରି ହୁଏ ନାହିଁ କିମ୍ବା ତାହା ଉତ୍ତମ ମାର୍ଗ ନୁହେଁ ।

ତେଣୁ କୁହାଯାଇ ପାରେ—

କ—ଶ୍ରୀରାମ ବନକୁ ଯାଇ ଭୁଲ୍ କରି ନାହାନ୍ତି, ବରଂ ତାହା ବୁଦ୍ଧିମତ୍ତାର କାର୍ଯ୍ୟ ହୋଇଛି । ସେଇଥିପାଇଁ ତାଙ୍କ ଚରିତ ଆଜିସୁଦ୍ଧା ଲୋକ-ମୁଖରେ ଗୀତ ହୋଉଛି ଏବଂ ସେ ପୁରୁଷୋତ୍ତମ ରୂପେ ଖ୍ୟାତିତ ହେଉଛନ୍ତି ।

ଖ—ରାଜା କୈକେୟୀଙ୍କ ବଶରେ ଥିବାର ସୂଚନା ଶ୍ରୀରାମ ପାଇଥିଲେ । ଆଉ ମଧ୍ୟ ସେ ଜାଣିଥିଲେ ଯେ, ରାଜା ଯାହା କିଛି କରୁଛନ୍ତି, ସବୁ କିଛି ବାଧ୍ୟ ହୋଇ କରୁଛନ୍ତି । ଧର୍ମ ବନ୍ଧନରେ ବନ୍ଦୀ ହୋଇ ସେ ନିଜେ ଅସହାୟ ହୋଇ ପଡ଼ିଥିଲେ । ରାଜା ଦଶରଥ କୈକେୟୀଙ୍କୁ ଖୁବ୍ ଭଲ ପାଉଥିଲେ ସତ, କିନ୍ତୁ ବରପ୍ରଦାନ ପରେ ତା'ର ଅବସ୍ଥା କ'ଣ ହୋଇଛି, ସେ ବିଷୟରେ ସେ ଚିନ୍ତା କରି ନାହାନ୍ତି । ସେ କେବଳ ଗୋଟିଏ ବିଷୟ ଚିନ୍ତା କରିଛନ୍ତି, ତାହା ହେଉଛି—ପ୍ରତିଜ୍ଞା ପାଳନରେ ଦୃଢ଼ତା । ରଘୁବଂଶର କୌଣସି ରାଜା ନିଜ ପ୍ରତିଜ୍ଞାରୁ ବିଚ୍ୟୁତ ହୋଇ ନଥିଲେ । ତେଣୁ ରାମଚନ୍ଦ୍ର ପିତାଙ୍କ ପ୍ରତିଜ୍ଞାର ପ୍ରତିପାଳନ ନିମିତ୍ତ ବନକୁ ଯାଇଥିଲେ । ଅବଶ୍ୟ ତାହା ଫଳରେ ବିମାତା କୈକେୟୀ ଖୁସି ହୋଇଥିଲେ । କାରଣ କୈକେୟୀ ତାହାହିଁ ଚାହୁଁଥିଲେ ।

ଗ—ଶ୍ରୀରାମ ଗୃହସ୍ଥ ଧର୍ମ ତ୍ୟାଗ କରି ବାନପ୍ରସ୍ଥ ଗ୍ରହଣ କରି ନ ଥିଲେ । ବନରେ ଚତୁର୍ଦ୍ଦଶବର୍ଷ କାଳ କାଟିବା ପାଇଁ ସେ ମୁନିବେଶ ଧାରଣ କରିଥିଲେ । ସେଠାରେ ମଧ୍ୟ ତ୍ୟାଗ ଆଚରଣ ପୂର୍ବକ ସ୍ୱଧର୍ମ ପାଳନ କରିଥିଲେ ।

ଘ—ଶ୍ରୀରାମ ଭଲ ଭାବରେ ଜାଣିଥିଲେ ଯେ, ପ୍ରଜାମାନେ ତାଙ୍କ ପ୍ରତି ଅତ୍ୟନ୍ତ ଅନୁକୂଳ । ସେ ଯେତେବେଳେ ଇଚ୍ଛା କରିବେ ପ୍ରଜାଙ୍କ

ସାହାଯ୍ୟରେ ଅଯୋଧ୍ୟାର ସିଂହାସନରେ ବସି ପାରିବେ । ପ୍ରଜାମାନେ କେବେହେଲେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବେ ନାହିଁ । ଯଦି ସେ ଲୋଭବଶତଃ ବନକୁ ଯାଇ ନ ଥା'ନ୍ତେ, ତେବେ କୈକେୟୀ ବିଶେଷ ନିନ୍ଦିତା ହୁଅନ୍ତେ ନାହିଁ । କେବଳ ରାଜା ଧର୍ମଦ୍ରୋହୀ ରୂପେ ପ୍ରଗ୍ଣିତ ହେବେ । ହୁଏତ ଦିନ ଆସିବ, ଯେତେବେଳେ ଅଯୋଧ୍ୟାର ପ୍ରଜାମାନେ ରଘୁବଂଶର ନିଷ୍ଠା ଉପରେ ଆକ୍ଷେପ କରି ଥାଆନ୍ତେ ।

ଙ—ପିତାଙ୍କ ଅନୁରୋଧ ରକ୍ଷାକରି ଶ୍ରୀରାମ ଯଦି ଗୋଟିଏ ଦିନ ରହିଯାଇ ଥାଆନ୍ତେ, ତା'ହେଲେ ଆଜିର ସମାଜରେ ସେ ଯେତିକି ପୂଜ୍ୟ ବା ଆଦରଣୀୟ ହୋଇ ପାରିଛନ୍ତି, ସେପରି ହୋଇ ପାରି ନ ଥାଆନ୍ତେ । ସେ ବନଗମନକୁ କେବେହେଲେ ଟାଳି ପାରି ନଥାନ୍ତେ । ହୁଏତ ଗୋଟିଏ ଦିନ ରହି ଯାଇଥିଲେ, କୈକେୟୀ କଣ' ନାଇଁ କ'ଣ କରି ଥାଆନ୍ତେ । ଶତ୍ରୁତା ହୁଏତ ଉଗ୍ରରୂପ ଧାରଣ କରି ଥାଆନ୍ତା । ତା'ଫଳରେ ରାଗ, ଦ୍ୱେଷ ତଥା ସେହି କାରଣରୁ ଉଭୟ ପକ୍ଷ ମଧ୍ୟରେ କଳହର ଯେଉଁ ଲେଲିହାନ ଶିଖା ଉତ୍ଥିତ ହୋଇଥା'ନ୍ତା ତାକୁ ସହଜରେ ଏଡ଼ାଇବା ସମ୍ଭବ ହୋଇ ନ ଥା'ନ୍ତା । ଶ୍ରୀରାମ ସେହି ଦିନ ବନକୁ ଚାଲି ଯିବା ଫଳରେ ସମସ୍ତ ପ୍ରକାର ଆଶଙ୍କାର ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ତାହାର ଫଳରେ ଶ୍ରୀରାମ ଜଗତର ଆଦର୍ଶ ତଥା ଆଦରଣୀୟ ହୋଇ ପାରିଲେ ।

ଲକ୍ଷ୍ମଣ ଶ୍ରୀରାମଙ୍କୁ ଅନେକ ପ୍ରକାର ପ୍ରଲୋଭନ ଦେଖାଇଥିଲେ । ଏପରକି ରାଜା ଓ କୈକେୟୀଙ୍କୁ ବନ୍ଦୀ କରି ଶ୍ରୀରାମଙ୍କୁ ସିଂହାସନରେ ବସାଇବାର ଘୋଷଣା କରିଥିଲେ । ଅନ୍ୟ କେହି ସାଧାରଣ ବ୍ୟକ୍ତି ହୋଇଥିଲେ ଏତେ ସୁନ୍ଦର ସୁବିଧା ଓ ସାହାଯ୍ୟ ପାଇ ଧର୍ମକୁ ଆଖିଠାର ମାରି ଦେଇ, ଅନାୟାସରେ ସୁବିଧାଜନକ ହାସଲ କରି ଥାଆନ୍ତା ! କିନ୍ତୁ ଶ୍ରୀରାମ ହିଁ ଶ୍ରୀରାମ ! ସେ ଲକ୍ଷ୍ମଣଙ୍କୁ ଏପରି ଭାବରେ ମୃଦୁ ଭର୍ତ୍ସନା କଲେ ଯେ, ସୌମିତ୍ରିଙ୍କ ପାଟି ଖୋଲିଲା ନାହିଁ ଏବଂ ଆଉ ପଦେ ହେଲେ କିଛି କହିବାକୁ ସାହସ କଲେ ନାହିଁ । ଶ୍ରୀରାମଙ୍କ ମନରେ ସିଂହାସନର ଲାଳସା ନ ଥିଲା । ସେ ଚକ୍ରିକଳହକୁ ମେଣ୍ଟାଇବା ଲାଗି ଆତ୍ମତ୍ୟାଗର ଯେଉଁ ବ୍ରତ ଗ୍ରହଣ କଲେ, ତା'ଫଳରେ ତାଙ୍କ ଶତ୍ରୁମାନଙ୍କ ମୁହଁ ବନ୍ଦ ହୋଇଗଲା । ସେ ତ୍ୟାଗ ରୂପକ ତୀକ୍ଷ୍ଣ ଅସ୍ତ୍ର ବଳରେ ଶତ୍ରୁମାନଙ୍କ ହୃଦୟକୁ ଅନାୟାସରେ ଜୟକରି ପାରିଲେ । ତା' ସଙ୍ଗେ ସଙ୍ଗେ ନିଜ ବଂଶର ମର୍ଯ୍ୟାଦା ରକ୍ଷା କରିବାରେ ସେ ସମର୍ଥ ହୋଇପାରିଲେ । ସେ ଯଦି ସେଇଠି ଟିକିଏ ମାତ୍ର ଭୁଲ୍ କରି ଦେଇ ଥାଆନ୍ତେ, ଆଜିର ସମାଜ ତାଙ୍କ ପାବନ ଚରିତକୁ ପାଠ କରି ଆତ୍ମହରା ହେଉ ନଥା'ନ୍ତା !

ଶ୍ରୀରାମଙ୍କ ଚରିତ୍ରର ପ୍ରଧାନ ପ୍ରସଙ୍ଗ ହେଉଛି—ବନଗମନ । ସେ ଅବଶ୍ୟ ବିବାହ ପର୍ଯ୍ୟନ୍ତ କିମ୍ବା ଆଦର୍ଶ ଉପସ୍ଥାପିତ କରି ନଥିଲେ ଏବଂ ବନରୁ ଫେରି ଏଗାର ହଜାର ବର୍ଷ ସେ ଯେପରି ଭାବରେ ରାଜସିଂହାସନରେ ବସି ନ୍ୟାୟର ତୁଲାଦଣ୍ଡରେ ନିଜକୁ ଚାଳିଲି ଥିଲେ, ସେଗୁଡ଼ିକୁ ଜନତା ବିଶେଷ ମନେ ରଖିନାହିଁ । ବନଗମନର ପୂର୍ବ ଓ ପର ଅବସ୍ଥାରେ ସେ ରାଜକୁମାର ଓ ରାଜାର କର୍ତ୍ତବ୍ୟ ନିଷ୍ଠାର ସହିତ ପାଳନ କରିଥିଲେ । ତା' ମଧ୍ୟରେ ସେପରି କିଛି ଚିରସ୍ମରଣୀୟ ଘଟଣା ନଥିଲା । ବ୍ରାହ୍ମଣ ହୋଇ ପ୍ରାତଃ ସ୍ନାନ, ସନ୍ଧ୍ୟା ବନ୍ଦନାଦି କରିବାରେ ବୈଶିଷ୍ଟ୍ୟ କେଉଁଠି ? ହଁ, ସେ ଯଦି ତା ସହିତ ଦାନ, ଧର୍ମ ଓ ତପସ୍ୟା ଆଦିରେ ମନୋନିବେଶ କରନ୍ତି, ତେବେ ସାମାନ୍ୟତଃ ସେ ଲୋକ ମୁଖରେ ପ୍ରଶଂସିତ ହୋଇ ପାରନ୍ତି । କିନ୍ତୁ କୌଣସି ସ୍ଥାନର ଶାସନ ଅଧ୍ୟକ୍ଷ ପଦରେ ପ୍ରତିଷ୍ଠିତ ହେବାର ସୁଯୋଗକୁ ଯଦି ସେ ହସି ହସି ଏଡ଼ାଇ ଦିଅନ୍ତି, ତା'ହେଲେ ତାହାହିଁ ହେବ ବ୍ରାହ୍ମଣ ଗୋସାଇଁଙ୍କର ବିଶେଷତ୍ୱ ! ଠିକ୍ ସେହିପରି ରାଜକୁମାର ରାମଚନ୍ଦ୍ର ରାଜ୍ୟାଧିକାର ପାଇ ସୁଦ୍ଧା ହସି ହସି ତାକୁ ତ୍ୟାଗ କରିଦେଇ କଷ୍ଟମୟ ବନବାସ ଜୀବନକୁ ଆଦରି ନେବା କିମ୍ବା ତ୍ୟାଗର ବିଷୟ ନୁହେଁ । ତାହାହିଁ ତାଙ୍କ ଚରିତ୍ରର ବୈଶିଷ୍ଟ୍ୟପୂର୍ଣ୍ଣ ଆଦର୍ଶ । ଆଜିର ଜନତା ତାଙ୍କର ସେହି ବନବାସୀ ରୂପକୁ ମନେରଖି, ସେହି ଆଦର୍ଶରେ ଅନୁପ୍ରାଣିତ ହେଉଛି ।

ବନବାସ ଜୀବନର ମନୋରମ ଆଦର୍ଶ ସେ ଉପସ୍ଥାପିତ କରି ଯାଇଛନ୍ତି । କୌଣସିଠାରେ ସ୍ଥାୟୀ କୁଟୀର ନିର୍ମାଣ ନ କରି ସେ ତେରବର୍ଷ କାଳ ବଣରେ ବୁଲିଥିଲେ । ବୀତରାଗୀମାନେ କୌଣସିଠାରେ କୁଟୀର ନିର୍ମାଣ କରି ରହିଲେ, ସେ ସ୍ଥାନ ପ୍ରତି ତାଙ୍କ ମନରେ ସ୍ୱାଭାବିକ ଅନୁରାଗ ଜାତ ହୋଇଥାଏ । ତା' ଫଳରେ ସେ ଆଉ ନିର୍ଲିପ୍ତ ହୋଇ ବିଚରଣ କରିପାରେ ନାହିଁ । ଜୀବନରେ ନିୟମିତତା ଆସିଯାଏ, ସହଯୋଗୀମାନଙ୍କ ଦୋଷ ଓ ଗୁଣ ଦେଖି ନିନ୍ଦା ପ୍ରଶଂସା କରିବାକୁ ପଡ଼େ । ସେଇଥି ପାଇଁ କୁହାଯାଇଛି –

"ପାଣି ବହି ବୁଲିଥିଲେ ଗୋଳିଆ ହୁଏନି ।
ସାଧୁ ଘୂରି ବୁଲୁଥିଲେ ତା ସାଧୁତା ରହେ ॥"

ଶେଷ ବର୍ଷଟି ଗୋଟିଏ ଆଶ୍ରମ ନିର୍ମାଣ କରି ପଞ୍ଚବଟୀରେ ରହିବାରୁ ସବୁ ଅନର୍ଥ ଆସି ଉପସ୍ଥିତ ହୋଇଗଲା । କେଉଁ ଅଡ଼ୁ ଆସି ହତଭାଗିନୀ ସୂର୍ପଣଖା ସେଠାରେ ପହଞ୍ଚିଗଲା । ସେ ଶ୍ରୀରାମଙ୍କୁ ଦେଖିବା ମାତ୍ରେ ତାଙ୍କ ରୂପରେ ମୁଗ୍ଧ ହୋଇଗଲା । ଏଥିରେ ଦୋଷ ଥିଲା – ଶ୍ରୀରାମଚନ୍ଦ୍ରଙ୍କର । କାରଣ ସେ ଯଦି ଖୁବ୍ ସୁନ୍ଦର ହୋଇ ନଥାନ୍ତେ, ନରମାଂସ ଭକ୍ଷଣରେ ଉନ୍ମତ୍ତ ହୋଇଥିବା ରାକ୍ଷସୀ ସୂର୍ପଣଖା ତାଙ୍କ ରୂପରେ

ମୁଗ୍‌ଧ ହୋଇ ନଥା'ନ୍ତା ! କିନ୍ତୁ ସେଥିରେ ଶ୍ରୀରାମଙ୍କର ଉପାୟ କ'ଣ ? ସେ ମାୟାବୀ ନଥିଲେ; ତେଣୁ ପ୍ରକୃତ ସ୍ୱରୂପରେ ଦେଖା ଦେଇଥିଲେ । କିନ୍ତୁ ମାୟାବିନୀ ରାକ୍ଷସୀ କୁରୂପା ଥିଲେ ମଧ୍ଯ ବାହାରକୁ ସୌନ୍ଦର୍ଯ୍ୟର ଆବରଣରେ ନିଜକୁ ଭୂଷିତ କରିଥିଲା । ଅନ୍ୟ କେହି ଦେବତା ହୋଇଥିଲେ, ଯେକୌଣସି ରୂପରେ ଦେଖା ଦେଇ ପାରିଥାନ୍ତେ । କିନ୍ତୁ ଶ୍ରୀରାମ ସେପରି କରି ପାରିଲେ ନାହିଁ ।

ଅବଶ୍ୟ ଏଠାରେ ଆମ ମନରେ ଆଉ ଗୋଟିଏ ପ୍ରଶ୍ନ ଉଙ୍କି ମାରେ । ସେ ଜାଣିଶୁଣି ବିଚାରି ପ୍ରେମ ପାଗଳିନୀ ରାକ୍ଷସୀଟାକୁ କୁରୂପ କଲେ କାହିଁକି ? ଏହାତ ସମ୍ପୂର୍ଣ୍ଣ ଅନ୍ୟାୟ !

ହଁ, ଉପରକୁ ଏହା ଅନ୍ୟାୟ ବୋଲି ଜଣା ପଡୁଥିଲେ ମଧ୍ଯ ଶ୍ରୀରାମ କୌଣସି ଅନ୍ୟାୟ କାର୍ଯ୍ୟ କରି ନଥିଲେ । ସୂର୍ପଣଖାକୁ ଦଣ୍ଡ ଦେଇ ସେ ପ୍ରକୃତରେ ଏକ ଆଦର୍ଶ ଉପସ୍ଥାପିତ କରିଥିଲେ । ସାମ, ଦାନ, ଭେଦ,ବୁଦ୍ଧି ପ୍ରୟୋଗ କରିବା ପରେ, ସେ ଦଣ୍ଡ ବିଧାନ କରିଥିଲେ । ଯେଉଁ ମନରେ କାମବାସନା ଜାଗ୍ରତ ହୋଇଛି, ସେଠାରେ ରାମ ଆସନ ଗ୍ରହଣ କରିବେ କିପରି ? ଯେଉଁଠାରେ 'କାମ' ରହିଛି, ସେଠାରେ 'ରାମ' ରହି ନ ପାରନ୍ତି !

ଶ୍ରୀରାମଙ୍କ ଭୁବନ ମନୋହର ବେଶ ଦେଖିବା ମାତ୍ରେ, ରାକ୍ଷସୀ ତାଙ୍କୁ ବିବାହ କରିବା ପାଇଁ ଆଗେଇ ଆସିଲା । ଶ୍ରୀରାମ ରାକ୍ଷସୀକୁ ବୁଝାଇ ଦେଲେ, କିନ୍ତୁ ସୂର୍ପଣଖା କୌଣସିମତେ ତାଙ୍କ କଥା ବୁଝିଲା ନାହିଁ । ତହୁଁ ଶ୍ରୀରାମ ଭାଇ ଲକ୍ଷ୍ମଣଙ୍କୁ ବରଣ କରିବା ଲାଗି ରାକ୍ଷସୀକୁ କହାଇ ଦେଲେ ।

ତଥାପି ରାକ୍ଷସୀର ଆଶା ପୂରଣ ହେଲା ନାହିଁ । ଲକ୍ଷ୍ମଣ ଭାଇ ଭାଉଜଙ୍କ ସେବାରେ ଆତ୍ମୋତ୍ସର୍ଗ କରିଥିଲେ । ତେଣୁ ସେ ରାକ୍ଷସୀର ଲାଳସାର ବଶବର୍ତ୍ତୀ ହେଲେ ନାହିଁ ।

ପୁଣି ରାକ୍ଷସୀ ଧାଇଁଗଲା ଶ୍ରୀରାମଙ୍କ ନିକଟକୁ । ଶ୍ରୀରାମ ସମୟ ଗଡ଼େଇ ଦେବାପାଇଁ ପୁଣି ତାକୁ ଲକ୍ଷ୍ମଣଙ୍କ ନିକଟକୁ ପଠାଇଲେ । କାମ, ଜ୍ୱର ତଥା ବୈରାଗ୍ୟର ବେଗ ସବୁବେଳେ ସମାନ ନ ଥାଏ । ରାକ୍ଷସୀ କାମରେ ବଶୀଭୂତା ହୋଇ ଯାଇଥିଲା । ସେ ଲକ୍ଷ୍ୟ କଲା— ଶ୍ରୀରାମ ନିର୍ବିକାର ପୁରୁଷ, କାମରେ ବଶୀଭୂତ ହେଉ ନାହାନ୍ତି । ତେଣୁ ତା' ମନରେ କ୍ରୋଧଜାତ ହେଲା—'କାମାତ୍ କ୍ରୋଧୋଽଭିଜାୟତେ' କାମବାସନା ପୂରଣ ନ ହେଲେ ମନକୁ କ୍ରୋଧ ଆବୋରି ବସେ । ରାକ୍ଷସୀ କ୍ରୋଧରେ

ଗର୍ଜନ କରି ସୀତା ଦେବୀଙ୍କୁ ଖାଇବା ଲାଗି ଧାଇଁଗଲା । ବିନା ଦୋଷରେ ସୀତାଙ୍କ ପ୍ରତି ସେ ଅତ୍ୟାଚାର କରିବାକୁ ଚେଷ୍ଟା କଲା । ତେଣୁ ଆଉ ଉପାୟ କ'ଣ ଥିଲା ? ଶ୍ରୀରାମ ତା'ର ନାକ, କାନ କାଟି ଛାଡ଼ି ଦେଲେ । କାରଣ ସୂର୍ପଣଖା ଥିଲା— ଆତତାୟୀନୀ । ଆତତାୟୀକୁ ଦଣ୍ଡ ଦେବା; ଏପରିକି, ବଧ କରିବା ଆଦୌ ଅନ୍ୟାୟ ନୁହେଁ । ଶ୍ରୀରାମ ସୂର୍ପଣଖାକୁ ଉଚିତ ଦଣ୍ଡ ଦେଇ, ସ୍ୱାମୀ ଭାବରେ ନିଜର କର୍ତ୍ତବ୍ୟ ପାଳନ କରିଛନ୍ତି । ତା'ବ୍ୟତୀତ ତାଙ୍କ ଜିତେନ୍ଦ୍ରିୟତା ତାଙ୍କୁ ନିର୍ଭୀକ କରାଇ ପାରିଛି । ସେ ପୂର୍ଣ୍ଣ ପବିତ୍ରତାର ମୂର୍ତ୍ତିମନ୍ତ ସ୍ୱରୂପ ରୂପେ ଜଗଦ୍‌ବାସୀଙ୍କ ସମକ୍ଷରେ ଉଦ୍‌ଭାସିତ ହୋଇ ଉଠିଛନ୍ତି ।

ମନରେ ଆଉ ଏକ ପ୍ରଶ୍ନ ଉଠେ—ଶ୍ରୀରାମ ତା'ସହିତ ଥଟ୍ଟା ପରିହାସ କଲେ କାହିଁକି ? ପ୍ରକୃତରେ ଦେଖିବାକୁ ଗଲେ—ଏଥିରେ ମଧ ଶ୍ରୀରାମଙ୍କର କିଛି ଦୋଷ ନଥିଲା । କାରଣ ହଠାତ୍ ଗୋଟିଏ ସୁନ୍ଦରୀ ସ୍ତ୍ରୀ ଆସି ଏପରି ଏକ ଅନୁଚିତ ପ୍ରସ୍ତାବ କଲେ, ମନରେ ସ୍ୱତଃ କୌତୂହଳ ଜାତ ହୋଇଥାଏ । ସେହି କୌତୂହଳର ବଶବର୍ତ୍ତୀ ହୋଇ ଶ୍ରୀରାମ ସୂର୍ପଣଖା ସହିତ ପରିହାସରେ ମାତିଥିଲେ । ହଠାତ୍ ତାକୁ ମାରି ଘଉଡ଼ାଇ ଦେବା କିମ୍ବା କଟୁକଥା କହି ତା'ମନକୁ ବିଷାକ୍ତ କରିବା ଆଦୌ ଉଚିତ ହୋଇ ନଥା'ନ୍ତା !

ଏହିପରି ଭାବରେ ଦେଖିବାକୁ ଗଲେ, ଶ୍ରୀରାମଙ୍କ ଚରିତ୍ରରେ କୌଣସି ଦୋଷ ପରିଲକ୍ଷିତ ହୁଏ ନାହିଁ । ଶ୍ରୀରାମଚନ୍ଦ୍ର ହେଉଛନ୍ତି—ମାନବଧର୍ମର ପ୍ରତୀକ, ତ୍ୟାଗର ମୂର୍ତ୍ତି, ପ୍ରେମର ସଜୀବ ପ୍ରତିମା, ନୈତିକ ବ୍ୟବହାରର ଉପଦେଷ୍ଟା, ମର୍ଯ୍ୟାଦାର ସଂରକ୍ଷକ ଏବଂ ସଦାଚାରର ମୂର୍ତ୍ତିମନ୍ତ ସ୍ୱରୂପ । ତାଙ୍କ ଚରିତ୍ରର ବିଶୁଦ୍ଧତା ମଧ୍ୟରେ କୌଣସି ତ୍ରୁଟି ପରିଲକ୍ଷିତ ହୁଏ ନାହିଁ । ଶ୍ରୀରାମଙ୍କ ଚରିତ କେବଳ ମୁକ୍ତିମାର୍ଗର ସଙ୍କେତ ରୂପେ ଗ୍ରହଣ କରିବା ଲାଗି ପାଠକ ସମାଜକୁ ଅନୁରୋଧ । କାରଣ ସେ ଚରିତରେ ଅତିରଞ୍ଜନର ମାତ୍ରା ନିତାନ୍ତ ନଗଣ୍ୟ । ବରଂ ତାଙ୍କର କୀର୍ତ୍ତିକଳାପର ବର୍ଣ୍ଣନାରେ ମୁଁ ଆଦୌ ସମର୍ଥ ନୁହେ । ତେଣୁ ଭକ୍ତର ସହିତ ଶ୍ରୀରାମଙ୍କ ଗୁଣଗାନ କରିବା ଏକମାତ୍ର ଧ୍ୟେୟ ହେବା ଉଚିତ ।

ଶ୍ରୀରାମଙ୍କ ପରି ପ୍ରଭୁ ଜଗତରେ ନାହାନ୍ତି । କିନ୍ତୁ ଆମ ପରି ଅଭାଗା ସେବକ ତାଙ୍କୁ ଚିହ୍ନିପାରୁ ନାହାନ୍ତି । ଏଥିରେ କ୍ଷତି କାହାର ? ତାଙ୍କ ଶ୍ରୀପଦ୍ମରେ ସେବକ ଅଭାବ ନାହାନ୍ତି । ତାଙ୍କ ଶ୍ରୀଚରଣରେ ସେବକ ଅଭାବ ନଥିଲେ ମଧ ସାଂସାରିକ ବନ୍ଧନରେ ବନ୍ଦୀ ହୋଇଥିବା ପ୍ରାଣୀମାନଙ୍କୁ ଉଦ୍ଧାର କରିବା ତାଙ୍କର ଧର୍ମ । ତା' ନ କଲେ ସେ ପ୍ରଭୁପଣକୁ ସମର୍ଥ ହେବେ କିପରି ?

କ'ଣ କହୁଛନ୍ତି ରାମସ୍ୱାମୀଙ୍କ ? ନିଜ ଶ୍ରୀଚରଣରେ ଆଶ୍ରୟ ଦେବେତ ? ବିସ୍ତାର କରନ୍ତୁ !.

## ଛପ୍‌ପୟ୍

ରାମ ! ହୃଦୟ୍ ମହଁ ବସୋ କାମ କୁଁ ତୁରତ ଭଗାଓ ।
ରାମ ! ମଲିନ ମାରୀଚ ବନେ୍‌ୟା ମନ ମାର ଗିରାଓ ॥
ରାମ ! ସିନ୍ଧୁ ଭବ ବହୁତ ସେତୁ କର ପାର ଲଗାଓ ।
ରାମ ! ନିହାରେ ରାହୁ ଅଇ ତନ ତପନ ବୁଝାଓ ॥
ରାମ ! ନ ସାଧନ ଭଜନ ମନ ବନେ ପରେ ପାଷାନ ହମ ।
ରାମ ! ଛୁଆଓ ଚରନ ନିଜ, ହ୍ୱୋ ଜଡ଼ ଚେତନ କରନ ତୁମ ।



# ମିଥିଳା ପଥେ ଶ୍ରୀରାମ

ଯୋ ଲୋକବୀର ସମିତୌ ଧନୂରୈଶମୁଗ୍ରଂ
ସୀତାସ୍ୱୟମ୍ବର ଗୃହେ ତ୍ରିଶତୋପନୀତମ୍ ।
ଆଦାୟ ବାଲଗଜଲୀଲ ଇବେକ୍ଷୁୟଷ୍ଟିଂ
ସଜ୍ଜୀକୃତଂ ନୃପ ବିକୃଷ୍ୟ ବଭଞ୍ଜ ମଧ୍ୟେ ॥

(ଭାଗ ୯, ସ୍କ ୧୦, ଅ ୬ ଶ୍ଳୋ)

## ଛପ୍‌ପୟ

ମାରି ତାଡ଼କା ଚଲେ ଫେର ସିଦ୍ଧାଶ୍ରମ ଆଏ ।
ଗୁରୁମଖ ଦୀକ୍ଷିତ ଭୟେ ରାମ ରକ୍ଷକ କହଲାୟେ ॥
ପୂର୍ଣ୍ଣାହୁତ କେ ଦିବସ ନିଶାଚର ଦଳ ଇକ ଆୟୋ ।
ମାରେଯା ରାମ ସୁବାହୁ ଲଙ୍କ ମରୀଚ ପଠାୟୋ ॥
ମଖ ରକ୍ଷକ ଶ୍ରୀରାମ ପେ, ଅତି ପ୍ରସନ୍ନ ମୁନିବର ଭୟେ ।
ଆଶିଷ ବୁଲହିନ ଦେନହିତ, ଧନୁଷ ଯଜ୍ଞ ମହଁ ଲେ ଗୟେ ॥

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଶ୍ରୀରାମ ସୀତାଙ୍କ ସ୍ୱୟମ୍ବର ସଭାରେ ଉପସ୍ଥିତ ହେଲେ । ସ୍ୱୟମ୍ବର ଗୃହରେ ରଖା ଯାଇଥିବା ତଥା ତିନିଶହ ଲୋକଙ୍କ ଦ୍ୱାରା ଅଣା ଯାଇଥିବା ଶିବ ଧନୁଟିକୁ, ଛୋଟ ହାତୀଟିଏ ଆଖୁଗଛ ଅନାୟାସରେ ଭାଙ୍ଗି ଦେଲା ପରି ଶ୍ରୀରାମ ଅକ୍ଳେଶରେ ମଧ୍ୟଭାଗରୁ ଦୁଇଖଣ୍ଡ କରିଦେଲେ ।

ଶକ୍ତି ବ୍ୟତୀତ ମନୁଷ୍ୟ ଶୋଭା ପାଏ ନାହିଁ । ଶକ୍ତିହୀନ ମଣିଷ ସର୍ବଦା ପରାଧୀନ ହୋଇଥାଏ । ବାଳକ ଶକ୍ତିମାନ୍ ହୋଇ ନ ଥିବାରୁ ଅନ୍ୟ ଉପରେ ନିର୍ଭର

କରିଥାଏ । ଶୁଣାଯାଏ—ଥରେ ଜଣେ ଆଗ୍ନୀଧ୍ର ଶକ୍ତି ପୂଜା ନ କରି କେବଳ ଶିବପୂଜା କରୁଥିଲେ । ଧୀରେ ଧୀରେ ତାଙ୍କୁ ରୋଗ ଗ୍ରାସ କଲା । ସେ ନିତାନ୍ତ ଶକ୍ତିହୀନ ହୋଇ ଗୋଟିଏ ସ୍ଥାନରେ ପଡ଼ି ରହିଲେ । ଜଗଦମ୍ବା ଗୋଟିଏ ଗଉଡ଼ୁଣୀ ବେଶରେ ଆସି ତାଙ୍କ ପାଖରେ ପହଞ୍ଚି ଦହି ପସରାଟିକୁ ଥୋଇ ଦେଇ ଦହି ବିକିଲେ । କିଛି ସମୟ ପରେ ସେ ଦୁର୍ବଳ ଆଗ୍ନୀଧ୍ରଙ୍କୁ କହିଲେ—"ମହାଶୟ, ଏହି ପସରାଟିକୁ ମୋ' ମୁଣ୍ଡକୁ ଟେକି ଦେବେକି ?"

ଆଗ୍ନୀଧ୍ର କହିଲେ—"ମାଆ, ମୋ ଶରୀରରେ ଶକ୍ତି ନାହିଁ ।"

ଦେବୀ ହସି ହସି କହିଲେ—"ତୁମେ ଶକ୍ତିଙ୍କ ଉପାସନା ନ କରି କେବଳ ଶିବଙ୍କୁ ପୂଜୁଛ, ଶକ୍ତି ପାଇବ କେଉଁଠୁ ? ଶକ୍ତି ବିନା ଶିବ 'ଶବ'ରେ ପରିଣତ ହୋଇଥା'ନ୍ତି ।"

ସେହି ଦିନଠାରୁ ଆଗ୍ନୀଧ୍ର ଶକ୍ତିଙ୍କ ଉପାସନାରେ ମନ ବଳାଇଲେ । ମୋଟ ଉପରେ କହିବାକୁ ଗଲେ—ଶକ୍ତି ବିନା ମନୁଷ୍ୟ କୌଣସିଠାରେ ଆଦର ପାଏ ନାହିଁ । ଶକ୍ତିହୀନ ମନୁଷ୍ୟ ଆତ୍ମ ଜ୍ଞାନରେ ବିଭୂଷିତ ହୋଇ ପାରେ ନାହିଁ । ବଳ ବୀର୍ଯ୍ୟ ସମ୍ପନ୍ନ ହୋଇ ମନୁଷ୍ୟ ଶକ୍ତି, ନାରୀ ତଥା ପତ୍ନୀର ଅନ୍ୱେଷଣ କରିଥାଏ । ପତ୍ନୀଯୁକ୍ତ ହୋଇ ମନୁଷ୍ୟ ଶକ୍ତିମାନ୍ ହୁଏ । ପତ୍ନୀ ବିହୀନ ମନୁଷ୍ୟ, ମନୁଷ୍ୟ ପଦବାଚ୍ୟ ନୁହେଁ । ନାରୀ ବିନା ନର ପୂର୍ଣ୍ଣାଙ୍ଗ ନୁହେଁ । ତା'ର ମର୍ଯ୍ୟାଦା ଚିରସ୍ଥାୟୀ ହୋଇ ପାରେ ନାହିଁ କିମ୍ବା ସେ ପରମ୍ପରା ଅନୁସାରେ ଚାଲିପାରେ ନାହିଁ । ସେଇଥିପାଇଁ ଆର୍ଯ୍ୟମାନେ ଯୁଗଳ ଉପାସନା ଉପରେ ଗୁରୁତ୍ୱ ଆରୋପଣ କରିଅଛନ୍ତି । ସୀତା ବିହୀନ ଶ୍ରୀରାମ ଯୋଗିମାନଙ୍କର ପରମ ପୂଜ୍ୟ ହୋଇ ପାରନ୍ତି; କିନ୍ତୁ ଜନସାଧାରଣ ତାଙ୍କ ଏକାଙ୍ଗ ସ୍ୱରୂପକୁ ସମ୍ମାନ ପ୍ରଦର୍ଶନ କରନ୍ତି ନାହିଁ । ଶ୍ରୀରାମଙ୍କ ପଛରେ ମୁଣ୍ଡରେ ଓଢ଼ଣା ଟାଣି, ନୂପୁରର ରୁଣୁଝୁଣୁ ଶବ୍ଦରେ ଜନମନକୁ ଆକୃଷ୍ଟ କରି ଚାଲୁଥିବା ସୀତାଙ୍କୁ ଦେଖିଲେ, ଲୋକେ ଆନନ୍ଦରେ ଗାଇ ଉଠନ୍ତି—ସୀତାରାମ ! ସୀତାରାମ !! ସୀତାରାମ !!!

ସୂତ କହୁଛନ୍ତି—"ହେ ମୁନିଗଣ, ବିଶ୍ୱାମିତ୍ରଙ୍କ ଯଜ୍ଞ ଶେଷ ହେବା ପରେ ମୁନିବର ଶ୍ରୀରାମଙ୍କୁ ଆଶୀର୍ବାଦ ଦେବା ଉଦ୍ଦେଶ୍ୟରେ କହିଲେ—"ବତ୍ସ, ମୁଁ ତୁମ ବୀରତ୍ୱ ତଥା ସଦ୍‌ଗୁଣରେ ମୁଗ୍ଧ ହୋଇଛି । ତେଣୁ ମୁଁ ତୁମକୁ ଆଶୀର୍ବାଦ ଦେବି ।"

ମୁହଁ ତଳକୁ ପୋତି ଶ୍ରୀରାମ କହିଲେ—"ପ୍ରଭୋ, ମୁଁ ଆପଣଙ୍କଠାରୁ ଆଶିଷ ପାଇବା ପାଇଁ ସର୍ବଦା ବ୍ୟାକୁଳ ।"

ତାହା ଶୁଣି ବିଶ୍ୱାମିତ୍ର କହିଲେ—"ମୁଁ ତୁମକୁ ମିଥିଳାପୁରୀରେ ସମୁଚିତ ଆଶିଷ ପ୍ରଦାନ କରିବି ।"

କିଛି ନ ଜାଣିଲା ପରି ଶ୍ରୀରାମ କହିଲେ—"ଗୁରୁଦେବ, ଆପଣ ମିଥିଲା ଯିବେ କାହିଁକି ?"

ବିଶ୍ୱାମିତ୍ର କହିଲେ—"ବତ୍ସ ! ମହାରାଜ ଜନକ ଜଣେ ଧର୍ମାତ୍ମା ତଥା ଜ୍ଞାନୀ ପୁରୁଷ ଅଟନ୍ତି । ତାଙ୍କ ବଂଶରେ ସମସ୍ତେ ବିଦେହ ଅର୍ଥାତ୍ ଆତ୍ମଜ୍ଞାନୀ । ତାଙ୍କ ଦ୍ୱାରା ଆୟୋଜିତ ଯଜ୍ଞରେ ଯୋଗ ଦେବା ଲାଗି ବହୁ ଦୂର ଦେଶରୁ ମୁନି ଋଷିମାନେ ଆସିଛନ୍ତି । ମୁଁ ସେଠାକୁ ନିମନ୍ତ୍ରିତ ହୋଇଛି । ତୁମେ ବି ମୋ' ସହିତ ସେଠାକୁ ଯାଇପାର । ସେଠାରେ ମୁଁ ତୁମକୁ ଶୁଭାଶିଷ ପ୍ରଦାନ କରିବି !"

ଶ୍ରୀରାମ ମନେ ମନେ ଭାବିଲେ—"ମୁନିଋଷିମାନେ ଭୋଜନ ଓ ଦକ୍ଷିଣା ପାଇଁ ଭିନ୍ନ ଭିନ୍ନ ଯଜ୍ଞରେ ଯୋଗ ଦେଇଥାଆନ୍ତି । ମୁଁ ଅଯୋଧ୍ୟାପୁରୀରେ ବହୁ ଯଜ୍ଞ ଦେଖିଛି । ପିତା ମୋତେ ଯଜ୍ଞ ରକ୍ଷା ଲାଗି ମୁନିଙ୍କ ସହିତ ପଠାଇଥିଲେ । ତାଙ୍କ ଆଦେଶ ପାଳନ କରିବା ମୋର ଧର୍ମ ।" ତେଣୁ ସେ ପ୍ରକାଶ୍ୟରେ କହିଲେ— ଗୁରୁଦେବ, ମିଥିଲା ଯିବା ଲାଗି ମୋର ସେପରି ଆଗ୍ରହ ନାହିଁ । କିନ୍ତୁ ଆପଣଙ୍କ ଆଜ୍ଞା ମୋର ସର୍ବଦା ମାନ୍ୟ । ଆପଣଙ୍କ ଆଜ୍ଞା ହେଲେ ମୁଁ ଯିବାଲାଗି ପ୍ରସ୍ତୁତ ଅଛି । କିନ୍ତୁ ଗୁରୁଦେବ, ଆପଣ ଏଠାରେ ଶୁଭାଶିଷ ପ୍ରଦାନ ନ କରି ସେଠାରେ ଦେବାର କାରଣ କ'ଣ ?

ମୁନିବର ହସି ହସି କହିଲେ—"ରାମଭଦ୍ର, ମୁଁ କେବଳ ମୌଖିକ ଆଶିଷ ଦେବାକୁ ଚାହୁଁନାହିଁ । ମୁଁ ଯେଉଁ ଆଶିଷ ପ୍ରଦାନ କରିବି, ତାହା ମୂର୍ତ୍ତିମନ୍ତ, ରୂପବତୀ ତଥା ଗୁଣବତୀ ! ଅର୍ଥାତ୍ ମୁଁ ତୁମକୁ ମିଥିଲାରେ ଗୋଟିଏ ରୂପବତୀ କନ୍ୟା ପ୍ରଦାନ କରିବି । ସେ ରୁଣୁଝୁଣୁ ନିନାଦରେ ତୁମ ହୃଦୟରେ ପୁଲକ ଜନମାଇ ଛାୟାପରି ପଛେ ପଛେ ଚାଲିବ ।"

ଶ୍ରୀ ସୂତ ମହର୍ଷି କହିଲେ—"ହେ ମୁନିଗଣ, ନବବଧୂ ନାମ ଶୁଣିବା ମାତ୍ରେ ଶ୍ରୀରାମ ଲଜ୍ଜାରେ ମୁଖ ଅବନତ କରିଦେଲେ । ତାଙ୍କର ମୁଖମଣ୍ଡଳ ଆରକ୍ତ ହୋଇ ଉଠିଲା । ଶ୍ରୀରାମଙ୍କ ମନରୁ ସଙ୍କୋଚ ଦୂର କରିବା ପାଇଁ ବିଶ୍ୱାମିତ୍ର କହିଲେ— "ରାମଚନ୍ଦ୍ର, ରାଜର୍ଷି ଜନକଙ୍କ ନିକଟରେ ଗୋଟିଏ ଦିବ୍ୟ ଧନୁ ରହିଛି । ସେହି ଧନୁର ନାମ 'ଶିବଧନୁ' । ଦେବତାମାନେ ଜନକଙ୍କ ଯଜ୍ଞରେ ସନ୍ତୁଷ୍ଟ ହୋଇ ତାଙ୍କୁ ଏହା ପ୍ରଦାନ କରିଥିଲେ । ରାଜର୍ଷି ପ୍ରତିଦିନ ଗନ୍ଧ, ପୁଷ୍ପ, ଧୂପ, ଦୀପ ତଥା ନୈବେଦ୍ୟ ପ୍ରଦାନ କରି ସେହି ଧନୁକୁ ପୂଜା କରୁଛନ୍ତି । ସେ ଧନୁଟିକୁ ଦେବତାମାନେ ମଧ୍ୟ ଉଠାଇ ପାରନ୍ତି ନାହିଁ । ଦିନେ ଜନକଙ୍କ ସୁକୁମାରୀ କନ୍ୟା ଯେତେବେଳେ ଘର ଲିପାପୋଛା କରୁଥିବା ସମୟରେ ଧନୁଟିକୁ ଗୋଟିଏ ସ୍ଥାନରୁ ଉଠାଇ ଅନ୍ୟ ସ୍ଥାନରେ ଥୋଇ

ଦେଲେ । ତାହା ଦେଖି ଜନକ ସେହିଦିନ ପ୍ରତିଜ୍ଞା କଲେ—"ଯେ ଶିବଧନୁକୁ ଉଠାଇ ସେଥିରେ ଗୁଣ ଦେଇ ପାରିବ, ମୁଁ ତାର ହସ୍ତରେ ସୀତାକୁ ପ୍ରଦାନ କରିବ ।"

ହେ ଶ୍ରୀରାମ, ଏହାଶୁଣି ଭୂମଣ୍ଡଳର ବହୁ ବୀର ସୀତାଙ୍କୁ ପାଇବା ପାଇଁ ବହୁ ଚେଷ୍ଟା କରି ବ୍ୟର୍ଥ ହୋଇଛନ୍ତି । ମୋର ଇଚ୍ଛା—ତୁମେ ମୋ ସହିତ ମିଥିଳାକୁ ଯାତ୍ରା କର, ସେହି ଧନୁରେ ଗୁଣ ପ୍ରଦାନ କର ! ମୋର ବିଶ୍ୱାସ—ତୁମେ ଏହା ଅନାୟାସରେ କରିପାରିବ ।"

ଏହା ଶୁଣି ଶ୍ରୀରାମ ଉତ୍ସାହିତ ହୋଇ କହିଲେ—"ଗୁରୁଦେବ, ମୁଁ ସେହି ଦିବ୍ୟ ଧନୁଟି ଦେଖିବା ଲାଗି ଚାହୁଁଛି । ଏହା ମୋ ପକ୍ଷରେ ଏକ ଆଶ୍ଚର୍ଯ୍ୟକର ବିଷୟ ହେବ ।"

ଶ୍ରୀରାମ ଓ ଲକ୍ଷ୍ମଣଙ୍କ ଆଗ୍ରହ ଦେଖି, ବିଶ୍ୱାମିତ୍ର ନିଜ ଶିଷ୍ୟବର୍ଗଙ୍କ ଗହଣରେ ମିଥିଳା ଅଭିମୁଖେ ବାହାରି ପଡ଼ିଲେ । ସମସ୍ତଙ୍କୁ ସମ୍ବୋଧନ କରି ବିଶ୍ୱାମିତ୍ର କହିଲେ—"ମୁଁ ଏହି ସ୍ଥାନରେ ସିଦ୍ଧିଲାଭ କରି ସାରିଛି । ତେଣୁ ମୁଁ ଆଉ ଏଠାକୁ ଲେଉଟି ଆସି ପାରିବ ନାହିଁ । ମୁଁ ମିଥିଳାରୁ ହିମାଳୟ ଅଭିମୁଖେ ଯାତ୍ରା କରିବି ।"

ମୁନିଙ୍କ ସିଦ୍ଧାନ୍ତ ଶୁଣି ସେଠାକାର ପରିବେଶ ଶୋକାକୁଳ ହୋଇ ଉଠିଲା । ପଶୁ ପକ୍ଷୀମାନେ ମଧ୍ୟ ମୁନିଙ୍କ ପଛେ ପଛେ ଧାଇଁବାକୁ ଲାଗିଲେ । କିଛିଦୂର ଯିବାପରେ ମୁନି ପଶୁପକ୍ଷୀମାନଙ୍କୁ ସ୍ନେହରେ ଆଉଁସି ଦେଇ ସେଠାରୁ ନିଜ ନିଜ ସ୍ଥାନକୁ ଫେରିଯିବା ଲାଗି କହିଲେ । ତାହା ଶୁଣିବା ମାତ୍ରେ ନିରୀହ ପଶୁପକ୍ଷୀମାନେ ଆଖିରୁ ଲୁହ ଗଡ଼ାଇଲେ ।

ସେମାନଙ୍କଠାରୁ ବିଦାୟ ନେଇ ମୁନି ଶ୍ରୀରାମ ଲକ୍ଷ୍ମଣଙ୍କ ସହିତ ଆଗେଇ ଚାଲିଲେ । କିଛିଦୂର ଅତିକ୍ରମ କରିବା ପରେ ଶୋଣ ନଦୀର କୂଳେ କୂଳେ ସେମାନେ କିଛି ପଥ ଅତିକ୍ରମ କରି ଗୋଟିଏ ସ୍ଥାନରେ ରାତ୍ରି ଯାପନ କଲେ । ପରଦିନ ସେମାନେ ଆଉ କିଛି ମାର୍ଗ ଆଗେଇ ଯାଇ ଶୋଣ ଓ ଗଙ୍ଗାର ସଙ୍ଗମ ସ୍ଥଳରେ ପହଞ୍ଚିଲେ । ଶ୍ରୀରାମ ସେଠାକାର ଭବ୍ୟ ଦୃଶ୍ୟ ଦେଖି ବିସ୍ମିତ ହୋଇଗଲେ । ମୁନିଙ୍କ ଆଦେଶ ଅନୁସାରେ ସେଦିନ ସେହିଠାରେ ରାତ୍ରି ଯାପନର ଆୟୋଜନ କରାଗଲା । ପରଦିନ ସେମାନେ ଗଙ୍ଗା ପାରି ହୋଇ ମିଥିଳା ରାଜ୍ୟରେ ପ୍ରବେଶ କଲେ । ମିଥିଳା ରାଜ୍ୟ ମଧ୍ୟରେ ଅଳ୍ପଦୂର ଆଗେଇ ଯିବା ମାତ୍ରେ ଶ୍ରୀରାମଚନ୍ଦ୍ର ଗୋଟିଏ ଶ୍ରୀହୀନ ତଥା ଜନମାନବଶୂନ୍ୟ ଆଶ୍ରମ ଦେଖି ବିଶ୍ୱାମିତ୍ରଙ୍କୁ ସେ ସମ୍ବନ୍ଧରେ ପଚାରିଲେ ।

ମୁନି ବିଶ୍ୱାମିତ୍ର ସେହି ଆଶ୍ରମ ସମ୍ବନ୍ଧରେ ବିସ୍ତୃତ ବିବରଣୀ ଦେଇ କହିଲେ —"ହେ ଶ୍ରୀରାମ, ପ୍ରଜାପତି ପିତାମହ ଗୋଟିଏ ତ୍ରୈଲୋକ୍ୟ ସୁନ୍ଦରୀ ନାରୀ ସୃଷ୍ଟି କରିବା ପାଇଁ ମନେ ମନେ କଳ୍ପନା କଲେ । ତେଣୁ ସେ ସମସ୍ତ ସୌନ୍ଦର୍ଯ୍ୟପୂର୍ଣ୍ଣ ବସ୍ତୁରୁ ସୌନ୍ଦର୍ଯ୍ୟ ସଂଗ୍ରହ କଲେ । ଦୈବଯୋଗକୁ ସେହି ନାରୀମୂର୍ତ୍ତିଟି ଏତେ ସୁନ୍ଦର ହୋଇଗଲା ଯେ, ତାହାକୁ 'ହଲ' ଅର୍ଥାତ୍ ପାପ ସ୍ପର୍ଶ କରି ପାରିଲା ନାହିଁ । ତେଣୁ ବ୍ରହ୍ମା ସେହି ନାରୀର ନାମ ଦେଲେ—ଅହଲ୍ୟା । ଇନ୍ଦ୍ର ପ୍ରଭୃତି ସମସ୍ତ ଦିଗ୍‌ପାଳ ତଥା ମୁନି ଋଷିମାନେ ଅହଲ୍ୟାଙ୍କୁ ପାଇବା ଲାଗି ବ୍ରହ୍ମାଙ୍କଠାରେ ପ୍ରାର୍ଥୀ ହେଲେ । ବ୍ରହ୍ମା ଅହଲ୍ୟାଙ୍କୁ କାହାର ହାତରେ ସମର୍ପଣ କଲେ ନାହିଁ । ଦିନେ ସେ ଗୌତମଙ୍କୁ ଡକାଇ ଅହଲ୍ୟାଙ୍କୁ ତାଙ୍କର ହାତରେ ସମର୍ପଣ କରି କହିଲେ—"ତୁମେ ଏହି ନାରୀଙ୍କୁ 'ନ୍ୟାସ' ଅର୍ଥାତ୍ ପରଧନ ବୋଲି ମନେ କରି ନିଜ ପାଖରେ ରଖ ।"

ଗୌତମ ଥିଲେ ପରମ ସଂଯମୀ ତଥା ସଦାଚାରୀ ମହର୍ଷି । ସେ ଅହଲ୍ୟାଙ୍କୁ 'ନ୍ୟାସଭୂତା' ଅର୍ଥାତ୍ ଅପରର ସ୍ତ୍ରୀ ବୋଲି ଭାବି ମାତୃଜ୍ଞାନରେ ନିଜ ପାଖରେ ରଖିଲେ । ଏହିପରି ଭାବରେ ଅନେକ ଦିନ ବିତିଗଲା । ଦିନେ ଗୌତମ ଅହଲ୍ୟାଙ୍କୁ ନେଇ ବ୍ରହ୍ମାଙ୍କଠାରେ ପହଞ୍ଚି କହିଲେ—"ପିତାମହ, ମୁଁ ଆପଣଙ୍କ ନ୍ୟାସ (ଧନ)କୁ ଆଜି ଯାଏ ସଯତ୍ନରେ ସାଇତି ରଖିଛି । ଆପଣ ଏହାକୁ ନିଜ ଇଚ୍ଛାରେ କାହାର ହସ୍ତରେ ଅର୍ପଣ କରନ୍ତୁ ।"

ବ୍ରହ୍ମା ଗୌତମଙ୍କ ଶୀଳ, ସଦାଚାର ତଥା ସଂଯମରେ ମୁଗ୍ଧ ହୋଇ କହିଲେ—"ବତ୍ସ, ତୁମ ବ୍ୟତୀତ ଏହାର ଉପଯୁକ୍ତ ପାତ୍ର ଆଉ କେହି ନୁହନ୍ତି । ତୁମେ ହିଁ ଏହାକୁ ପତ୍ନୀରୂପେ ଗ୍ରହଣ କର ।"

ଅବଶ୍ୟ ଏହା ପୂର୍ବରୁ ଅହଲ୍ୟାଙ୍କ ମନ ଇନ୍ଦ୍ରଙ୍କ ପ୍ରତି ଚହଲି ଯାଇଥିଲା । କାରଣ ଇନ୍ଦ୍ର ଥିଲେ—ସମୃଦ୍ଧିମାନ୍ ।

ପିତାମହଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଗୌତମ ଅହଲ୍ୟାଙ୍କୁ ଧର୍ମପତ୍ନୀ ରୂପେ ଗ୍ରହଣ କରି ସୁଖପୂର୍ବକ ଅବସ୍ଥାନ କଲେ । ତାଙ୍କ ଗର୍ଭରୁ ଶତାନନ୍ଦ ନାମକ ପୁତ୍ରଟିଏ ଜାତ ହୋଇଥିଲେ । ସେ ନିଜର ଯୋଗ୍ୟତା ବଳରେ ମିଥିଳାର ରାଜା ଜନକଙ୍କ ପୁରୋହିତ ହୋଇ ପାରିଥିଲେ ।

ଅହଲ୍ୟାଙ୍କୁ ବ୍ରହ୍ମା ଗୌତମଙ୍କ ହାତରେ ଅର୍ପଣ କରିବା ପରେ, ଇନ୍ଦ୍ରଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା । ସେ ଯେକୌଣସି ଉପାୟରେ ଅହଲ୍ୟାଙ୍କୁ ଉପଭୋଗ କରିବା ପାଇଁ ମନେ ମନେ ସ୍ଥିର କରି ନେଲେ । ସେ ଦିନେ ଗୌତମଙ୍କ ବେଶ ଧାରଣ କରି ମୁନିଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଅହଲ୍ୟାଙ୍କ

ସହିତ କାମକେଳୀ କଲେ । ଅହଲ୍ୟା ଅବଶ୍ୟ ଏହା ଜାଣିଗଲେ, କିନ୍ତୁ ସେ ମୁଖ ଖୋଲି ଏହାର ପ୍ରତିବାଦ କଲେ ନାହିଁ ।

ଗୌତମ ଏହା ମଧ୍ୟରେ ଆଶ୍ରମକୁ ଫେରି ଆସିଲେ । ଇନ୍ଦ୍ର ଧୃଷ୍ଟତା ବଳରେ ସେଠାରୁ ପଳାୟନ କଲେ । ମୁନି ମଧ୍ୟ ଯୋଗ ବଳରେ ଏହି ଅପରାଧର ସନ୍ଧାନ ପାଇଗଲେ । ତହୁଁ ସେ ଇନ୍ଦ୍ରଙ୍କୁ ଅଭିଶାପ ଦେଇ କହିଲେ—"ତୁମ ଶରୀରରେ ସହସ୍ର ଯୋନି ହୋଇଯାଉ ଏବଂ ତୁମର ଜନନେନ୍ଦ୍ରିୟ ନଷ୍ଟ ହୋଇଯାଉ । ତୁମେ ଇନ୍ଦ୍ରପଦ ହରାଇ ବସ ତଥା ତୁମ ଆସନରେ ବଳୀ ଅଧିଷ୍ଠିତ ହେଉ ।"

ତା'ପରେ ସେ ଅହଲ୍ୟାଙ୍କୁ ଅଭିଶାପ ଦେଇ କହିଲେ—"ତୁ ସହସ୍ର ବର୍ଷ ପର୍ଯ୍ୟନ୍ତ ପାଷାଣ ହୋଇ ପୃଥିବୀରେ ପଡ଼ିରହ ।"

ଏହାପରେ ଅହଲ୍ୟା ମୁନିଙ୍କୁ ଅନେକ ଅନୁରୋଧ କଲେ । ତହୁଁ ସେ କହିଲେ—"ମୋ ବଚନ ଅନ୍ୟଥା ହେବ ନାହିଁ । ତୁ ବାୟୁଦ୍ୱାରା ଜୀବନ ଧାରଣ କରି ସହସ୍ର ବର୍ଷ ପର୍ଯ୍ୟନ୍ତ ନିଶ୍ଚେଷ୍ଟ ହୋଇ ପଡ଼ି ରହିବୁ । ତ୍ରେତୟା ଯୁଗରେ ଶ୍ରୀରାମଚନ୍ଦ୍ର ଏହି ବନକୁ ଆସି ତୋତେ ଉଦ୍ଧାର କରିବେ ।"

ତେଣୁ ହେ ଶ୍ରୀରାମ, ତୁମେ ମୁନିପତ୍ନୀଙ୍କୁ ଦର୍ଶନ ଦେଇ ତାଙ୍କୁ ଉଦ୍ଧାର କର । ତା' ଫଳରେ ସେ ନିଜ ପତିଙ୍କ ସହିତ ମିଳିତ ହୋଇ ପାରିବେ ।

ଏହାଶୁଣି ଶ୍ରୀରାମ ଆଶ୍ରମକୁ ପ୍ରବେଶ କରି ପାଷାଣ ପରି ପଡ଼ିଥିବା ଅହଲ୍ୟାଙ୍କୁ କହିଲେ—"ମା, ମୁଁ ଆପଣଙ୍କ ଆଶ୍ରମକୁ ଆସିଛି । ଆପଣ ମୋତେ ଫଳମୂଳ ଓ ଜଳ ଦାନ କରି ସତ୍କାର କରନ୍ତୁ ।

ଏହା ଶୁଣିବା ମାତ୍ରେ ଅହଲ୍ୟା ପୂର୍ବ କଥା ସ୍ମରଣ କରି ଫଳମୂଳ ଦ୍ୱାରା ଭଗବାନ୍ ଶ୍ରୀରାମଙ୍କୁ ଅଭ୍ୟର୍ଥନା ଜଣାଇଲେ । ବିଶ୍ୱାମିତ୍ର ତଥା ଲକ୍ଷ୍ମଣଙ୍କ ସହିତ ଶ୍ରୀରାମ ମୁନିପତ୍ନୀଙ୍କ ଅଭ୍ୟର୍ଥନା ଗ୍ରହଣ କଲେ ।

ଏହି ସମୟରେ ମହାମୁନି ଗୌତମ ସେଠାରେ ଆସି ଉପସ୍ଥିତ ହୋଇଗଲେ । ବିଶ୍ୱାମିତ୍ର ଆଗେଇ ଯାଇ ଗୌତମଙ୍କୁ ସ୍ନେହାଲିଙ୍ଗନ କଲେ ଏବଂ ଶ୍ରୀରାମ ଲକ୍ଷ୍ମଣ ମୁନିଙ୍କ ପାଦ ବନ୍ଦନା କଲେ ।

ଗୌତମ ଶ୍ରୀରାମଙ୍କୁ ଗାଢ଼ ଆଲିଙ୍ଗନ କରି କହିଲେ—"ହେ ଶ୍ରୀରାମ, ଆଜି ତୁମେ ଭକ୍ତବତ୍ସଳତାର ପରିଚୟ ଦେଇଛ । ତୁମେ ମୋର ପତ୍ନୀଙ୍କୁ ମୋ ସହିତ ମିଳାଇ ଦେଇଛ । ମୁଁ ତୁମକୁ ଆଶୀର୍ବାଦ ଦେଉଛି—"ସଂସାରର ସର୍ବାଧିକ ସୁନ୍ଦରୀ ସୀତା ତୁମକୁ ପତ୍ନୀ ରୂପେ ପ୍ରାପ୍ତ ହେଉ ।"

ଏହା ଶୁଣି ବିଶ୍ୱାମିତ୍ର ଓ ଲକ୍ଷ୍ମଣ ହସି ଉଠିଲେ କିନ୍ତୁ ଶ୍ରୀରାମଙ୍କ ମୁଖମଣ୍ଡଳ ଲଜ୍ଜାରେ ଆରକ୍ତ ହୋଇ ଉଠିଲା । ଅହଲ୍ୟା ସଙ୍ଗେ ସଙ୍ଗେ ପତି ଗୌତମଙ୍କ ପାଦ-ପୂଜା କରିବାକୁ ଲାଗିଲେ ! ବିଶ୍ୱାମିତ୍ର ଗୌତମଙ୍କଠାରୁ ବିଦାୟ ନେଇ ଶ୍ରୀରାମ ଓ ଲକ୍ଷ୍ମଣଙ୍କ ସହିତ ମିଥିଳା ଅଭିମୁଖେ ଯାତ୍ରା କଲେ ।

କିଛି ଦୂର ଅତିକ୍ରମ କରିବା ପରେ ଦୂରରୁ ଯଜ୍ଞଧୂମ ଦେଖାଗଲା । ଆହୁରି ଟିକିଏ ଆଗେଇ ଯିବାପରେ ଶ୍ରୀରାମ ବିଶାଳ ତଥା ମନୋରମ ଉପବନ ତଥା ସୁନ୍ଦର ପ୍ରାସାଦମାନ ଦେଖି କହିଲେ— "ପ୍ରଭୋ, ଇନ୍ଦ୍ରଙ୍କ ଅମରାବତୀ ସଦୃଶ ରମଣୀୟ ଉପବନ ପରିବେଷ୍ଟିତ ଏହି ନଗରର ଅଧିପତି କିଏ ?"

ବିଶ୍ୱାମିତ୍ର କହିଲେ—"ବତ୍ସ, ଏ ହେଉଛି—ମିଥିଳା ପୁରୀ । ଏହାର ଅଧିପତି ହେଉଛନ୍ତି – ରାଜର୍ଷି ଜନକ । ଏଠାକାର ଭୂମି ଅତ୍ୟନ୍ତ କୋମଳ ତଥା ଶସ୍ୟଶ୍ୟାମଳା । ତା' ନହେବ କାହିଁକି ? ନିଜର ଆଦରଣୀୟା କନ୍ୟାର ଚଲପ୍ରଚଳ ପାଇଁ ସ୍ୱୟଂ ମାତା ଧରିତ୍ରୀ ଏଠାରେ କୋମଳ ହୋଇ ଯାଇଛନ୍ତି । ଆମେ ଏହି ମିଥିଳା ପୁରୀରେ ମହର୍ଷି ଜନକଙ୍କ ଯଜ୍ଞ ଦେଖିବା ।"

କିଛି ସମୟ ପରେ ମହାମୁନି ବିଶ୍ୱାମିତ୍ର ଜନକଙ୍କ ଯଜ୍ଞମଣ୍ଡପରେ ଉପସ୍ଥିତ ହେଲେ । ଯଜ୍ଞ ସ୍ଥାନର ସ୍ୱଚ୍ଛତାରେ ଶ୍ରୀରାମ ବିମୁଗ୍ଧ ହୋଇଗଲେ । ସେଠାରେ ବହୁ ମୁନି ଋଷି ଶିଷ୍ୟବର୍ଗଙ୍କ ସମେତ ବେଦଧ୍ୱନି କରୁଥିଲେ । ସେମାନଙ୍କ ବେଦଧ୍ୱନିରେ ପରିବେଶ ମୁଖରିତ ହୋଇ ଉଠୁଥିଲା । ସମାଗତ ମୁନି ତଥା ରାଜକୁମାରଙ୍କୁ ଦେଖି ରାଜସେବକମାନେ ବିନୀତ ଭାବରେ ଅଭ୍ୟର୍ଥନା ଜଣାଇ କହିଲେ—"କୁହନ୍ତୁ ମହାଶୟ, ଆପଣମାନେ କ'ଣ ଚାହାଁନ୍ତି ? ଆପଣମାନେ ହୋମ ପାଇଁ ଘୃତ ଖୋଜୁଛନ୍ତି କି ? ଦେଖନ୍ତୁ—ଘିଅ ପାଇଁ କାହାରିକୁ ପଚାରିବା ଦରକାର ନାହିଁ । ମୁନି-ମାନଙ୍କ ଆସ୍ଥାନର ଅଦୂରରେ ଗୋଟିଏ ଘୃତପୂର୍ଣ୍ଣ କୁଣ୍ଡ ରହିଛି । ସେଥିରୁ ଆପଣ ନିଜ ଇଚ୍ଛାନୁସାରେ ଘିଅ ଆଣି ପାରନ୍ତି । ଯଜ୍ଞ ସାମଗ୍ରୀ ଯୋଗାଇ ଦେବା ପାଇଁ ସେବକମାନେ ଅଛନ୍ତି । ଆପଣମାନେ ଯଦି ନିଜେ ସମିଧ ଓ କୁଶ ଆଦି ସଂଗ୍ରହ କରିବାକୁ ଇଚ୍ଛା କରୁଥାଆନ୍ତି, ତେବେ ନିର୍ଦ୍ଦିଷ୍ଟ ସେବକମାନେ ଆପଣଙ୍କୁ ଉପବନର ମାର୍ଗ ଦେଖାଇ ଦେବେ । ଆପଣମାନେ ମନ ଇଚ୍ଛାରେ କୁଶ ସମିଧ ସଂଗ୍ରହ କରି ଅଗ୍ନିହୋତ୍ର କାର୍ଯ୍ୟରେ ଯୋଗ ଦେଇ ପାରିବେ । ଆପଣମାନଙ୍କୁ ନିବାସସ୍ଥାନ ଯୋଗାଇ ଦେବାପାଇଁ ସ୍ୱତନ୍ତ୍ର କର୍ମଚାରୀ ଅଛନ୍ତି । ସେମାନେ ଆପଣମାନଙ୍କୁ ଯଥାଯୋଗ୍ୟ ଆବାସ ଯୋଗାଇ ଦେବେ । ଯାନବାହନ ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ରହିଛି । ଆପଣମାନେ ଟିକିଏ ଆଗେଇ ଗଲେ, ସବୁ ପ୍ରକାର ସୁବିଧା ପାଇ ପାରିବେ ।"

ଶ୍ରୀରାମଚନ୍ଦ୍ର ସେଠାକାର ବ୍ୟବସ୍ଥା ତଥା ବୈଭବ ଦେଖି ବିସ୍ମିତ ହୋଇଗଲେ । ସେ ବିଶ୍ୱାମିତ୍ରଙ୍କୁ କହିଲେ—"ଭଗବନ୍, ଆପଣ ପ୍ରଥମେ ବିଶ୍ରାମସ୍ଥଳ ଖୋଜି ନିଅନ୍ତୁ । ତା'ପରେ ଆମେମାନେ ନିତ୍ୟକର୍ମ ଶେଷକରି ଯଜ୍ଞସ୍ଥଳ ପ୍ରଦକ୍ଷିଣ କରିବା । ପ୍ରଭୋ, ଏ ସ୍ଥାନ ତ ଅତ୍ୟନ୍ତ ମନୋରମ ତଥା ବୈଭବପୂର୍ଣ୍ଣ। ଏହି ବିଶାଳ ଯଜ୍ଞସ୍ଥଳ ଅବଲୋକନ କରି ମୁଁ ବିସ୍ମିତ ହୋଇ ଯାଉଛି ।

ଶ୍ରୀରାମଙ୍କ ବିନୀତ ବଚନ ଶୁଣି ବିଶ୍ୱାମିତ୍ର କହିଲେ—"ଶ୍ରୀରାମ, ଜନ-କୋଲାହଳ ପୂର୍ଣ୍ଣ ସ୍ଥାନରେ ରହିବା ଲାଗି ମୋତେ ଆଦୌ ଭଲ ଲାଗେ ନାହିଁ । ଚାଲ, ଆମେ ନଦୀ କୂଳରେ କୌଣସି ଏକାନ୍ତ ସ୍ଥାନରେ ରହିବା । କୁହ, ତୁମର ଇଚ୍ଛା କ'ଣ ?

ହସି ହସି ଶ୍ରୀରାମ କହିଲେ—"ଭଗବନ୍, ଆପଣଙ୍କ ଆଗରେ ମୁଁ ମୋର ସ୍ୱତନ୍ତ୍ର ଇଚ୍ଛା ପ୍ରକାଶ କରିବି କଅଣ ? ତଥାପି ଏକାନ୍ତ ସ୍ଥାନରେ ରହିବାକୁ ମୁଁ ମଧ୍ୟ ଭଲ ପାଏ ।"

ଏହା ଶୁଣିବା ମାତ୍ରେ ବିଶ୍ୱାମିତ୍ର ଶ୍ରୀରାମ ଲକ୍ଷ୍ମଣଙ୍କ ସହିତ ସଘନ ପୁଷ୍ପବାଟିକା ଆଡ଼କୁ ଅଗ୍ରସର ହେଲେ । ସେଠାରେ ଜଳର ଅଭାବ ନଥିଲା ଏବଂ ସେ ସ୍ଥାନଟି ମଧ୍ୟ ଯଜ୍ଞ ମଣ୍ଡପଠାରୁ ବେଶୀ ଦୂରରେ ନଥିଲା ।

ଏହି ସମୟରେ ବିଶ୍ୱାମିତ୍ରଙ୍କ ଶିଷ୍ୟମଣ୍ଡଳୀ ଆସି ପହଞ୍ଚିଗଲେ । ସେମାନଙ୍କୁ ଦେଖି ରାଜ କର୍ମଚାରୀମାନେ ପଚାରିଲେ —"ମହାଶୟ, ଆପଣମାନେ କେଉଁ ମହାମୁନିଙ୍କ ସହିତ ଆସିଛନ୍ତି ?" ସେମାନେ ନିଜର ପରିଚୟ ଦେବାମାତ୍ରେ ରାଜ ସେବକ ତଥା ମୁନିମଣ୍ଡଳୀ ମୁନି ବିଶ୍ୱାମିତ୍ରଙ୍କ ନିକଟକୁ ଧାଇଁଗଲେ । ବିଶ୍ୱାମିତ୍ର ସମସ୍ତଙ୍କୁ ସ୍ୱାଗତ ଜଣାଇଲେ ଏବଂ ଶ୍ରୀରାମ ଲକ୍ଷ୍ମଣ ମୁନିମାନଙ୍କ ଶ୍ରୀଚରଣରେ ପ୍ରଣାମ ନିବେଦନ କଲେ ।

ଏହି ସମୟରେ ବରିଷ୍ଠ ରାଜ ସେବକ ବିନୀତ ଭାବରେ କହିଲେ—"ଭଗବନ୍ ଆମେମାନେ ଗୁରୁ ପାଞ୍ଚଦିନ ହେବ ଆପଣଙ୍କ ପ୍ରତୀକ୍ଷାରେ ରହିଛୁ । ମହାରାଜ ବରାବର ଆପଣଙ୍କ ବିଷୟରେ ପଚାରୁଛନ୍ତି । ଆପଣ କୌଣସି ସୂଚନା ନ ଦେଇ ଆସି ଏଠାରେ ପହଞ୍ଚି ଗଲେଣି । ଆପଣମାନଙ୍କର କୌଣସି ଅସୁବିଧା ହୋଇ ନାହିଁ ତ ?"

ଅତ୍ୟନ୍ତ ସରଳ ଭାବରେ ବିଶ୍ୱାମିତ୍ର ଉତ୍ତର ଦେଲେ—"ନାଃ, ମୋର କିଛି ଅସୁବିଧା ହୋଇ ନାହିଁ । ମୁଁ ରାଜା କମ୍ବା ମହାରାଜା ନୁହେଁ ଯେ, ବହୁ ପୂର୍ବରୁ ଦୂତ ପଠାଇ ସ୍ୱାଗତ ସମ୍ବର୍ଦ୍ଧନାର ଆୟୋଜନ କରାଇଥା'ନ୍ତି । ମୁଁ ଜଣେ ସାଧାରଣ ଋଷି, ମୋ' ପାଇଁ ଏତେ ବ୍ୟସ୍ତ ହେବାର ଦରକାର କ'ଣ ?"

ରାଜସେବକ ହାତ ଯୋଡ଼ି କହିଲେ—"ଭଗବନ୍, ଆପଣ ରାଜା ମହାରାଜାମାନଙ୍କର ମହାଗୁରୁ । ରାଜ ବୈଭଶାଳୀମାନେ ଆପଣଙ୍କ ଚରଣଧୂଳିକୁ ସରି ହେବେ ନାହିଁ ।

ରାଜସେବକ ଏହା ମଧ୍ୟରେ ମହାରାଜ ଜନକଙ୍କ ନିକଟକୁ ବିଶ୍ୱାମିତ୍ରଙ୍କ ଆଗମନର ବାର୍ତ୍ତା ପଠାଇ ଦେଇ, ମୁନି ମଣ୍ଡଳୀ ପାଇଁ ନିବାସ ସ୍ଥାନର ବ୍ୟବସ୍ଥା କରାଇ ଦେଲେ ଏବଂ ସେମାନଙ୍କ ଜଳଖିଆ ପଥର ଖାଇବାର ସୁବ୍ୟବସ୍ଥା କଲେ ।

ଏହିକବେଳେ ବାଜା ବାଜି ଉଠିଲା । ପ୍ରତିହାରୀ ଖବର ଦେଲା— ମହାରାଜ ବଜେ କରୁଛନ୍ତି । ରଥର ଘର୍ଘର ଧ୍ୱନିରେ ଗଗନ ପବନ ମୁଖରିତ ହୋଇ ଉଠିଲା । ମହାରାଜ ଜନକ ନିଜ କୁଳପୁରୋହିତ ଶତାନନ୍ଦ ତଥା ପାତ୍ର ମନ୍ତ୍ରୀଙ୍କ ଗହଣରେ ମୁନି ବିଶ୍ୱାମିତ୍ରଙ୍କ ଦର୍ଶନ ପାଇଁ ଆସିଲେ । ସେ ଦୂରରୁ ରଥରୁ ଓହ୍ଲାଇ ପଡ଼ି ପାଦରେ ଚାଲି ଚାଲି ଆସିଲେ । ତାଙ୍କ ହାତରେ ଥିଲା ଅର୍ଘ୍ୟ । ରାଜର୍ଷି ଜନକଙ୍କୁ ଆସୁଥିବାର ଦେଖି ବିଶ୍ୱାମିତ୍ର ଆସନରୁ ଉଠି ପଡ଼ିଲେ । ଶତାନନ୍ଦ ଆଗେଇ ଆସି ବିଶ୍ୱାମିତ୍ରଙ୍କ ପାଦରେ ପ୍ରଣାମ ଜଣାଇବା ପୂର୍ବରୁ ସେ ତାଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରି ନେଲେ । ରାଜର୍ଷି ଜନକ ବିଶ୍ୱାମିତ୍ରଙ୍କ ପାଦତଳେ ଲୋଟିଯାଇ ନିଜର ଭକ୍ତିପୂର୍ଣ୍ଣ ଶ୍ରଦ୍ଧା ଜଣାଇଲେ । ସେ ମୁନିଙ୍କୁ ପାଦ୍ୟ ଓ ଅର୍ଘ୍ୟ ଦେଇ ଉତ୍ତମ ଆସନରେ ବସାଇଲେ । ମୁନି ରାଜା ଜନକଙ୍କୁ ରାଜ୍ୟ ତଥା ପରିବାରର କୁଶଳବାର୍ତ୍ତା ପଚାରିଲେ । ଉଭୟଙ୍କ ମଧ୍ୟରେ ପ୍ରାରମ୍ଭିକ ଆଲୋଚନା ଶେଷ ହେବା ମାତ୍ରେ, ରାଜା ଜନକ ହାତଯୋଡ଼ି ପଚାରିଲେ - "ମୁନିବର, ଆପଣଙ୍କ ସହିତ କାମଦେବଙ୍କଠାରୁ ଅଧିକ ସୁନ୍ଦର, ଏ କିଶୋର ଦୁଇଟି କିଏ ? ଏମାନେ ନିଶ୍ଚୟ କୌଣସି ଦେବ କିମ୍ବା ବିଦ୍ୟାଧର କୁମାର ହୋଇ ପାରନ୍ତି ! କାରଣ ମନୁଷ୍ୟ ସମାଜରେ ଏତେ ସୁନ୍ଦର ବାଳକ ଥିବାର ମନେ ହୁଏ ନାହିଁ । ବେଶଭୂଷା ତଥା ଧନୁଶର ଦେଖି ମନେ ହୁଏ—ଏ ଦୁହେଁ ନିର୍ଣ୍ଣିତ ଭାବରେ କ୍ଷତ୍ରିୟ କୁମାର । କିନ୍ତୁ ଶାଳୀନତା ଦୃଷ୍ଟିରୁ ଏ ଦୁହେଁ ମୁନିକୁମାର ବୋଲି ଜଣା ପଡ଼ୁଛନ୍ତି । ମୋର ମନ ଏ' ଦୁହିଁଙ୍କ ଆଡ଼କୁ ସ୍ୱତଃ ଆକର୍ଷିତ ହେଉଛି ।

ଏହା ଶୁଣି ବିଶ୍ୱାମିତ୍ର ହସି ଉଠିଲେ ଏବଂ ରାମ ସଙ୍କୋଚରେ ମୁହଁ ତଳକୁ କରିଦେଲେ । ବିଶ୍ୱାମିତ୍ର ଶ୍ରୀରାମଙ୍କ ପିଠି ଆଉଁସି ଦେଇ କହିଲେ—ତୁମର ପରିଚୟ ଦିଅ କୁମାର !

ରାମଚନ୍ଦ୍ର ଆହୁରି ସଙ୍କୋଚର ଅତଳ ଜଳରେ ବୁଡ଼ିଗଲେ । ତାଙ୍କର ସଙ୍କୋଚଶୀଳ ତଥା ରମଣୀୟ ରୂପଲାବଣ୍ୟ ଦେଖି ରାଜା ଜନକ ଆତ୍ମବିସ୍ମୃତ ହୋଇ ଉଠିଲେ । ଶ୍ରୀରାମଙ୍କ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ଜନକ କହିଲେ—"ମୁନିବର, କୁମାର ଅତ୍ୟନ୍ତ ସଙ୍କୋଚଶୀଳ । ଆପଣ ଦୟାକରି ତାଙ୍କ ପରିଚୟ ଦିଅନ୍ତୁ !"

ବିଶ୍ୱାମିତ୍ର ହସି ହସି କହିଲେ—"ରାଜର୍ଷି, ମୁଁ କୁମାରଙ୍କ ପରିଚୟ ଦେଇ ପାରିବି ନାହିଁ । କୁମାର ନିଜେ ହିଁ ନିଜର ପରିଚୟ ଦେବେ ।"

ସେ ଶ୍ରୀରାମଙ୍କ ମୁଣ୍ଡ ଆଉଁଷି ଦେଇ କହିଲେ—"କୁମାର, ତୁମେ ନିଜର ପରିଚୟ ରାଜା ଜନକଙ୍କୁ ଦିଅ ।"

ଶ୍ରୀରାମ ଗୁରୁଙ୍କ ଅନୁଜ୍ଞା ପାଇ କୋମଳ ତଥା ବିନୀତ କଣ୍ଠରେ କହିଲେ—"ମହାରାଜ, ମୁଁ ଅଯୋଧ୍ୟାର ମହାରାଜା ଦଶରଥଙ୍କ ପୁତ୍ର ଶ୍ରୀରାମ । ଏ' ହେଉଛୁ—ମୋର ସାନ ଭାଇ ଲକ୍ଷ୍ମଣ ।"

ବିସ୍ମିତ ହୋଇ ଗଦ୍ ଗଦ୍ ସ୍ୱରରେ ଜନକ କହିଲେ—"ଅଃଗ୍ରୁ, ଆପଣ ଶ୍ରୀରାମଚନ୍ଦ୍ର ! ଆଜି ପୁଦ୍ଧା ଯାହାଙ୍କ ଗୁଣକୀର୍ତ୍ତନ ବେଦ, ଶାସ୍ତ୍ର ତଥା ପୁରାଣରେ ଶୁଣି ଶୁଣି କୃତାର୍ଥ ହୋଇଥିଲି, ସେହି ତ୍ରିଲୋକପାବନ ଶ୍ରୀରାମ ଆଜି ମୋର ସମ୍ମୁଖରେ ବିରାଜମାନ କରିଛନ୍ତି ! ହେ ମୁନିବର, ଆପଣ ମୋର ପ୍ରତି ଅଶେଷ ଅନୁଗ୍ରହ କରିଛନ୍ତି । ମୋର ଅହୋଭାଗ୍ୟ ! ପ୍ରକୃତରେ ଆଜି ମୋର ଜପ, ଯଜ୍ଞ, ତପ ଓ ଅନୁଷ୍ଠାନ ସବୁ କିଛି ସଫଳ ହୋଇଛି ।"

ତାହାପରେ ରାଜା ଜନକ ବିଶ୍ୱାମିତ୍ରଙ୍କ ଅନୁମତି ନେଇ ସେଠାରୁ ବିଦାୟ ନେଲେ । ସେ ଯାଇ ରାଣୀଙ୍କ ଆଗରେ ବିଶ୍ୱାମିତ୍ରଙ୍କ ତପସ୍ୟା ତଥା ଶ୍ରୀରାମଙ୍କ ରୂପ-ଲାବଣ୍ୟ ସମ୍ବନ୍ଧରେ ବର୍ଣ୍ଣନା କଲେ । ତାହା ଶୁଣି ରାଣୀ ଶ୍ରୀରାମ ତଥା ବିଶ୍ୱାମିତ୍ରଙ୍କୁ ଦେଖିବାର ଲାଳସା ପ୍ରକାଶ କରି କହିଲେ –"ମହାରାଜ, ବିଶ୍ୱାମିତ୍ରଙ୍କ ଯଶୋଗାଥା ମୁଁ ଚିରକାଳ ଶୁଣି ଆସୁଛି । ସେ ନିଜର ତପସ୍ୟା ବଳରେ କ୍ଷତ୍ରିୟରୁ ବ୍ରାହ୍ମଣ ହୋଇ ପାରିଛନ୍ତି । ଗୋଟିଏ ଜନ୍ମରେ ଜାତି ପରିବର୍ତ୍ତନ କିଛି କମ୍ କଥା ନୁହେଁ । ତାଙ୍କ ପରି ମୁନିବରଙ୍କ ଦର୍ଶନରେ ମୋର ଆତ୍ମା ପରିତୃପ୍ତ ହୋଇଯିବ ଏବଂ ତାଙ୍କୁ ଦେଖିବା ଆଳରେ ମୁଁ ଅଯୋଧ୍ୟାର ରାଜକୁମାର—ଦ୍ୱୟଙ୍କୁ ଦର୍ଶନ କରି ନେତ୍ର ପବିତ୍ର କରିବି । ଆପଣ ଦୟାକରି ମୁନି ତଥା ରାଜକୁମାରଙ୍କୁ ଅନ୍ତଃପୁରକୁ ଡକାଇ ଆଣନ୍ତୁ ।

ଜନକ ରାଣୀଙ୍କୁ ବୁଝାଇ କହିଲେ—ଦେବି, ବିଶ୍ୱାମିତ୍ରଙ୍କ ପରି ପ୍ରସିଦ୍ଧ ଋଷିଙ୍କୁ ଅନୁରୋଧ କରିବା ପାଇଁ ମୋର ସାହସ ହେଉନାହିଁ । ତୁମେ ଶତାନନ୍ଦଙ୍କୁ ପଠାଇ ତୁମର ଅଭିଳାଷ ବିଶ୍ୱାମିତ୍ରଙ୍କୁ ଜଣାଇ ଦିଅ । ହୁଏତ, ତୁମର ଅନୁରୋଧରେ ମୁନି ବିଶ୍ୱାମିତ୍ର ଅନ୍ତଃପୁରକୁ ଆସିପାରନ୍ତି !

ମହାରାଣୀଙ୍କ ଅନୁରୋଧରେ ଶତାନନ୍ଦ ଯାଇ ବିଶ୍ୱାମିତ୍ରଙ୍କ ନିବାସ ସ୍ଥାନରେ ପହଁଞ୍ଚିଲେ । ଶତାନନ୍ଦଙ୍କୁ ଦ୍ୱିତୀୟ ଥର ଆସିଥିବାର ଦେଖି ବିଶ୍ୱାମିତ୍ର କହିଲେ—"ଶ୍ରୀରାମ, ମୁଁ ତୁମକୁ କହିବାଲାଗି ଭୁଲି ଯାଇଥିଲି । ଏ' ହେଉଛନ୍ତି ସେହି ପ୍ରସିଦ୍ଧ

ମୁନି ଗୌତମଙ୍କ ପୁତ୍ର ଶତାନନ୍ଦ । ତୁମେ ଏହାଙ୍କ ଗର୍ଭଧାରିଣୀ ମା ଦେବୀ ଅହଲ୍ୟାଙ୍କୁ ପାଷାଣୀ ମୂର୍ତ୍ତିରୁ ଉଦ୍ଧାର କରିଛ ।

ନିଜ ମାତାଙ୍କ ଉଦ୍ଧାର ସମ୍ବାଦରେ ଶତାନନ୍ଦ କୃତ କୃତ୍ୟ ହୋଇ ଉଠିଲେ । ସେ ମନେ ମନେ ଶ୍ରୀରାମଙ୍କ ପାଦପଦ୍ମରେ ଶତ ସହସ୍ର ବାର ପ୍ରଣାମ ଜଣାଇ କହିଲେ "ହେ ଶ୍ରୀରାମ, ମୁଁ ଆପଣଙ୍କ ଦୟାଳୁତା ତଥା ଅନୁଗ୍ରହ ଲାଗି କୃତଜ୍ଞ । ମହର୍ଷି ବିଶ୍ୱାମିତ୍ରଙ୍କଠାରେ କେବଳ ମୁଁ ନୁହେଁ, ସମସ୍ତ ମିଥିଳାପୁରୀ କୃତଜ୍ଞ । କାରଣ, ତାଙ୍କରି ଅନୁଗ୍ରହ ଫଳରେ ଏଠାକାର ଜନମାନବଙ୍କ ନେତ୍ର ପବିତ୍ର ହେବ । ସେମାନେ ଆପଣଙ୍କ ଅଲୌକିକ ସାମାନ୍ୟ ମୂର୍ତ୍ତି ଦେଖି ମାନବଜନ୍ମ ସାର୍ଥକ କରିବେ ।"

ସେ ପୁଣି ବିନୀତ ଭାବରେ କହିଲେ—"ହେ ମୁନିବର, ମୋର ଗୋଟିଏ ପ୍ରାର୍ଥନା ରହିଛି । ମହାରାଜ ଜନକଙ୍କ ରାଣୀ ଆପଣଙ୍କ ପାଦପଦ୍ମ ଦର୍ଶନ କରିବା ଲାଗି ମୋତେ ପଠାଇଛନ୍ତି । ଆପଣ ଅନୁଗ୍ରହ କରି ଅନ୍ତଃପୁରରେ ପଦାର୍ପଣ କଲେ, ସମସ୍ତଙ୍କ ଅଭିଳାଷ ପୂର୍ଣ୍ଣ ହେବ । ଆପଣଙ୍କଠାରେ ଜଣାଇବା ଲାଗି ମହାରାଣୀ ଆଉ ଗୋଟିଏ ନିବେଦନ କରିଛନ୍ତି । ଆପଣ କାଲି ସେହିଠାରେ ଭୋଜନ କରିବେ । ଯଦି ଆପଣ ଉଚିତ ମନେ କରନ୍ତି' ତେବେ ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ଘେନି ଆସିବେ ।

ତାହା ଶୁଣି ହସି ହସି ବିଶ୍ୱାମିତ୍ର କହିଲେ—"ସେ ତୁହେଁ ମୋର ନେତ୍ର ପିତୁଳୀ ତଥା ହୃଦୟର ହାର । ତାଙ୍କର ପାଇଁ ମୁଁ ନିଶ୍ଚିତ ଭାବରେ ଅନ୍ତଃପୁରକୁ ଯିବି । ନୋହିଲେ, ମୋ' ପରି ବୀତରାଗୀ ସନ୍ୟାସୀ କାହିଁକି ଅବା ଅନ୍ତଃପୁରକୁ ଯିବା ଲାଗି ସହଜରେ ରାଜି ହୋଇ ଥାଆନ୍ତା !"

ଶତାନନ୍ଦ ଫେରି ଯାଇ ମହାରାଣୀଙ୍କୁ ସୁସମ୍ବାଦ ଶୁଣାଇଲେ । ମହାରାଣୀ ଏ' ସମ୍ବାଦ ପାଇବା ମାତ୍ରେ ରାଜପୁରୀକୁ ଇନ୍ଦ୍ରପୁରୀ ସମାନ ସଜାଇବାକୁ ଲାଗିଲେ ଏବଂ ପରଦିନ ପ୍ରଭାତରୁ ଉଠି ମୁନି ବିଶ୍ୱାମିତ୍ର ତଥା ଶ୍ରୀରାମ ଲକ୍ଷ୍ମଣଙ୍କ ପାଇଁ ଷଡ଼ରସପୂର୍ଣ୍ଣ ବ୍ୟଞ୍ଜନ ପ୍ରସ୍ତୁତ କରିବାକୁ କହିଲେ । ମହାରାଣୀଙ୍କ ସାଜସଜା ଲକ୍ଷ୍ୟ କରି ଜନକ ମନେ ମନେ ଆନନ୍ଦିତ ହୋଇ ମୁନି ତଥା ରାଜକୁମାର ଦୁହିଁଙ୍କୁ ଅଣାଇବା ଲାଗି ରଥ ପଠାଇ ଦେଲେ ।

ସୀତା ଶ୍ରୀରାମଙ୍କ ରୂପ ଓ ଗୁଣଗାଥା ଶ୍ରବଣ କରି ମନେ ମନେ ପ୍ରଫୁଲ୍ଲିତା ହୋଇଗଲେ । ଆଶା, ନିରାଶା, ଅଭିଳାଷ, ପ୍ରତୀକ୍ଷା, ଉତ୍ସୁକତା, ମିଳନ, ଭୟ ତଥା ସଙ୍କୋଚରେ ତାଙ୍କର ହୃଦୟ ପୂରି ଉଠିଲା । ତଳଚିତ୍ର ପରି ସୀତାଙ୍କ ହୃଦୟରେ ପ୍ରତ୍ୟେକ ଭାବ ଅଙ୍କୁରିତ ହୋଇ ଉଭେଇଗଲା । ରାଣୀ ମଧ୍ୟ ଔତ୍ସୁକ୍ୟରେ ଅଭିଭୂତା ହୋଇ ଉଠିଲେ ।

ସୁସଜ୍ଜିତ ରଥ ଆସି ରାଜପୁରୀର ଦ୍ୱାର—ଦେଶରେ ପହଞ୍ଚିଗଲା ଏବଂ ରାଜା ଜନକ ସମ୍ଭ୍ରମତାର ସହିତ ମୁନି ବିଶ୍ୱାମିତ୍ର ତଥା ରାଜକୁମାରଙ୍କୁ ଅଭ୍ୟର୍ଥନା ଜଣାଇବା ଲାଗି ଦ୍ୱାରଦେଶକୁ ଅଗ୍ରସର ହେଲେ ।

ସିଂହଦ୍ୱାରରେ ରାଜା ଜନକ, ମୁନି ବିଶ୍ୱାମିତ୍ର ତଥା ରାଜକୁମାରଙ୍କୁ ଅଭ୍ୟର୍ଥନା ଜଣାଇ ଭିତରକୁ ନେଇ ଆସିଲେ । ମୁନିଙ୍କର ଦୁଇ ପାଖରେ ରାମ ଲକ୍ଷ୍ମଣ ଚାଲୁଥିଲେ । ମୁନି ବିଶ୍ୱାମିତ୍ର ଦୁଇ କୁମାରଙ୍କ କାନ୍ଧରେ ହାତରଖି ଚାଲୁଥିଲେ ଏବଂ ହସି ହସି ସେ ଦୁହିଁଙ୍କ ସହିତ କଥାବାର୍ତ୍ତା କରୁଥିଲେ । ସେତେବେଳେ ଶ୍ରୀରାମ ଅତ୍ୟନ୍ତ ଗମ୍ଭୀର ହୋଇ ଉଠିଥିଲେ । ସେ ମୁନିଙ୍କ ଆଲୋଚନାରେ କେବଳ 'ହଁ' କିମ୍ବା 'ନା' କରି ସ୍ପଷ୍ଟ ଉତ୍ତର ଦେଉଥିଲେ ।

ଶ୍ରୀରାମ ମହାରାଜ ଜନକଙ୍କ ବୈଭବ ତଥା ଆଦର ଆଭ୍ୟର୍ଥନା ଲକ୍ଷ୍ୟ କରି ବିସ୍ମିତ ହୋଇଗଲେ । ସେ ଉତ୍କ୍ଷଣ ଦୃଷ୍ଟିରେ ରାଜପୁରର ପ୍ରତ୍ୟେକ ବସ୍ତୁକୁ ନିରୀକ୍ଷଣ କରି ଚାଲିଥିଲେ । କିନ୍ତୁ ତାଙ୍କ ମୁହଁରୁ ପଦଟିଏ ହେଲେ କଥା ବାହାରୁ ନଥିଲା ।

ରାଜା ଜନକ ମୁନିଙ୍କୁ ନେଇ ଅନ୍ତଃପୁରରେ ବସାଇ ସେଠାରୁ ଚାଲି ଆସିଲେ । ମହାରାଣୀ ସୁସଜ୍ଜିତା ରାଜକୁମାରୀ ସୀତାଙ୍କ ସହିତ ଆସି ମୁନିଙ୍କ ପାଦ ବନ୍ଦନା କଲେ । ସୀତା ବିଶ୍ୱାମିତ୍ରଙ୍କ ପାଦରେ ପ୍ରଣାମ ଜଣାଇବା ସମୟରେ ତାଙ୍କ ମଥାମଣିରୁ ଗୋଟିଏ ସୁଗନ୍ଧିତ ପୁଷ୍ପ ସେଠାରେ ଖସି ପଡ଼ିଲା । ବିଶ୍ୱାମିତ୍ର ସେହି ଫୁଲଟିକୁ ତତ୍‌କ୍ଷଣାତ୍ ଉଠାଇ ନେଇ ଶ୍ରୀରାମଙ୍କ ହସ୍ତରେ ପ୍ରଦାନ କରି କହିଲେ—"ଶ୍ରୀରାମ, ଦେଖିଲ—କେଡ଼େ ମନୋହର ତଥା ସୁଗନ୍ଧିତ ଫୁଲଟିଏ ! ଏହାକୁ ଆଘ୍ରାଣ କରି ଏହାର କମନୀୟତା ଲକ୍ଷ୍ୟ କର ।

ଗୁରୁଦେବଙ୍କ ପଦକମଳରେ ଅର୍ପିତ ଫୁଲଟିକୁ ଶ୍ରୀରାମ ଅବମାନନା କିପରି କରନ୍ତେ ? ସେ ଗୁରୁଦେବଙ୍କ ଆଜ୍ଞାନୁସାରେ ଫୁଲଟିକୁ ମୁଣ୍ଡରେ ଲଗାଇ ଆଘ୍ରାଣ କରିବାକୁ ଲାଗିଲେ ।

ସୀତା ବିଶ୍ୱାମିତ୍ରଙ୍କୁ ପ୍ରଣାମ କରିସାରି ସଙ୍କୋଚପୂର୍ଣ୍ଣ ଚାହାଣିରେ ଶ୍ରୀରାମଙ୍କ ରୂପଲାବଣ୍ୟ ଅବଲୋକନ କଲେ ଏବଂ ଶ୍ରୀରାମ ମଧ୍ୟ ରାଜପୁରୀର ପଞ୍ଚତନ୍ତ୍ର ଦେଖିବା ଆଳରେ ସୀତାଙ୍କର ତୈଳୋକ୍ୟ ମୋହିନୀ ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟିପାତ କଲେ । ଦୁହେଁ ଦୁହିଁଙ୍କୁ ଦେଖି ଆତ୍ମବିସ୍ମୃତ ହୋଇଗଲେ ।

ମୁନି ବିଶ୍ୱାମିତ୍ର ଗୋଟିଏ ଉଚ୍ଚ ଆସନରେ ବସିଥିଲେ । ତାଙ୍କର ଦୁଇ ପାଖରେ ରାମ ଲକ୍ଷ୍ମଣ ବିରାଜମାନ କରିଥିଲେ । ଦୁହିଁଙ୍କୁ ଶୁଣାଇ ବିଶ୍ୱାମିତ୍ର କହିଲେ—"କୁମାର, ତୁମେ ଦୁହେଁ ମହାରାଣୀଙ୍କୁ ପ୍ରଣାମ କର ।"

ଗୁରୁଙ୍କ ଆଦେଶରେ ଅତ୍ୟନ୍ତ ସଙ୍କୋଚର ସହିତ ଶ୍ରୀରାମ ତଥା ଲକ୍ଷ୍ମଣ ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ମହାରାଣୀଙ୍କୁ ପ୍ରଣାମ କଲେ । ମହାରାଣୀ ଦୁହିଁଙ୍କ ଶିରରେ ହାତରଖି ଶୁଭାଶିଷ ପ୍ରଦାନ କରି କହିଲେ—"ଚିରଞ୍ଜୀବୀ ହୁଅ, ସୁନ୍ଦରୀ ପତ୍ନୀ, ଯଶସ୍ୱୀ ପୁତ୍ର ଲାଭ କର !"

ଏହା ଶୁଣି ମୁନି ବିଶ୍ୱାମିତ୍ର ହସି ଦେଲେ ଏବଂ ରାମ ଲକ୍ଷ୍ମଣ ଦୁହେଁ ଲଜ୍ଜାରେ ମୁହଁ ତଳକୁ କରି ଦେଲେ ।

ମହାରାଣୀ କୁମାର ଦୁହିଁଙ୍କୁ କୋମଳ ସ୍ୱରରେ ପଚାରିଲେ—"ତୁମେ ଦୁହେଁ ଅଯୋଧ୍ୟାର ରାଜକୁମାର ପରା ?"

ହଁ ମାଆ !ଉତ୍ତର ଦେଲେ ଶ୍ରୀରାମ । ଦୁହେଁ ମହାରାଣୀଙ୍କଠାରୁ ଫେରି ଆସି ମୁନିଙ୍କ ନିକଟରେ ଆସନ ଗ୍ରହଣ କଲେ । ଏହି ସମୟରେ ଶ୍ରୀରାମ ନତଦୃଷ୍ଟିରେ ସୀତାଙ୍କ ଆଡ଼କୁ ଚାହିଁ ଦେଲେ । ଠିକ୍ ସେତିକିବେଳେ ସୀତା ମାତାଙ୍କ ଦୃଷ୍ଟିର ଅନ୍ତରାଳରେ ଶ୍ରୀରାମଙ୍କ ଆଡ଼କୁ ଚାହୁଁଥିଲେ । ଚାରିଚକ୍ଷୁର ମିଳନ ହେଲା । ଦୁହେଁ ଲଜ୍ଜିତ ହୋଇ ଦୃଷ୍ଟି ଫେରାଇ ନେଲେ ।

ଏହି ସମୟରେ ମହାରାଣୀ ପଚାରିଲେ—"ଭଗବନ, ଆପଣ ଏ ଦୁଇଟି ସୁକୁମାର ରାଜକୁମାରଙ୍କୁ ତାଙ୍କ ପିତା ମାତାଙ୍କ ପାଖରୁ ଯେଉଁ ଆଣିଛନ୍ତି କାହିଁକି ?"

ବିଶ୍ୱାମିତ୍ର ହସି ହସି କହିଲେ—ମୁଁ ଏହି ଦୁହିଁଙ୍କୁ ଶକ୍ତିମାନ୍ କରିବା ଇଚ୍ଛାରେ ମୋ' ସହିତ ବନଗିରି ପ୍ରାନ୍ତରରେ ବୁଲାଉଛି । କଷ୍ଟସହିଷ୍ଣୁ ନ ହେଲେ କେବେହେଲେ କେହି ଶକ୍ତିମାନ୍ ହୁଅନ୍ତି ନାହିଁ । ସହିଷ୍ଣୁ ବ୍ୟକ୍ତିହିଁ ସିଦ୍ଧି ଲାଭ କରିଥାଏ ।

ଏତିକି ବେଳେ ପରିଚାରିକା ଆସି ଜଣାଇଲା—ଦେବି ! ଭୋଜନ ପ୍ରସ୍ତୁତ ହୋଇ ଗଲାଣି । ତହୁଁ ମହାରାଣୀ ବିଶ୍ୱାମିତ୍ରଙ୍କ ପାଦ ଧୋଇ ନିଜ ଅଞ୍ଚଳରେ ପୋଛି ଦେଲେ । ସେ ରାମ ଲକ୍ଷ୍ମଣଙ୍କ ପାଦ ଧୋଇବାକୁ ଯାଉଥିଲେ, କିନ୍ତୁ ଶ୍ରୀରାମ ମହାରାଣୀଙ୍କ ହାତରୁ ଜଳପାତ୍ରଟି ନେଇ ନିଜେ ପାଦ ଧୋଇ ସାରି, ଲକ୍ଷ୍ମଣ ଆଡ଼କୁ ପାତ୍ରଟି ବଢ଼ାଇ ଦେଲେ ।

ସମସ୍ତେ ଆସି ଆସନ ଗ୍ରହଣ କଲେ । ମହାରାଣୀ ସୁବର୍ଣ୍ଣ ଥାଳୀରେ ଅନ୍ନ ପରଷି ଦେଲେ । ସୀତା ସୁବର୍ଣ୍ଣ ପାତ୍ରରେ ଭିନ୍ନ-ଭିନ୍ନ ବ୍ୟଞ୍ଜନ ଆଣି ମାତାଙ୍କ ହାତକୁ ବଢ଼ାଇ ଦେଲେ । ମହାରାଣୀ ବ୍ୟଞ୍ଜନ ପାତ୍ରଗୁଡ଼ିକୁ ଅନ୍ନଥାଳୀ ଚାରିପଟେ ସଜାଇ ଦେଲେ ।

ନାନା ପ୍ରକାର ବ୍ୟଞ୍ଜନ ତଥା ମିଷ୍ଟାନ୍ନ ଦେଖି ବିଶ୍ୱାମିତ୍ର ବିସ୍ମିତ ହୋଇଗଲେ । ଶ୍ରୀରାମ କିନ୍ତୁ ଭୋଜନ ପାତ୍ର ଆଡ଼କୁ ଦୃଷ୍ଟି ନ ଦେଇ ସୀତାଙ୍କ ରୂପ ଲାବଣ୍ୟରେ ବୁଡ଼ି ରହିଥିଲେ ।

ସମସ୍ତ ପଦାର୍ଥ ପରଷି ଦେଇ ଭୋଜନ କରିବା ଲାଗି ମହାରାଣୀ ମୁନିଙ୍କୁ ଅନୁରୋଧ କଲେ । ମୁନି ଯଥାବିଧିରେ ମନ୍ତ୍ର ଉଚ୍ଚାରଣ ପୂର୍ବକ ଭୋଜନ ଆରମ୍ଭ କଲେ । ମହାରାଣୀ ମୁନିଙ୍କ ପାଖରେ ହାତଯୋଡ଼ି ବସିପଡ଼ି କୋମଳ ସ୍ୱରରେ କହିଲେ—"ଭଗବନ୍ ସାଧାସିଧା ଯାହା କିଛି ପ୍ରସ୍ତୁତ ହୋଇଛି ଆପଣ ଆନନ୍ଦରେ ଭୋଜନ କଲେ ମୋର ଜୀବନ ଧନ୍ୟ ହେବ । ଆମ ଏଠାକାର ଭୋଜନ ରାଜକୁମାର ଦୁହିଁଙ୍କୁ ଆଦୌ ରୁଚିକର ହେବ ନାହିଁ । କାରଣ ସେ ହେଉଛନ୍ତି—ରାଜଚକ୍ରବର୍ତ୍ତୀଙ୍କ ଅଲିଅଳ କୁମାର । ଆମେ ନିତାନ୍ତ ସାଧାରଣ ବ୍ୟକ୍ତି । ତେଣୁ ତାଙ୍କୁ ଆମ ଖାଦ୍ୟ ରୁଚିକର ହେବ କିପରି ?"

ଲକ୍ଷ୍ମଣ ହସି ହସି କହିଲେ—"ଯଦି ସାଧାରଣ ଲୋକମାନେ ଏପରି ଖାଦ୍ୟ ପାଇ ପାରନ୍ତି, ତେବେ ସମସ୍ତେ ଏହି ପ୍ରକାର ସାଧାରଣ ଜୀବନ ଧାରଣ ପାଇଁ ଅହୋଭାଗ୍ୟ ମନେ କରନ୍ତି ।"

ଲକ୍ଷ୍ମଣଙ୍କ ଉତ୍ତର ଶୁଣି ସମସ୍ତେ ହସି ଉଠିଲେ । ସମସ୍ତଙ୍କ ହସ କାନରେ ପଡ଼ିବା ମାତ୍ରେ ଶ୍ରୀରାମଙ୍କ ଅନ୍ୟମନସ୍କତା ଭାଙ୍ଗି ଗଲା । ସେ ଭାବିଲେ—ବୋଧହୁଏ ମୋତେ ଲକ୍ଷ୍ୟକରି ସମସ୍ତେ ହସୁଛନ୍ତି । ଏହି ସମୟରେ ସୀତା ଦେବୀ ସେହି ସ୍ଥାନକୁ ଆସିଗଲେ । ଶ୍ରୀରାମ ତାଙ୍କଠାରୁ ଦୃଷ୍ଟି ଫେରାଇ ଆଣି ଭୋଜନ କରିବାରେ ତଲ୍ଲୀନ ହୋଇଗଲେ ।

ମହାରାଣୀ ବିଶ୍ୱାମିତ୍ରଙ୍କ ସହିତ ଧନୁଷଯଜ୍ଞ ସମ୍ବନ୍ଧରେ ଆଲୋଚନାରେ ତଲ୍ଲୀନା ହୋଇଗଲେ । ସେତିକିବେଳେ ମୁନି ଓ କୁମାର ଦୁହିଁଙ୍କ ପାତ୍ରରୁ ଖାଦ୍ୟ ଶେଷ ହୋଇ ଆସିଲା । ତହୁଁ ସେ ସୀତାଙ୍କୁ କହିଲେ—"ମାଆ, ଅନ୍ନ ବ୍ୟଞ୍ଜନ ପରଷି ଦେ'ତ ।"

ସୀତା ସଙ୍କୋଚ ବୋଧ କରି ଖାଦ୍ୟ ପରଷିବାକୁ ଗଲେ ନାହିଁ । ତହୁଁ ମହାରାଣୀ ମୃଦୁ ଭର୍ତ୍ସନା କରନ୍ତେ, ସେ ବାଧ୍ୟ ହୋଇ ମୁନିଙ୍କ ଥାଳିରେ ଅନ୍ନ ପରଷି ଦେଇ, ମନା କରିବା ସତ୍ତ୍ୱେ ଲକ୍ଷ୍ମଣଙ୍କ ପାତ୍ରରେ ଆବଶ୍ୟକତାରୁ ଅଧିକ ଅନ୍ନ ଢାଳି ଦେଲେ । ତା' ପରେ ସୀତା ଶ୍ରୀରାମଙ୍କ ପାତ୍ରରେ ଅନ୍ନ ଦେବାକୁ ଯାଇ ସେଠାରେ ପହଞ୍ଚି ଯାଆନ୍ତେ, ଶ୍ରୀରାମ ମୁହଁ ଉପରକୁ ଉଠାଇ ସୀତାଙ୍କୁ ଚାହିଁ ରହିଲେ । ବାସ୍...... ସେତିକିରେ ଜନକନନ୍ଦିନୀ ସ୍ତବ୍ଧ ହୋଇଗଲେ । ସେ ଅଚଳ ପ୍ରତିମା ପରି ଛିଡ଼ା ହୋଇ ରହିଲେ । ତାଙ୍କ ହାତରେ ଥିବା ଅନ୍ନ ପାତ୍ରଟି ଥରି ଉଠିଲା । ତାହା ହାତରୁ ଖସି ପଡ଼ିବା ଆଗରୁ ମହାରାଣୀ ଧାଇଁ ଯାଇ ପାତ୍ରଟିକୁ ଧରି ମନାଇ ଟିକିଏ ବିରକ୍ତିମିଶା ସ୍ୱରରେ କହିଲେ—'ପାଗଳି, ତୋର ଆଉ କେବେ ବୁଦ୍ଧି ହେବ ? ତୋ ହାତରେ ଦେଖୁଛି କିଛି କାମ ହେବ ନାହିଁ ।"

ଏହା ଶୁଣି ବଶ୍ୱାମିତ୍ର ସ୍ନେହମିଶ୍ରିତ ସ୍ୱରରେ କହିଲେ—"ନା…ନା… ତା' ଠିକ୍ ନୁହେଁ । ଝିଅ ଟିକିଏ ସଙ୍କୋଚ କରୁଛି ।"

ସୀତା ଏତକ ଶୁଣିବା ମାତ୍ରେ ଭିତରକୁ ପଳାଇଗଲେ । ଆଉ ଡାକିଲେ ମଧ୍ୟ ବାହାରକୁ ଆସିଲେ ନାହିଁ ।

ଭୋଜନ ପର୍ବ ଶେଷ ହେଲା । ତାମ୍ବୁଳ ଖାଇ ମୁନି ବଶ୍ୱାମିତ୍ର ନିବାସସ୍ଥଳକୁ ଯିବା ପାଇଁ ବାହାରିଲେ । ମୁନିଙ୍କୁ ପ୍ରଣାମ କରିବା ପାଇଁ ମହାରାଣୀ ସୀତାଙ୍କୁ ଡାକି ପକାଇଲେ । କିନ୍ତୁ ଭିତର ପୁରରୁ ସୀତା ଆସିଲେ ନାହିଁ । ମହାରାଣୀ ନିଜେ ଯାଇ ସୀତାଙ୍କୁ ଧରି ଆସି ଟିକିଏ ମୃଦୁ ବକ୍ରୋକ୍ତିମିଶା ସ୍ୱରରେ କହିଲେ—"ପାଗଳି, ମହାମୁନିଙ୍କ ପାଦ ଛୁଇଁ ପ୍ରଣାମ କର । ତାଙ୍କର ଆଶୀର୍ବାଦ ହେଲେ ତୋତେ ସବୁ କିଛି ମିଳିବ । ତୁ ସୁନ୍ଦର ବରଟିଏ ପାଇ ସୁଖରେ ଯୁଗଯୁଗ କରିବୁ ।"

ବାସ୍, ଏତକରେ ସୀତାଙ୍କ ମୁଖମଣ୍ଡଳ ଲଜ୍ଜାରେ ଆରକ୍ତ ହୋଇଗଲା । ସେ ମୁନିଙ୍କ ପାଦରେ ପ୍ରଣାମ କରି ଭିତରପୁରକୁ ପଳାଇ ଗଲେ ।

ମୁନି ବିଶ୍ୱାମିତ୍ର କୁମାର ଦୁହିଁଙ୍କ ସହିତ ନିଜ ଆବାସସ୍ଥଳକୁ ରଥରେ ବସି ପ୍ରସ୍ଥାନ କଲେ ।

ମୁନିଙ୍କ ସହିତ ଶ୍ରୀରାମ ଯନ୍ତ୍ରଚାଳିତ ପରି ଚାଲିଗଲେ ସତ, କିନ୍ତୁ ତାଙ୍କ ମନ-ମଧୁପ ରାଜପୁରର ସୀତାଙ୍କ ମୁଖକମଳର ଅନ୍ୱେଷଣରେ ବୁଲି ବୁଲିଲା । ସେ ବହୁ ଚେଷ୍ଟା କରି ମଧ୍ୟ ନିଜର ଚଞ୍ଚଳା ମନକୁ ଜନକପୁରରୁ ଫେରାଇ ଆଣି ପାରିଲେ ନାହିଁ ।

ପରଦିନ ରାଜର୍ଷି ଜନକ ଦ୍ୱାଦଶ ଦିନ ବ୍ୟାପି ଯଜ୍ଞ କରିବାର ଦୀକ୍ଷା ଗ୍ରହଣ କଲେ । ସେ ସମସ୍ତଙ୍କୁ କହିଲେ—"ଦେଖ, ଏହି ଯଜ୍ଞ ସମାବେଶକୁ ଆମ ବନ୍ଧୁବାନ୍ଧବ, ମିତ୍ରରାଜା ତଥା ମୁନିଋଷିମାନେ ଆସିଛନ୍ତି । ମୋର ଇଚ୍ଛା—"ଏହି ଯଜ୍ଞର ଶେଷରେ ସୀତାର ସ୍ୱୟମ୍ବର କରାଇବି । ଯେଉଁ ରାଜାମାନେ ଏଠାକୁ ଆସି ନାହାନ୍ତି, ସେମାନଙ୍କୁ ଦୂତ ପଠାଇ ଡକାଇ ନିଅ । ଯେଉଁ ବୀର ଶିବଧନୁରେ ଗୁଣ ଚଢ଼ାଇ ଦେବ, ମୁଁ ତାହାର ହାତରେ ସୀତାକୁ ସମର୍ପଣ କରି ଦେବି । ଯଦି ଏକାଧିକ ରାଜା ଶିବଧନୁରେ ଗୁଣ ଚଢ଼ାଇ ଦେବେ, ତେବେ ସେମାନଙ୍କ ମଧ୍ୟରେ ସୀତା ଯାହାଙ୍କୁ ଇଚ୍ଛା କରିବ, ତାହାର ଗଳାରେ ବରଣ ମାଳା ପିନ୍ଧାଇ ଦେବ ।"

ଏହା ଶୁଣି ମହାରାଣୀ କହିଲେ—"ମହାରାଜ ! ଆପଣ ସେପରି ପ୍ରତିଜ୍ଞା କରନ୍ତୁ ନାହିଁ । ମୁଁ ସୀତାର ଯୋଗ୍ୟବର ରୂପେ ଅଯୋଧ୍ୟାର ରାଜକୁମାର ଶ୍ରୀରାମଙ୍କୁ

ମନେ ମନେ ସ୍ଥିର କରି ସାରିଛୁ । ଶ୍ରୀରାମଙ୍କ ବ୍ୟତୀତ ଆଉ କାହାରି ହାତରେ ମୁଁ ସୀତାକୁ ଅର୍ପଣ କରି ପାରିବି ନାହିଁ ।"

ରାଜା ମହାରାଣୀଙ୍କୁ ବୁଝାଇ କହିଲେ—"ମହାରାଣୀ, ଶ୍ରୀରାମ ହେଉଛନ୍ତି—'ପୂରାଣ ପୁରୁଷ' । ତାଙ୍କ ବ୍ୟତୀତ ଅନ୍ୟ କେହି ଶିବଙ୍କ ଧନୁରେ ଗୁଣ ଚଢ଼ାଇ ପାରିବେ ନାହିଁ । ଏ ବିଷୟ ମୋତେ ଅନେକ ମୁନିଋଷି କହି ସାରିଛନ୍ତି । ତଥାପି ଲୋକ ଦେଖାଣିଆକୁ ମୋତେ ସୀତା ପାଇଁ ସ୍ୱୟମ୍ବରର ଆୟୋଜନ କରିବାକୁ ପଡୁଛି । ଏହା ନକଲେ ମୋର ମାନମର୍ଯ୍ୟାଦା ରହିବ ନାହିଁ ।"

ମହାରାଣୀ କହିଲେ—"ମହାରାଜ, ଆପଣ ଯାହା କରନ୍ତୁ ପଛକେ, ମୁଁ ଶ୍ରୀରାମଙ୍କ ବ୍ୟତୀତ ଆଉ କାହାରି ସହିତ ସୀତାଙ୍କୁ ବିବାହ ଦେବି ନାହିଁ । ଏହା ନହେଲେ ମୁଁ ମୋ ଝିଅକୁ ନେଇ ଜଳରେ ବୁଡ଼ିମରିବି । ମୋ' ସ୍ନେହର କନ୍ୟା ଶ୍ରୀରାମଙ୍କ ବ୍ୟତୀତ ଆଉ କାହାରି ଆଡ଼କୁ ଆଡ଼ ଆଖିରେ ସୁଦ୍ଧା ଚାହିଁବ ନାହିଁ ।"

କବାଟ ଆଡ଼ୁଆଳରେ ସୀତା ଛିଡ଼ା ହୋଇ ପିତାମାତାଙ୍କ ଉକ୍ତି-ପ୍ରତ୍ୟୁକ୍ତି ଶୁଣୁଥିଲେ । ତାଙ୍କ ହୃଦୟରେ ଶ୍ରୀରାମ ନିବାସ କରି ସାରିଥିଲେ । ସେ ଦେବୀଙ୍କ ଉଦ୍ଦେଶ୍ୟରେ କୋଟି କୋଟି ପ୍ରଣାମ ଜଣାଇ ମାତାଙ୍କୁ ମନେ ମନେ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ପିତା ଜନକଙ୍କ ଯୁକ୍ତିକୁ ଆଦୌ ପସନ୍ଦ କରୁ ନଥିଲେ ।

ମୁନି ବିଶ୍ୱାମିତ୍ରଙ୍କ ସମ୍ମତି ଅନୁସାରେ ସୀତାଙ୍କ ସ୍ୱୟମ୍ବର ଲାଗି ଜନକ ରାଜା ସମସ୍ତ ପ୍ରକାର ଆୟୋଜନ କରିଥିଲେ ।

ଯଜ୍ଞର ପ୍ରାରମ୍ଭିକ କାର୍ଯ୍ୟ ବେଶ୍ ଧୂମ୍‌ଧାମ ମଧ୍ୟରେ ଆରମ୍ଭ ହୋଇଗଲା । ରାଜାରାଣୀ ନିଷ୍ଠାପର ସହିତ ଯଜ୍ଞ କର୍ମରେ ଦୀକ୍ଷିତ ହୋଇଗଲେ । ଯଜ୍ଞର ସ୍ୱାହା ଧ୍ୱନିରେ ଗଗନପବନ ମୁଖରିତ ହେବାକୁ ଲାଗିଲା । ତେଣେ ଶ୍ରୀରାମ ଗୁରୁଙ୍କ ଆଦେଶ ଅନୁଯାରେ ସମସ୍ତ କାର୍ଯ୍ୟରେ ଲାଗିଥିଲେ ହେଁ, ସୀତାଙ୍କ ପ୍ରତି ତାଙ୍କ ହୃଦୟରେ ପ୍ରେମ ଉଦ୍‌ବେଳିତ ହେବାକୁ ଲାଗିଲା । ସେ ଯେତେ ଗୋପନ କଲେ ମଧ୍ୟ ତାଙ୍କ ହୃଦୟର ଭାବ ଆଦୌ ଅଛପା ରହିଲା ନାହିଁ । ଶ୍ରୀରାମ ବାରମ୍ବାର ଲକ୍ଷ୍ମଣଙ୍କୁ ପଚାରିବାକୁ ଲାଗିଲେ—"ଭାଇ, ତୁମେ ଗୁରୁଦେବଙ୍କୁ କୁହ, ଆମେ ଥରେ ଶିବଧନୁକୁ ଦେଖିଯିବା ।"

ଲକ୍ଷ୍ମଣ ମନେ ମନେ ହସି ଦେଇ କହିଲେ—"ଭାଇ, ଗୁରୁ ବିଶ୍ୱାମିତ୍ରଙ୍କ ଆଗରେ ଏପରି ପ୍ରସ୍ତାବ କରିବା ଲାଗି ମୋତେ ସଙ୍କୋଚ ଲାଗୁଛି । ଆପଣ ମୋ'ଠାରୁ ବୟସରେ ବଡ଼; ତେଣୁ ଆପଣ ନିଜେ ଏ ବିଷୟ ଗୁରୁଦେବଙ୍କୁ କହନ୍ତୁ । ବଡ଼ ଭାଇ

ଆଉ ଆଉ ମୁଁ କପର ଗୁରୁଦେବଙ୍କ ଆଗରେ ଶିବଧନୁ ସମ୍ପର୍କରେ ଆଲୋଚନା ଆରମ୍ଭ କରିବ ?"

ତନେ ଶ୍ରୀରାମ ସାହାସ କରି ବିଶ୍ୱାମିତ୍ରଙ୍କୁ କହିଲେ—"ଗୁରୁଦେବ, ଆପଣ ଶିବଧନୁ ସମ୍ପର୍କରେ ଆମକୁ ଅନେକ କଥା କହିଛନ୍ତି । ତେଣୁ ଧନୁକୁ ଦେଖିବା ଲାଗି ଆମ ମନରେ କୌତୁହଳ ଜାତ ହେଉଛି ।"

ଶ୍ରୀରାମଙ୍କ ପ୍ରଶ୍ନ ଶୁଣି ଗୁରୁଦେବ ବିଶ୍ୱାମିତ୍ର ହସି ହସି କହିଲେ —"ବତ୍ସ, ତୁମେ ଅଧୀର ହୁଅ ନାହିଁ, ଯଜ୍ଞର ଶେଷ ଭାଗରେ ତୁମେ କେବଳ ଶିବଧନୁକୁ ଦେଖିବ ନାହିଁ; ସେଥିରେ ଗୁଣ ଚଢ଼ାବାର ସୌଭାଗ୍ୟ ଲାଭ କରିବ । ମୋ, ଶୁଭାଶିଷ ଫଳରେ ତୁମର ମନସ୍କାମନା ନିଶ୍ଚୟ ପୂରଣ ହେବ ।"

ଶ୍ରୀରାମଚନ୍ଦ୍ର ଏହା ଶୁଣି ମନେ ମନେ ଲଜ୍ଜିତ ହେଲେ । ସେହି ଦିନଠାରୁ ଆଉ କେବେହେଲେ ସେ ଗୁରୁଙ୍କ ଆଗରେ ଶିବଧନୁ ପ୍ରସଙ୍ଗରେ ପଦେହେଲେ କିଛି କହିଲେ ନାହିଁ ।

ବାରଦିନ ବ୍ୟାପୀ ଯଜ୍ଞ ମହାସମାରୋହରେ ଶେଷ ହେଲା । ରାଜା ଜନକ ରାଣୀଙ୍କ ସହିତ ତ୍ରୟୋଦଶ ଦିବସରେ ଯଜ୍ଞର 'ଅବଭୃଥ' ସ୍ନାନ କଲେ । ଚତୁର୍ଦ୍ଦଶ ଦିବସରେ ସେ ଦେଶ ବିଦେଶରୁ ଆସିଥିବା ରାଜା ଓ ମହାରାଜାମାନଙ୍କୁ ସ୍ୱୟମ୍ବର ସଭାକୁ ଆସିବା ଲାଗି ଆହ୍ୱାନ କଲେ । ରାଜା ମହାରାଜାମାନେ ଅପୂର୍ବ ବେଶରେ ସଜ୍ଜିତ ହୋଇ ସ୍ୱୟମ୍ବର ସଭାକୁ ଗମନ କଲେ । ସମସ୍ତଙ୍କ ମନରେ ସୀତାଙ୍କୁ ପାଇବାର ଆଶା ଜାଗି ଉଠିଲା । ଏତିକବେଳେ ରାଜା ଜନକଙ୍କ ପକ୍ଷରୁ ରାଜ-ପୁରୋହିତ ସୀତାଙ୍କ ସ୍ୱୟମ୍ବର ପାଇଁ ପୂର୍ବ ନିର୍ଦ୍ଧାରିତ ପ୍ରତିଜ୍ଞା ସମ୍ବନ୍ଧରେ ବ୍ୟାଖ୍ୟା କରିଦେଲେ । ନିର୍ଦ୍ଦିଷ୍ଟ ସମୟରେ ଶିବଧନୁକୁ ଯଥା ସ୍ଥାନରେ ସଜାଇ ରଖାଗଲା । କେତେକ ରାଜା ଶିବଧନୁକୁ ଦେଖି ମନେ ମନେ ଭୀତତ୍ରସ୍ତ ହୋଇ ଉଠିଲେ । ଆଉ କେତେକ ଅଭିମାନୀ ରାଜା, ରାଜକୁମାର ଶିବଧନୁକୁ ତୃଣ ପରି ମନେ କରି ବାହାସ୍ଫୋଟ ମାରିବାକୁ ଲାଗିଲେ ।

ରାଜା ଜନକଙ୍କ ଆଦେଶରେ ରାଜା, ମହାରାଜା ଓ ରାଜକୁମାରମାନେ ନିଜ ନିଜର ବଳ ଅନୁସାରେ ଶିବଧନୁରେ ଗୁଣ ଦେବାଲାଗି ପ୍ରୟାସ କଲେ । କିନ୍ତୁ ସେମାନଙ୍କ ଚେଷ୍ଟାରେ ଶିବଧନୁ ତିଳେ ହେଲେ ଟଳୁ ପାରିଲା ନାହିଁ । ଏହାର କାରଣ ସ୍ୱରୂପ ଏତିକି ଅନୁମାନ କରାଯାଇ ପାରେ ଯେ, ପୃଥିବୀ ନିଜ କନ୍ୟା ସୀତାଙ୍କୁ ଶ୍ରୀରାମଙ୍କ ହାତରେ ଅର୍ପଣ କରିବାକୁ ଚାହୁଁଥିବାରୁ ସେ ଶିବଧନୁକୁ ଜାବୁଡ଼ି ଧରିଲେ । ତେଣୁ ରାଜା ମହାରାଜାମାନେ ବହୁ ଚେଷ୍ଟା କରି ମଧ୍ୟ ତାହାକୁ ଟଳୁ ଉଠାଇ ପାରିଲେ ନାହିଁ । ଆହୁରି ମଧ୍ୟ କୁହାଯାଇପାରେ ଯେ, ମହାନ ଶିବଧନୁକୁ ସାଧାରଣ

ରାଜାଟିଏ ଉଠାଇ ନେଲେ ତା'ର ଗୌରବ ନଷ୍ଟ ହୋଇଯିବ । ତେଣୁ ଧନୁ ମଧ୍ୟ ଟଳୁ ଉଠିଲା ନାହିଁ । ତା ବ୍ୟତୀତ ସର୍ବଶକ୍ତିମାନ୍ ବଳଦାତା ଶ୍ରୀରାମଙ୍କ ଦ୍ୱାରା ଯାହା ନିଷ୍ପନ୍ନ ହେବ ତାହା ସାଧାରଣ ବ୍ୟକ୍ତିଙ୍କ ଦ୍ୱାରା ହୋଇ ପାରନ୍ତା କପରି ? ଆହୁରି ଗୋଟିଏ ବିଷୟ ବିଚାରକୁ ନଆସି ପାରେ । ସୀତା ହେଉଛନ୍ତି—ଜଗଦମ୍ବା, ଜଗଜ୍ଜନନୀ । ସେ କେବେହେଲେ ସାଧାରଣ ଲୋକର ପତ୍ନୀ ହୋଇ ନ ପାରନ୍ତି । ତେଣୁ ତାଙ୍କୁ ପତ୍ନୀ କରିବା ପାଇଁ ଯେଉଁ ମନମତ ରଜା ଚେଷ୍ଟା କରିବ, ତାକୁ ସିଦ୍ଧି ପ୍ରାପ୍ତ ହେବ କିପରି ?

ଆଉ ଗୋଟିଏ କାରଣ ମନରେ ଉଙ୍କି ମାରେ । ମିଥିଲାର ଜନସାଧାରଣ ଶ୍ରୀରାମଙ୍କୁ ଦେଖିବା ଦିନରୁ ତାଙ୍କ ପ୍ରତି ଆକୃଷ୍ଟ ହୋଇ ଉଠିଥିଲେ । ଶ୍ରୀରାମ ସୀତାଙ୍କୁ ବିବାହ କରନ୍ତୁ, ଏହାହିଁ ଥିଲା—ସେମାନଙ୍କର ଇଚ୍ଛା । ତେଣୁ ସେମାନେ ମନ୍ତ୍ର, ଓ ତନ୍ତ୍ର ପ୍ରୟୋଗ କରି ଶିବଧନୁ ଯେପରି ଟଳୁ ନ ଉଠେ ତା'ର ଉପାୟମାନ ଖଞ୍ଜି ଥିଲେ; ସେହି କାରଣରୁ ଶିବଧନୁ ଟଳୁ ଉଠି ନଥିଲା ।

ସଭାରେ ଉପସ୍ଥିତ ରାଜାମାନେ ଗୋଟି ଗୋଟି ହୋଇ ପରାସ୍ତ ହୋଇ ଯାଆନ୍ତେ, ଗୁରୁଦେବ ବିଶ୍ୱାମିତ୍ରଙ୍କ ଆଜ୍ଞା ଓ ନିର୍ଦ୍ଦେଶ ପାଇ ଶ୍ରୀରାମ ଧନୁରେ ଗୁଣ ଦେବା ଲାଗି ଆଗେଇଲେ । ଗୁରୁଦେବ ଠିକ୍ ସେତିକି ବେଳେ ଚେତାବନୀ ଦେଇ କହିଲେ—"ବତ୍ସ, କମର କଷି ପ୍ରସ୍ତୁତ ହୋଇକରି ଯାଅ । ସେ କିଛି ସାମାନ୍ୟ ଧନୁ ନୁହେଁ । ତୁମେ ଦେଖିଛ, କିଛିକ୍ଷଣ ପୂର୍ବରୁ ପାଞ୍ଚଶହ ବ୍ୟକ୍ତି ମହା କଷ୍ଟରେ ଧନୁଟିକୁ ଆଣି ଏଠାରେ ରଖାଇଥିଲେ । ତେଣୁ ଟିକିଏ ସାବଧାନ ହୋଇ ଧନୁରେ ଗୁଣ ଦେବାକୁ ଯାଅ ।"

ଗୁରୁଙ୍କ କଠୋର ନିର୍ଦ୍ଦେଶରେ ଶ୍ରୀରାମ ସିଂହ ଶାବକ ଗଜ ରାଜଙ୍କୁ ଆକ୍ରମଣ କରିବାକୁ ଯିବା ଭଳି ସୁସଜ୍ଜିତ ହୋଇ ଆଗେଇ ଗଲେ । ଦ୍ୱିତଳ ଓ ତ୍ରିତଳ ପ୍ରାସାଦର ଗବାକ୍ଷ ମାର୍ଗରେ ବସିଥିବା ସ୍ତ୍ରୀଲୋକମାନେ ହାଁ ହାଁ କାର କରି ଉଠିଲେ । ସେମାନେ କୁହାକୁହି ହେଲେ—"କି ଆଶ୍ଚର୍ଯ୍ୟ କଥା ! ଶିବଧନୁରେ ଗୁଣ ଦେବା ଲାଗି ଏ ସୁକୁମାର ବାଳକ କିପରି ସମର୍ଥ ହେବ ?"

ନାରୀମାନଙ୍କ ମେଳରେ ନିଜ ମାତାଙ୍କ ପାଖରେ ସୀତା ବସିଥିଲେ । ଶ୍ରୀରାମ ଶିବଧନୁ ନିକଟକୁ ଯିବାବେଳେ, ସେ ଅପଲକ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଥିଲେ । ଶ୍ରୀରାମ ଶିବଧନୁକୁ ସ୍ପର୍ଶ କରିବା ପୂର୍ବରୁ ଥରେ ପ୍ରାସାଦ ଉପରେ ବସିଥିବା ନାରୀମାନଙ୍କ ଆଡ଼କୁ ଚାହିଁ ଦେଲେ । ତାଙ୍କ ଦୃଷ୍ଟି ପଡ଼ିଗଲା—ସୀତାଙ୍କ ମଉଳା ମୁହଁ ଉପରେ । ସେ ଭୟଭୀତା ହୋଇ ଚକିତା ହରିଣୀ ପରି ଶ୍ରୀରାମଙ୍କ ଆଡ଼କୁ ଚାହିଁ ରହିଥିଲେ । ତାଙ୍କ ଦୃଷ୍ଟିରୁ ମନେ ହେଉଥିଲା—ଶ୍ରୀରାମ ଧନୁରେ ଗୁଣ ଦେବା ଲାଗି

ଅସମର୍ଥ ହେଲେ, ସେ ସେହିଠାରୁ ଡେ଼ଇଁ ପଡ଼ି ଆତ୍ମହତ୍ୟା କରିବେ । ଭକ୍ତବତ୍ସଳ ଶ୍ରୀରାମ ପ୍ରଣତ ଜନର ମନୋଭାବ ବେଶ୍ ବୁଝି ପାରିଲେ । ସୀତାଙ୍କ ପ୍ରତି ତାଙ୍କ ମନରେ ଦୟା ଜାତ ହେଲା । ସେ ଶୀଘ୍ର ସୀତାଙ୍କ ମଉଳା ମୁହଁରେ ହସ ଉକୁଟାଇବା ପାଇଁ ସହଜ ଭାବରେ ଧନୁ ନିକଟରେ ପହଞ୍ଚି ଅନାୟାସରେ ତାକୁ ଉଠାଇ ଆଣି, ସେଥିରେ ଗୁଣ ଦେବାକୁ ଚେଷ୍ଟା କଲେ । ଠିକ୍ ସେତିକି ବେଳେ ଧନୁଟି ମଡ଼ମଡ଼ ହୋଇ ଦୁଇଖଣ୍ଡ ହୋଇଗଲା । ଏହି ସମୟରେ ଶହ ଶହ ବାଦ୍ୟ ଏକ ସଙ୍ଗରେ ବାଜି ଉଠିଲା । ଦେବଗଣ ଆକାଶରେ ଥାଇ ଦୁନ୍ଦୁଭି ବଜାଇବା ସଙ୍ଗେ ସଙ୍ଗେ ଶ୍ରୀରାମଙ୍କ ଶିରରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ଅପ୍ସରାମାନେ ନୃତ୍ୟ କରିବାକୁ ଲାଗିଲେ ଏବଂ ଗନ୍ଧର୍ବମାନେ ସୁସ୍ୱରରେ ଜୟଗାନ କରି ଆନନ୍ଦରେ ନିମଗ୍ନ ହୋଇଗଲେ । ମୁନିମାନେ ଆଶୀର୍ବଚନରେ ସଭାସ୍ଥଳକୁ କମ୍ପାଇ ଦେଲେ । କିନ୍ତୁ ନିନ୍ଦୁକ ରାଜାମାନେ ମନେ ମନେ ଜଳି ଉଠିଲେ । ଶ୍ରୀରାମ ଭଗ୍ନ ଧନୁଟିକୁ ତଳେ ଫିଙ୍ଗି ଦେଇ ସଗର୍ବରେ ସୀତାଙ୍କ ଆଡ଼କୁ ଚାହିଁ ଗୁରୁଦେବଙ୍କ ନିକଟକୁ ଚାଲିଆସି ଆସନ ଗ୍ରହଣ କଲେ ।

ଏହି ସମୟରେ ମୁନିମାନଙ୍କ ପକ୍ଷରୁ ଶୌନକ ପଚାରିଲେ—"ହେ ସୂତ ମହର୍ଷି, ଶିବଧନୁରେ ଗୁଣ ଦେବା ଲାଗି ଜନକ ନିୟମ କରିଥିଲେ, କିନ୍ତୁ ଶ୍ରୀରାମ ଧନୁଟିକୁ ମର୍ଦ୍ଦି ଦୁଇଖଣ୍ଡ କରିଦେଲେ କାହିଁକି ?"

ଏହା ଶୁଣି ସୂତ ମହର୍ଷି ହସି ହସି ଉତ୍ତର ଦେଲେ—"ହେ ଶୌନକ, ଶ୍ରୀରାମଙ୍କୁ ଏ ପ୍ରଶ୍ନ ପଚାରିଥିଲେ ସେ ହିଁ ଏହାର ସମୁଚିତ ଉତ୍ତର ଦେଇ ଥାଆନ୍ତେ; ମୁଁ ତା'ର ଉତ୍ତର ସଠିକ ଭାବରେ ଦେଇ ପାରିବି ନାହିଁ । ତଥାପି ମୋର ମନେ ହେଉଛି, ଶ୍ରୀରାମଚନ୍ଦ୍ର ଭାବିଥିବେ—"ସୀତାଙ୍କ ସହିତ ତାଙ୍କ ମିଳନର ପ୍ରତିବନ୍ଧକ ହେଉଛି—ଶିବଧନୁ । ତେଣୁ ସେ କ୍ରୋଧରେ ଶିବଧନୁକୁ ଭାଙ୍ଗିଦେଲେ ।"

ଅନ୍ୟ ଗୋଟିଏ କାରଣ ହୋଇପାରେ—"ସୀତା ମନେ ମନେ ଭାବିଥିବେ ଶ୍ରୀରାମ ସତେ କଣ ଶିବଧନୁ ଉଠାଇ ପାରିବେ ! ତେଣୁ ଅନ୍ତର୍ଯାମୀ ନାଥ ଶ୍ରୀରାମ କେବଳ ଧନୁଟିକୁ ଉଠାଇଲେ ନାହିଁ, ତାହାକୁ ଦୁଇଖଣ୍ଡ କରି ଭାଙ୍ଗି ଫିଙ୍ଗିଦେଲେ ।"

ତୃତୀୟ କାରଣ ହୋଇପାରେ—"ପିଲାଦିନେ ସୀତା ଶିବଧନୁଟିକୁ ବାମ ହସ୍ତରେ ଉଠାଇ ଦେଇଥିଲେ । କେବଳ ଶ୍ରୀରାମ ଧନୁଟିକୁ ଉଠାଇ ନେଇ ଗୁଣ ଦେଲେ କାଳେ ସୀତା ଭାବିବେ—ଶ୍ରୀରାମ କି ବଡ଼ କାମ ଗୋଟେ କରିଦେଲେ ଯେ, ସେଇଥି ପାଇଁ ରଘୁନାଥ ଅହଙ୍କାର ସହିତ ଶିବଧନୁଟିକୁ ଭାଙ୍ଗି ବାହାରକୁ ଫିଙ୍ଗିଦେଲେ ।"

ଚତୁର୍ଥ କାରଣ ହୋଇପାରେ—"ଶ୍ରୀରାମଚନ୍ଦ୍ର ଭାବିଥିବେ ଯେ, ସୀତାଙ୍କୁ ପାଇବା ପାଇଁ ବହୁ ଦୁଷ୍ଟ ରାଜା ତାଙ୍କ ପ୍ରତି କୁଦୃଷ୍ଟି ପକାଇଥିବେ । ତେଣୁ ସେ

ଖଣ୍ଡିଏ କୁଟାକୁ ଦୁଇଖଣ୍ଡ କରି ଦୃଷ୍ଟିଦୋଷ ନିବାରଣ କରିବା ପାଇଁ ଭାବିଥିଲେ । କିନ୍ତୁ ମଣିମାଣିକ୍ୟରେ ନିର୍ମିତ ଅଗଣାରେ ସେ କୁଟା ପାଇବେ କେଉଁଠୁ ? ତେଣୁ ସେ ବାଧ୍ୟ ହୋଇ ଧନୁଟିକୁ ଅବଜ୍ଞାରେ କୁଟା ପରି ମନେ କରି ତାକୁ ଦୁଇଖଣ୍ଡ କରି ଫିଙ୍ଗି ଦେଲେ ।"

"ପଞ୍ଚମ କାରଣ ଆଉ ଗୋଟିଏ ହୋଇପାରେ ବୋଲି ମୋର ମନେ ହେଉଛି"—ସୂତ ମହର୍ଷି କହିଲେ—"ସୀତା ମନେ ମନେ ଶ୍ରୀରାମଚନ୍ଦ୍ରଙ୍କୁ ପାଇବା ଲାଗି ବ୍ୟାକୁଳ ହେଉଥିଲେ । ଶ୍ରୀରାମ ମଧ୍ୟ ଠିକ୍ ସେହିପରି ସୀତାଙ୍କୁ ପାଇବା ପାଇଁ ବ୍ୟାକୁଳ ହେଉଥିଲେ । ରଘୁନାଥ ତାହା ଜଣାଇ ଦେବାଲାଗି ଧନୁଟିକୁ ସମାନ ଭାବରେ ଦୁଇଖଣ୍ଡ କରିଦେଇ ନିଜର ମନୋଭାବ ପରୋକ୍ଷରେ ଜଣାଇ ଦେଲେ ।

ସୂତ ମହର୍ଷି ଧନୁଭଙ୍ଗ ପ୍ରକରଣଟିକୁ ଶେଷ କରିବା ଉଦ୍ଦେଶ୍ୟରେ କହିଲେ—"ହେ ମୁନିଗଣ, ଏହାପରେ କୁଳଗୁରୁ ଓ ରାଜର୍ଷି ଜନକଙ୍କ ନିର୍ଦ୍ଦେଶରେ ସୀତା ଉନ୍ମୁକ୍ତ ରାଜସଭାରେ ସଲଜ୍ଜ ବଦନରେ ଶ୍ରୀରାମଙ୍କ ଗଳାରେ ଜୟମାଲ୍ୟ ପିନ୍ଧାଇ ଦେଲେ । ଏହି ସମୟରେ ବାଦ୍ୟକାରୀ ଗଣଙ୍କ ବଜ୍ରନିର୍ଘୋଷତୁଲ୍ୟ ନାନାବିଧ ବାଦ୍ୟରୋଳର ଗୁରୁଗମ୍ଭୀର ସ୍ୱର ଦୂରରୁ ଭାସି ଆସୁଥିଲା—"ସୀତାପତି ଶ୍ରୀରାମଚନ୍ଦ୍ରଙ୍କର ଜୟ... !"

## ଛପ୍ପୟ

"ମଗ ମହଁ ଗୌତମ ନାରୀ ତାରି ମିଥିଲପୁର ଆୟେ ।
ରାମ ସହିତ ମୁନି ପୂଜି ଜନକ ନିଜ ମହଲନି ଲାୟେ ॥
ରାମ ନିହାରୀ ସୀୟ ହିୟେମହଁ ତୁରତ ଛପାଇ ।
ନିରଖେ ସୀତା ରାମ ମନହୁଁ ଖୋଇ ନିଧି ପାଇ ॥
ଭୂପ ସ୍ୱୟମ୍ବର ସୀୟ ହିତ, ରଚ୍ୟୋ ଶମ୍ଭୁ ଧନୁ ଧରି ଦୟୋ ।
ଖିଂଚ ଧନୁଷ ସୀୟ ବରି ବନେଂ, ଶତାନନ୍ଦ ନୃପ ପ୍ରନ କହ୍ୟୋ ॥



# ସୀତାରାମ ବିବାହ

"ନିଜାନୁରୂପ ଗୁଣଶୀଲ ବୟୋଽଙ୍ଗରୂପାମ୍ ।
ସୀତାଭିଧାଂ ଶ୍ରିୟ ମୁରସ୍ୟଭିଲବ୍ଧମାନାମ୍ ।"
(ଶ୍ରୀଭାଗ ୯, ସ୍କ ୧୦, ଅ ୭ ଶ୍ଳୋ)

## ଛପ୍ପୟ

"ସବଇ ଆକେ ଭୂପ ଧନୁଷ ନହିଁ ଉଠୈ ଉଠାୟେ ।
ଗୁରୁ ଆୟସୁ ସିରଧାର ରାମ ସମ୍ମୁଖ ଧନୁ ଆୟେ ॥
ସୀୟ ଦୀଠିତେ ଦୀଠି ମିଲୀ ଦେତନୋ ମୁଖ ମୋରେଯା ।
ସୀୟ ମୁଖ ଦୀଠି ନ ଲଗୈ ରାମ ତେ ଧନୁ ତୃନ ତୋରେଯା ॥
ଧନୁଷ ଭଙ୍ଗ ଶିବକୋ ଭୟୋ, ଅଙ୍ଗ ଅଙ୍ଗ ସିୟକେ ଖିଲେ ।
ଚକଓ୍ୱା ଚକଓ୍ୱୀ ସରସ ସୀୟ, ରାମ ନସେଂ ଧନୁ ତମ ମିଲେ ।"

ଶ୍ରୀ ଶୁକଦେବ କହିଲେ – "ହେ ରାଜନ୍, ଯେଉଁ ସୀତା ରୂପ, ଗୁଣ, ଶୀଳ, ସ୍ୱଭାବ ତଥା ଆଙ୍ଗିକ ସୌଷ୍ଠବରେ ଶ୍ରୀରାମଙ୍କ ଅନୁରୂପ ଥିଲେ, ତାହାଙ୍କୁ ରଘୁପୁଙ୍ଗବ ଆପଣାର ପରାକ୍ରମରେ ଜୟ କରିନେଲେ ।"

ସ୍ନେହ ଓ ପ୍ରେମରେ ଧୈର୍ଯ୍ୟର ଅବକାଶ ନାହିଁ । ପ୍ରେମୀ କେବେହେଲେ ନିଶ୍ଚିନ୍ତ ହୋଇ ପାରେ ନାହିଁ । ପ୍ରତ୍ୟେକ ମୁହୂର୍ତ୍ତରେ ତାର ହୃଦୟ ଶଙ୍କିତ ହୋଇ ଉଠୁଥାଏ । ପ୍ରେମିକ ସବୁବେଳେ ଆଶାନ୍ୱିତ କିମ୍ବା ନିରାଶ ହୋଇ ପଡ଼େ ନାହିଁ । ଆଶା ଓ ନିରାଶାର ଦୋଳରେ ସେ ସର୍ବଦା ଆନ୍ଦୋଳିତ ହେଉଥାଏ । ପ୍ରେମୀ ତାର ପ୍ରେମିନକୁ ପାଇ ପାରିବା ମାତ୍ରେ ପ୍ରତୀକ୍ଷା ମିଳନରେ ରୂପାନ୍ତରିତ ହୋଇଯାଏ । ତାପରେ ସେ ଦୁହେଁ ବାହ୍ୟ ଚେଷ୍ଟା ଛାଡ଼ି ପରେ ପ୍ରେମର ଶୀତଳ ପବନରେ ନିଜର ପ୍ରେମନୀଡ଼ ମଧ୍ୟରେ ରହି ଦୋହଲିବାରେ ଲାଗନ୍ତି ।

ସୂତ ମହର୍ଷି ଆଲୋଚନା କରି କହିଲେ—"ହେ ମୁନିଗଣ, ସପରିବାର ଜନକ ଅତ୍ୟନ୍ତ ଖୁସି ହୋଇଥିଲେ । ସୀତା ମଧ୍ୟ ଅତ୍ୟନ୍ତ ଆନନ୍ଦିତା ହୋଇଥିଲେ । ସଭା ମଧ୍ୟରେ ବିଶ୍ୱାମିତ୍ରଙ୍କୁ ପ୍ରଣାମ ଜଣାଇ କହିଲେ—"ମହର୍ଷି, ଧନୁଭଙ୍ଗ ହେବା ପରେ ସୀତା ନ୍ୟାୟତଃ ଶ୍ରୀରାମଙ୍କ ପତ୍ନୀ ହୋଇ ସାରିଛି । କିନ୍ତୁ ଦେଶାଚାର ଅନୁସାରେ ବିବାହ କରିବାକୁ ହେଲେ ମହାରାଜ ଦଶରଥଙ୍କ ନିକଟକୁ ଦୂତ ପଠାଇବାକୁ ହେବ । ଆପଣ ଆଜ୍ଞା ଦେଲେ ମୁଁ ଦୂତ ପଠାଇବି ।"

ମୁନି ବିଶ୍ୱାମିତ୍ରଙ୍କ ଆଦେଶରେ ରାଜର୍ଷି ଜନକ ବେଗଗାମୀ ଯାନ ଦ୍ୱାରା ଦଶରଥଙ୍କ ନିକଟକୁ ଦୂତ ପଠାଇଲେ । ଦୂତ ଯାଇ ରାଜା ଦଶରଥଙ୍କୁ ପ୍ରଣାମ ଜଣାଇ ଶ୍ରୀରାମଙ୍କ ଶିବଧନୁ ଭଙ୍ଗ ସମ୍ବାଦ ଶୁଣାଇ ଜନକଙ୍କ ଅନୁରୋଧପୂର୍ଣ୍ଣ ପତ୍ର ଦେଲେ । ପୁତ୍ରର ବୀରତ୍ୱ ତଥା ପ୍ରଶଂସା ଶୁଣି ରାଜା ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ତାଙ୍କ ଆଖିରୁ ଆନନ୍ଦପୂର୍ଣ୍ଣ ଲୋତକ ଝରି ପଡ଼ିଲା । ସେ ପ୍ରେମରେ ଅଧୀର ହୋଇ କହିଲେ –"ବଡ଼ ବଡ଼ ଶୂରବୀରମାନେ ଉଠାଇ ପାରୁ ନଥିଲେ, ତାକୁ ବାଳକ ଶ୍ରୀରାମ ତଳୁ ଉଠାଇ ଭଙ୍ଗିଦେଲେ କିପରି ? ସେ ବିଶ୍ୱବିଜୟୀ ହେବା ସଙ୍ଗେ ସଙ୍ଗେ ତ୍ରୈଲୋକ୍ୟ ସୁନ୍ଦରୀ ସୀତାଙ୍କୁ ନିଜ ପରାକ୍ରମ ବଳରେ ଜିତି ପାରିଲେ । ମୋର ଦୃଢ଼ ଧାରଣା, ଏହା ନିଶ୍ଚିତ ଭାବରେ ଭଗବାନ୍ କୌଶିକଙ୍କ ଅନୁଗ୍ରହର ଫଳ ।"

ଏହି ସମୟରେ ମହର୍ଷି ବଶିଷ୍ଠ କହିଲେ—"ମହାରାଜ, ଆପଣ ତ ଦୁଇ ପୁତ୍ରଙ୍କୁ ଦେଉ ନଥିଲେ, ଏବେ ଭଲ ଫଳ ହେଲା କି ନାହିଁ ?"

ଦଶରଥ ହାତଯୋଡ଼ି କହିଲେ—"ଗୁରୁଦେବ, ଗୁରୁଜନମାନଙ୍କ ଆଜ୍ଞା ସଦାସର୍ବଦା କଲ୍ୟାଣ କର ହୋଇଥାଏ । ମୁଁ ମୋହବଶତଃ ସେପରି କରିଥିଲି ।"

ଶ୍ରୀ ସୂତ ମହର୍ଷି କହିଲେ—"ହେ ମୁନିଗଣ, ଧୀରେ ଧୀରେ ଏ ଖବର ସମଗ୍ର ଅଯୋଧ୍ୟାରେ ବ୍ୟାପିଗଲା । ରାଜପୁରରୁ ମଙ୍ଗଳ ବାଦ୍ୟ ବାଜି ଉଠିଲା । ଭରତ ଓ ଶତ୍ରୁଘ୍ନ ସଙ୍ଗେ ସଙ୍ଗେ ଧାଇଁଯାଇ ମାତାମାନଙ୍କ ଆଗରେ ଏ ସମ୍ବାଦ ଜଣାଇ ଦେଲେ । ମାତାମାନେ ଏହା ଶୁଣିବା ମାତ୍ରେ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ସେମାନେ ବାହାରରୁ ଦାସୀ ପଠାଇ ଶ୍ରୀରାମ ଲକ୍ଷ୍ମଣଙ୍କର ପ୍ରତ୍ୟେକ ଖବର ବୁଝି ବସିଲେ । ପ୍ରକୃତରେ ପୁତ୍ର ଜନ୍ମ ଅପେକ୍ଷା ମାଆମାନେ ପୁଅର ବିବାହରେ ଅଧିକ ଆନନ୍ଦିତା ହୋଇ ଥାଆନ୍ତି । କାରଣ, ସେମାନେ ନବବଧୂର ମୁଖ ଦର୍ଶନ କରି ମାତୃଜୀବନ ସାର୍ଥକ କରନ୍ତି ।"

ହେ ମୁନିଗଣ, ସମଗ୍ର ଅଯୋଧ୍ୟା ନଗରୀ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଠିଲା । ପରଦିନ ବରଯାତ୍ରୀ ଦଳରେ ଯିବାଲାଗି ସମସ୍ତେ ପ୍ରସ୍ତୁତ ହୋଇଗଲେ ।

ପ୍ରକୃତରେ ପରିଜନ ବରଯାତ୍ରୀ ଦଳ ବାହାରି ପଡ଼ିଲେ । ଆଗେ ଆଗେ ହାତୀ, ତାଙ୍କ ପଛେ ପଛେ ଓଟ ଏବଂ ତା' ପରେ ଘୋଡ଼ାମାନେ ରାଜସଜ୍ଜାରେ ଆଗେଇ ଚାଲିଲେ । ରଥ ଓ ଶଗଡ଼ ଗାଡ଼ିମାନ ଲମ୍ବ ହୋଇ ଆଗେଇ ଚାଲିଲା । ବରଯାତ୍ରୀଦଳ ପଞ୍ଚମ ଦିନରେ ଯାଇ ମିଥିଳାରେ ପହଞ୍ଚିଗଲେ ।

ରାଜର୍ଷି ଜନକ ମହାରାଜ ଦଶରଥଙ୍କୁ ସଙ୍ଖୋଳିବା ପାଇଁ ପାତ୍ର, ମନ୍ତ୍ରୀ ଓ ପୁରୋହିତଙ୍କ ସହିତ ଆଗେଇ ଆସିଲେ । ସେ ଅତ୍ୟନ୍ତ ଆନନ୍ଦର ସହିତ ଦଶରଥଙ୍କୁ ଆଲିଙ୍ଗନ କରି ପାଛୋଟି ନେଲେ । ବଶିଷ୍ଠ ଆଦି ମୁନିମାନେ ରାଜା ଦଶରଥଙ୍କୁ ଦେଖି ଚାଲିବାକୁ ଲାଗିଲେ । ସେ ଶୋଭା ଅବର୍ଣ୍ଣନୀୟରେ ମନେ ହେଉଥିଲା, ଯେତେ ଯେପରି ଦେବର୍ଷିମାନଙ୍କ ଗହଣରେ ଇନ୍ଦ୍ର ଅମରାବତୀରେ ଚାଲିଛନ୍ତି । ରାଜର୍ଷି ଜନକ ସେମାନଙ୍କୁ ସ୍ୱତନ୍ତ୍ର ନବର ମଧ୍ୟରେ ରଖାଇଲେ । ଠିକ୍ ପରେ ପରେ ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ସେହି ନବରରେ ଉପସ୍ଥିତ ହେଲେ । ରାଜା ଦଶରଥ ବିଶ୍ୱାମିତ୍ରଙ୍କୁ ଦେଖିବା କ୍ଷଣି ଧାଇଁଯାଇ ତାଙ୍କ ଚରଣରେ ଲୋଟି ପଡ଼ିଲେ । ମହର୍ଷି ଦଶରଥଙ୍କୁ ତଳୁ ଉଠାଇ ନେଇ, ତାଙ୍କୁ ଆଲିଙ୍ଗନ କରିବା ସଙ୍ଗେ ସଙ୍ଗେ ଆଶୀର୍ବାଦ ଦେଇଥିଲେ । ଶ୍ରୀରାମ ଲକ୍ଷ୍ମଣ ପ୍ରଥମେ ଗୁରୁ ବଶିଷ୍ଠଙ୍କୁ ପ୍ରଣାମ କରି ପରେ ପିତାଙ୍କ ଚରଣ ବନ୍ଦନା କଲେ । ଭରତ, ଶତ୍ରୁଘ୍ନ ଶ୍ରୀରାମ ଲକ୍ଷ୍ମଣଙ୍କ ସହିତ ପ୍ରେମପୁଲକ ମନରେ ମିଳିତ ହେଲେ । ଦଶରଥଙ୍କ ଚକ୍ଷୁ ଆନନ୍ଦାଶ୍ରୁରେ ଛଳ ଛଳ ହୋଇ ଉଠିଲା । ସେ କିଛି କହି ପାରିଲେ ନାହିଁ । କେବଳ ନିଜର ବୀରପୁତ୍ର ଦୁହିଁଙ୍କର ଶିରରେ ହାତ ରଖି ନିଜ ଜୀବନକୁ ଧନ୍ୟ ମନେକଲେ ।

ଏପରି ଏକ ଗୁରୁଗମ୍ଭୀର ପରିବେଶକୁ ଆନନ୍ଦମୁଖର କରିବା ପାଇଁ ଶ୍ରୀରାମଙ୍କ ବୀରତ୍ୱପୂର୍ଣ୍ଣ କାହାଣୀ ଗୋଟି ଗୋଟି କରି ବଖାଣି ଗଲେ । ବୀରପୁଙ୍ଗବ ଶ୍ରୀରାମ କିପରି ତାଡ଼କାସୁରୀର ପ୍ରାଣ ବଧ କଲେ, କିପରି ମାରୀଚକୁ ଏକାବାଣକରେ ସମୁଦ୍ର ପାରକୁ ଉଡ଼ାଇ ଦେଲେ ଏବଂ କିପରି ସୁବାହୁକୁ ପ୍ରାଣରେ ମାରି ବୀରତ୍ୱ ପ୍ରଦର୍ଶନ କଲେ, ସେ ବିଷୟରେ ବିଶ୍ୱାମିତ୍ର ଦଶରଥଙ୍କୁ ଶୁଣାଇ ଦେଲେ । ତା'ପରେ ଅହଲ୍ୟା ଉଦ୍ଧାରଣ, ଧନୁଭଙ୍ଗ ବୃତ୍ତାନ୍ତ ବର୍ଣ୍ଣନା କରି ବିଶ୍ୱାମିତ୍ର ରାଜା ଦଶରଥଙ୍କୁ ବିସ୍ମିତ କରାଇଲେ ।

ଏହାପରେ ରାଜା ଜନକ ବିବାହର ସମସ୍ତ ଆୟୋଜନ କରିଛି ବିଶ୍ୱାମିତ୍ରଙ୍କୁ କହିଲେ—''ଭଗବନ୍, ମୋର ବଡ଼ ଝିଅ ସୀତା ଓ ସାନଝିଅ ଉର୍ମିଳା । କିନ୍ତୁ ମୋ ସାନଭାଇ କୁଶଧ୍ୱଜଙ୍କର ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିନାମ୍ନୀ ଦୁଇ କନ୍ୟା ଅଛନ୍ତି । ମହାରାଜ ଦଶରଥଙ୍କର ଚାରିପୁତ୍ରଙ୍କ ସହିତ ଆମ ଦୁଇ ଭାଇଙ୍କ ଚାରି କନ୍ୟାର ବିବାହ କରାଇ-ଦେଲେ କିପରି ହୁଅନ୍ତା ? ଆପଣ ଇଚ୍ଛା କଲେ, ଏ ବିବାହ ନିଶ୍ଚିତ ହୋଇ ପାରିବ ।''

ବିଶ୍ୱାମିତ୍ର କହିଲେ —"ଇକ୍ଷ୍ୱାକୁ ଓ ନିମି ବଂଶଠାରୁ ଅଧିକ ପବିତ୍ର ବଂଶ ଆଉ କେଉଁଠୁ ମିଳିବ ? ଏହା ଅତ୍ୟନ୍ତ ଆନନ୍ଦର ବିଷୟ ।" ତା'ପରେ ସେ ମୁନି ବଶିଷ୍ଠ ତଥା ରାଜା ଦଶରଥଙ୍କ ସହିତ ପରାମର୍ଶ କରି ଜନକଙ୍କୁ ସମ୍ମତି ପ୍ରଦାନ କଲେ ।

ଏହି ସମୟରେ ଶ୍ରୀରାମ ହସ ହସ ବଦନରେ ଅନ୍ୟ ତିନି ଭାଇଙ୍କ ଆଡ଼କୁ ଚାହିଁଲେ । ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ଶ୍ରୀରାମଙ୍କ ଉଦ୍ଦେଶ୍ୟ ବୁଝି ପାରି ଲଜ୍ଜାରେ ମୁହଁ ତଳକୁ ପୋତି ଦେଲେ ।

ଏହାପରେ ରାଜା ଜନକ ମହା ଆଡ଼ମ୍ବରର ସହିତ ବିବାହ କାର୍ଯ୍ୟ ଆରମ୍ଭ କରାଇଲେ ଏବଂ ରାଜା ଦଶରଥ ନିଜର କୁଳପରମ୍ପରା ଅନୁସାରେ ପିଣ୍ଡଦାନ, ତଥା ଅଗ୍ନିହୋତ୍ର ଆଦି ସମସ୍ତ ବିଧାନ କରାଇଲେ । ଶୁଭଲଗ୍ନ ତଥା ଶୁଭ ମୁହୂର୍ତ୍ତରେ ଚାରି କୁମାରଙ୍କର ବିବାହ ସମ୍ପନ୍ନ ହେବାକୁ ଲାଗିଲା । ରାଜକୁମାରୀମାନେ ଓଢ଼ଣା ତଳେ ମୁହଁ ଲୁଚାଇ କେବଳ ପୁରୋହିତଙ୍କ ନିର୍ଦ୍ଦେଶରେ ପୁଷ୍ପ, ଦୂବ, ଅକ୍ଷତମାନ ଅର୍ପଣ କରିବାକୁ ଲାଗିଲେ ।

ରାଜା ଜନକ ସୀତାଙ୍କ ହସ୍ତ ଶ୍ରୀରାମଙ୍କ ହସ୍ତରେ ଅର୍ପଣ କରି କହିଲେ— "ରାଘବ, ମୁଁ ମୋର ସ୍ନେହମୟୀ କନ୍ୟାଟିକୁ ତୁମପରି ବୀରପୁଙ୍ଗବଙ୍କ ହସ୍ତରେ ଅର୍ପଣ କରୁଛି । ସେ ଛାୟା ପରି ତୁମର ଅନୁଗାମିନୀ ହେବ । ତୁମେ ଆନନ୍ଦ ମନରେ ତାକୁ ଗ୍ରହଣ କର ।"

ଏହିପରି ଭାବରେ ରାଜା ଜନକ ଊର୍ମିଳା, ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କୁ ଯଥାକ୍ରମେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କ ହସ୍ତରେ ଅର୍ପଣ କରି ଗ୍ରହଣ କରିବା ଲାଗି ବିନୀତ ଭାବରେ ଅନୁରୋଧ କଲେ । ଏହାପରେ ରାଜର୍ଷି ଜନକ କନ୍ୟା ଦାନର ଦକ୍ଷିଣା ସ୍ୱରୂପ ପୁରୋହିତଙ୍କ ହସ୍ତରେ ଅଜସ୍ର ସୁବର୍ଣ୍ଣ ଦାନ କରିବା ସଙ୍ଗେ ସଙ୍ଗେ ଜ୍ୱାଇଁ-ମାନଙ୍କୁ ପ୍ରଚୁର ଯୌତୁକ ଦେବାଲାଗି ପ୍ରତିଶ୍ରୁତି ଦେଲେ । ଏହାପରେ ଲାଜା ହୋମ ଓ ଗନ୍ଧର୍ବ ହୋମାଦି ଶେଷ କରି ବର କନ୍ୟା ବେଦୀରୁ ବିଦାୟ ନେଲେ ।

ଏହି ସମୟରେ ବିଶ୍ୱାମିତ୍ର ଶ୍ରୀରାମ ଲକ୍ଷ୍ମଣାଦି ଭାଇମାନଙ୍କୁ ଆଶୀର୍ବାଦ କରି କହିଲେ—"ରାମଚନ୍ଦ୍ର, ତୁମର ମଙ୍ଗଳ ହେଉ ! ମୁଁ ଚାଲିଲି !!"

ଶ୍ରୀରାମଚନ୍ଦ୍ର ପ୍ରଥମେ ମୁନିଙ୍କ କଥା ବୁଝି ପାରିଲେ ନାହିଁ । ପରେ ସେ ବିଶ୍ୱାମିତ୍ରଙ୍କ ଉଦ୍ଦେଶ୍ୟ ବୁଝି ପାରି କହିଲେ—"ଗୁରୁଦେବ, ଆପଣ ବର୍ତ୍ତମାନ ଯିବେ କୁଆଡ଼େ ?"

ବିଶ୍ୱାମିତ୍ର କହିଲେ—"ବତ୍ସ ! ମୁଁ ଉତ୍ତର ପଥରେ ଗମନ କରିବ ।"

ବାଷ୍ପରୁଦ୍ଧ କଣ୍ଠରେ ଶ୍ରୀରାମ କହିଲେ—"ମହାରାଜ, ମୁଁ ଆପଣଙ୍କ ସହିତ ଯିବି । ଆପଣ ମୋତେ ସାଥିରେ ନେଇ ଯାଆନ୍ତୁ !"

ବିଶ୍ୱାମିତ୍ର ହସି ହସି କହିଲେ—"ବତ୍ସ, ତୁମେ ଏକୁଟିଆ ଆଉ କୁଆଡ଼େ ଯାଇ ପାରିବ ନାହିଁ । ଯୁଗଳ ମୂର୍ତ୍ତି ବ୍ୟତିରେକେ ତୁମର ଅସ୍ତିତ୍ୱ ନାହିଁ । ମୋ ପରି ତୁମେ ଗୃହ ସଂସାର ତ୍ୟାଗୀ ସନ୍ନ୍ୟାସୀ ନୁହଁ । ଆତ୍ମୀୟଜନଙ୍କ ସହିତ ତୁମର ଦର୍ଶନ ଲାଗି ମୁଁ ଅପେକ୍ଷା କରିଥିଲି । ତାହା ଆଜି ମୋର ପୂର୍ଣ୍ଣ ହୋଇଛି । ଏଥର ମୋତେ ମୋ' ମାର୍ଗରେ ଯିବାକୁ ଅନୁମତି ଦିଅ ।"

କେବଳ ଶ୍ରୀରାମ ନୁହନ୍ତି; ଦଶରଥ, ଜନକ, ବଶିଷ୍ଠ ଆଦି ସମସ୍ତେ ବିଶ୍ୱାମିତ୍ରଙ୍କୁ ଆଉ କିଛିଦିନ ସେମାନଙ୍କ ଗହଣରେ କଟାଇବା ଲାଗି ଅନୁରୋଧ କଲେ । ଶେଷରେ ବିଶ୍ୱାମିତ୍ର ରାଜା ଓ ମୁନିମାନଙ୍କ ଅନୁରୋଧ ଏଡ଼ାଇ ନପାରି ଆଉ କିଛିଦିନ ରହିଯିବା ଲାଗି ସମ୍ମତ ହେଲେ । ସମସ୍ତଙ୍କ ମନରେ ଆନନ୍ଦର ଢେଉ ଖେଳିଗଲା । ଏହି ଅବସରରେ ରାଜା ଦଶରଥ ବର କନ୍ୟାଙ୍କ ବିଦାୟ ଲାଗି ରାଜର୍ଷି ଜନକଙ୍କୁ ଅନୁରୋଧ କଲେ । ମହାରାଜ ଜନକ କନ୍ୟା ଓ ଜାମାତାମାନଙ୍କ ବିଦାୟ ଲାଗି ଆୟୋଜନ କଲେ ।

## ଛପ୍ପୟ

"ଭେଜେ ଭୂପତି ଦୂତ ସୁନତ ଦଶରଥ ହରଷାୟେ ।
ସଜି ବରାତ ଗୁରୁ ଭରତ ଶତ୍ରୁହନ ସଂଗ ନୃପ ଆୟେ ॥
ରାମ ଲଖନ ଇତ ଭରତ ଶତ୍ରୁହନ ଚାରହୁଁ ଭାଇ ।
ଉତ ସୀତା ଉର୍ମିଳ ମାଣ୍ଡବୀ କୀର୍ତ୍ତି ସୁହାଇ ॥
ବିଧିବତ ଭୟେ ବିବାହ ଶୁଭ, ଦୁଲ୍ହା ଦୁଲହିନ ସଂଗ ମହଁ ।
ସୁତନ ବଧୂନ ସମେତ ଲଖି, ନୃପ ସମାଇଁ ନହିଁ ଅଂଗ ମହଁ ॥



# ପରଶୁରାମ ଦର୍ପଦଳନ

"ମାର୍ଗେ ବ୍ରଜନ୍ ଭୃଗୁପତେର୍ବ୍ୟନୟତ୍ ପ୍ରରୂଢ଼ମ୍।
ଦର୍ପଂ ମହୀମକୃତ ଯସ୍ତ୍ରିରରାଜବୀଜାମ୍ ॥

(ଶ୍ରୀ ଭା ୯ସ୍କନ୍ଧ, ୧୦ଅ, ୭ ଶ୍ଳୋକ)

## ଛପ୍ପୟ

"ବିଦା କରନ୍ତ ବର ବଧୂନ ସନ୍ତୁଷ୍ଟ ମହିଳାନ ମହୁଁ ଆସି ।
ମାତା ପୁତ୍ରୀନ ପରମ ପତିବ୍ରତ ଧରମ ସିଖାଇ ॥
ଜନକ ଜନନୀ ତେଂ ମିଳି ବିଲଖି ଗୃହନ୍ତୁ ସୁକୁମାରୀ ।
ପୁତ୍ରୀନ ସେଓ୍ୱତ ନିରଖି ଜନକ ସୁଧି ଦେହ ବିସାରି ॥
କରି ବିବାହ ଚେହିଂ କେ ବିଦା, ବଧୂନ ସହିତ ନୃପ ଘର ଚଲେ ।
କ୍ଷତ୍ରିୟକୁଲ ନାଶକ ପରଶୁ ରାମ କ୍ରୁପିତ ମଗ ମହୁଁ ମିଲେ ॥"

ଶୁକଦେବ କହିଲେ – "ହେ ରାଜନ୍, ପରୀକ୍ଷିତ ବିବାହ କରିସାରି ଶ୍ରୀରାମ ମାର୍ଗ ମଧ୍ୟରେ ଅତ୍ୟନ୍ତ ଗର୍ବୀ ପରଶୁରାମଙ୍କର ଗର୍ବକୁ ଖର୍ବ କରିଥିଲେ । ସେହି ପରଶୁରାମ ଏକୋଇଶଥର ପୃଥିବୀର କ୍ଷତ୍ରିୟମାନଙ୍କୁ ଧ୍ୱଂସ କରିଥିଲେ ।

ଏହି ସଂସାରରେ ଭଲ ଓ ମନ୍ଦ ଘଟଣାମାନ ବରାବର ଘଟି ଆସୁଛି । ସାଧାରଣତଃ ଦ୍ୱୈତ ଭାବନା ସର୍ବତ୍ର ପ୍ରଚଳିତ । ଦୁଇଟି ଡେଣା ଥିବାରୁ ପକ୍ଷୀ ଆକାଶରେ ବିଚରଣ କରୁଛି ଦୁଇ ଚକରେ ରଥ ଗଡ଼ି ଚାଲିଛି ଏବଂ ଦ୍ୱୈତ ଭାବନାରେ ହିଁ ଏହି ସୃଷ୍ଟି ଆତଯାଠ ହେଉଛି । ଯେଉଁ ଜ୍ଞାନୀ ଅଦ୍ୱୈତ ଭାବନାକୁ ମନରେ ପୋଷଣ କରି ସୁଖ, ଦୁଃଖ, ମାନ, ଅପମାନ ତଥା ହାନି, ଲାଭରେ ସମଭାବ ରଖି ଚାଲିପାରେ, ସେହି କେବଳ ଲୋକବ୍ୟବହାରଠାରୁ ଦୂରରେ ରହି ଅଖଣ୍ଡ ଆନନ୍ଦରେ ନିମଗ୍ନ ହୋଇ ପାରେ ।"

ଶ୍ରୀ ସୂତ ମହର୍ଷି କହିଲେ—"ହେ ମୁନିଗଣ, ବିବାହ ପରେ ବରଯାତ୍ରୀଦଳ ଅନେକ ଦିନ ପର୍ଯ୍ୟନ୍ତ ରାଜା ଜନକଙ୍କ ଆତିଥ୍ୟ ସ୍ୱୀକାର କରିବା ପରେ ଅଯୋଧ୍ୟାକୁ ଲେଉଟିଯିବା ଲାଗି ଅନୁମତି ମାଗିଲେ । ବିଦାୟର ବେଳା ସ୍ଥିର ହୋଇଗଲା । ଏହି ସମ୍ବାଦ କ୍ଷଣକ ମଧ୍ୟରେ ମିଥିଳା ନଗରୀରେ ବିଜୁଳି ବେଗରେ ପ୍ରସାରିତ ହୋଇଗଲା । ସେଠାକାର ଲୋକମାନେ ଭାବିଥିଲେ—ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ଏପରି ଭାବରେ ଜନକଙ୍କ ପୁରରେ ରହିଯିବେ । ଜନକ ସେମାନଙ୍କୁ ଘରଜ୍ୱାଇଁ କରି ରଖାଇ ନେବେ ଏବଂ ସେମାନେ ନବଦୂର୍ବାଦଳ ଶ୍ୟାମ ସୁନ୍ଦର ଶ୍ରୀରାମଙ୍କ ମୁଖ ଅବଲୋକନ କରି ସଦା ଆନନ୍ଦରେ ଦିନ ବିତାଇ ଦେବେ । ଶ୍ରୀରାମ ତାଙ୍କ ଭାଇମାନଙ୍କ ସହିତ ଏତେ ଶୀଘ୍ର ସେଠାରୁ ଗୁଲିଯିବେ ବୋଲି କାହାରି ଧାରଣା ହୋଇ ନଥିଲା । ହଠାତ୍ ଏହି ଖବର ଶୁଣିବା ମାତ୍ରେ ସେମାନଙ୍କ ମନଗହନର ଆଶାଲତାଟି ଝାଉଁଳି ପଡ଼ିଲା । ସୀତାରାମଙ୍କ ଶ୍ରୀମୁଖ ନଦେଖି ସେମାନେ କିପରି ଦିନ ଅତିବାହିତ କରିବେ, ତାହା ଧାରଣା କରି ପାରିଲେ ନାହିଁ । ବିଶେଷତଃ ସୀତାଙ୍କ ସଖୀମାନେ ଦୁଃଖପାରାବାରରେ ଉବୁଡ଼ି ଝୁବୁଡ଼ି ହେବାକୁ ଲାଗିଲେ । ସେମାନେ ଦଳ ଦଳ ହୋଇ ଆସି ସୀତାଙ୍କ ସହିତ ସାକ୍ଷାତ କରିବାକୁ ଲାଗିଲେ । ଶ୍ରୀରାମଙ୍କ ପରି ସ୍ୱାମୀ ପାଇ ସୀତା ମନେ ମନେ ପ୍ରଫୁଲ୍ଲିତା ହୋଇଥିଲେ ହେଁ ବାଲ୍ୟସଙ୍ଗିନୀମାନଙ୍କଠାରୁ ଚିର ବିଦାୟ ନେଉଥିବାରୁ, ତାଙ୍କର ଆଖି ଛଳ ଛଳ ହୋଇ ଯାଉଥିଲା । ସଖୀମାନେ ଅବଶ୍ୟ ତାଙ୍କୁ ଆଶ୍ୱାସନା ଦେଇ ବୁଝାଉଥିଲେ, କିନ୍ତୁ ସେଥିରେ ସୀତାଙ୍କ ମନ ବୁଝୁ ନଥିଲା । ବେଳେ ବେଳେ ସେ ଅଧୀର ହୋଇ ଛୋଟ ପିଲାଙ୍କ ପରି ରୋଦନ କରୁଥିଲେ । ସାଙ୍ଗସାଥି, ଆତ୍ମୀୟସ୍ୱଜନ ଓ ମାଆ ଖୁଡ଼ୀ ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ନିଜେ ମଧ୍ୟ ରୋଦନ କରୁଥିଲେ ।

ପରଦିନ ନିର୍ଦ୍ଧାରିତ ସମୟ ଆସିଗଲା । କୁମାରମାନେ ଶାଶୁଙ୍କୁ ପ୍ରଣାମ କରି ଆଶୀର୍ବାଦ ଗ୍ରହଣ କଲେ । ଶାଶୁମାନେ ତାଙ୍କର ଅଲିଅଳି ଝିଅମାନଙ୍କୁ ସୁଖରେ ରଖିବା ପାଇଁ କୁମାରମାନଙ୍କୁ ଅନୁରୋଧ କଲେ । କୁମାରମାନେ ଲଜ୍ଜାରେ ଅଧୋମୁଖ ହୋଇ ଶାଶୁମାନଙ୍କୁ କିଛି ହେଲେ ଉତ୍ତର ଦେଲେ ନାହିଁ । ତାପରେ ମାତା କନ୍ୟା-ମାନଙ୍କୁ ଶ୍ୱଶୁର ଘରେ କିପରି ଆଚରଣ କରିବାକୁ ହେବ, ସେ ବିଷୟରେ ଅନେକ ଉପଦେଶ ଦେଇ ବୁଝାଇଲେ ।

ମହାରାଜ ଜନକ ହାତୀ, ଘୋଡ଼ା, ରଥ, ଦାସ ଦାସୀ, ବସ୍ତ୍ର, ଭୂଷଣ ତଥା ଅନ୍ୟାନ୍ୟ ବହୁଦ୍ରବ୍ୟ ଝିଅ ଜ୍ୱାଇଁଙ୍କୁ ଦେଇଥିଲେ । ସମସ୍ତ ଦ୍ରବ୍ୟ ତଥା ପୁତ୍ର ଓ ବଧୂ-ମାନଙ୍କ ସହିତ ଦଶରଥ ଜନକଙ୍କଠାରୁ ବିଦାୟ ନେଲେ ।

ସୂତ ମହର୍ଷି କହିଲେ—"ହେ ମୁନିଗଣ, ସେ ବିଦାୟ ବେଳା ଥିଲା ଅତ୍ୟନ୍ତ କରୁଣ । ରାଜା ଜନକ ଓ କୁଶଧ୍ୱଜ ପରମ ଆନନ୍ଦରେ ବିଦାୟ ଦେଉଥିଲେ ହେଁ

କନ୍ୟାମାନଙ୍କୁ ସବୃଦନ ଲାଗି ପରଘରକୁ ପଠାଇ ଦେଉଥିବ ରୁ ମନେ ମନେ ଅତ୍ୟନ୍ତ ଅଧୀର ହୋଇ ଉଠିଥିଲେ । ଅନ୍ତଃସଲିଳା ଫଲ୍‌ଗୁ ପରି ସେ ଦୁହେଁ ଉପରକୁ ଯେତେ ଧୈର୍ଯ୍ୟଶୀଳ ବୋଲି ମନେ ହେଉଥିଲେ, ବିଦାୟ ମୁହୂର୍ତ୍ତର ଅନ୍ତିମ ଅବସରରେ ତାହା ସ୍ପଷ୍ଟ ହୋଇଗଲା । ସେ ଦୁହେଁ ଆଉ ସମ୍ଭାଳି ପାରିଲେ ନାହିଁ । ଦୁହିଁଙ୍କ ଆଖିରୁ ଝରଝର ହୋଇ ଲୁହ ଝରି ପଡ଼ିଲା । ଦୁଇ ଭାଇ ଅତ୍ୟନ୍ତ ବ୍ୟଥିତ ମନରେ ପୁରକୁ ବାହୁଡ଼ି ଆସିଲେ ।"

ମହାରାଜ ଦଶରଥ ପୁତ୍ର ଓ ବଧୂମାନଙ୍କ ଗହଣରେ ଆଗେଇ ଚାଲିଥିବା ବେଳେ, ମାର୍ଗ ମଧ୍ୟରେ କେତୋଟି ଅପଶକୁନ ଦେଖି ମନେ ମନେ ଶଙ୍କିତ ହୋଇ ଉଠିଲେ । ସେତିକିବେଳେ ସମ୍ମୁଖ ଭାଗରେ କୋଳାହଳର ସୂଚନା ମିଳିଲା । ସତେ ଅବା ସୁମେରୁର ଶିଖର ଆସି ଆଗରେ ଉଭା ହୋଇଗଲା । ମହାରାଜ ଦଶରଥ ଜଣେ ଭୟଙ୍କର ଆକୃତିର ଯୋଦ୍ଧାଙ୍କୁ ଆଖି ଆଗରେ ଦେଖି ମନେ ମନେ କମ୍ପି ଉଠିଲେ ।

ମୁନି ବଶିଷ୍ଠ ସେହି ତେଜସ୍ୱୀ ପୁରୁଷଙ୍କୁ ଦୂରରୁ ଦେଖି ବେଶ୍ ଚିହ୍ନି ପାରିଲେ । ସେ ଆଶ୍ଚର୍ଯ୍ୟ ହୋଇଯାଇ ଭାବିଲେ—"ଆରେ, ଏ ପୁଣି ଆସିଲେ କୁଆଡ଼ୁ ? ପିତୃହତ୍ୟାର ପ୍ରତିଶୋଧ ଲାଗି ଏ ହାତରେ କୁଠାର ଧାରଣ କରି ଏକୋଇଶ ଥର ପୃଥିବୀକୁ ନିକ୍ଷତ୍ରିୟ କରିଥିଲେ । ଶେଷରେ ସେ ସମସ୍ତ ଧରଣୀକୁ କଶ୍ୟପଙ୍କୁ ଦାନ ଦେଇ ମହେନ୍ଦ୍ର ପର୍ବତରେ ବସି ତପସ୍ୟାରେ ଲୀନ ଥିଲେ । ହଠାତ୍ ପୁଣି ମହାକ୍ରୋଧରେ ପରଶୁ ଧାରଣ କରି ଏଠାରେ ଉପସ୍ଥିତ ହୋଇଗଲେ କାହିଁକି ? ପୁଣି କ'ଣ ଧରାରୁ କ୍ଷତ୍ରିୟଶୂନ୍ୟ କରିବା ଲାଗି ମନେ ମନେ ବିଚାର କଲେ କି ?

ତାଙ୍କୁ ସମ୍ମୁଖରେ ଦେଖି ବଶିଷ୍ଠ ଆଦି ମୁନିଗଣ ପାଦ୍ୟ ଓ ଅର୍ଘ୍ୟ ଦେଇ ସତ୍କାର କରିବା ପରେ, ସେ କ୍ରୋଧରେ ଥରି ଥରି ପଚାରିଲେ—"ଶ୍ରୀରାମ କିଏ ହେ ? ସେ କାହିଁ ??"

ରାଜା ଦଶରଥ ଭୟରେ ଥରି ଥରି ଶ୍ରୀରାମଙ୍କୁ ନେଇ ମୁନିଙ୍କ ଚରଣରେ ଅର୍ଘ୍ୟ ପ୍ରଦାନ କଲେ । ଶ୍ରୀରାମଚନ୍ଦ୍ର ବିନୀତ ଭାବରେ ପରଶୁରାମଙ୍କ ପାଦ ବନ୍ଦନା କଲେ । ଭୃଗୁପତି ଶ୍ରୀରାମଙ୍କୁ ଚାହିଁ କ୍ରୋଧ କମ୍ପିତ ସ୍ୱରରେ ପରଶୁରାମ କହିଲେ— "ରାମ, ଶୁଣିଲି, ତୁମେ ଶିବଧନୁ ଭାଙ୍ଗି ଦେଇ ବିଶ୍ୱବିଜୟୀ ହେବାର ଗୌରବ ଅର୍ଜନ କରିଛ । ମୁଁ ଏକବିଂଶବାର ବିଶ୍ୱକୁ ନିଃକ୍ଷତ୍ରିୟ କରି ବିଶ୍ୱବିଜୟୀ ହୋଇଥିଲି । ତଥାପି କେତେକ କ୍ଷତ୍ରିୟ ପ୍ରାଣ ଭୟରେ ଆତ୍ମଗୋପନ କରି ରହିଯାଇଥିଲେ । ସେହିମାନଙ୍କଠାରୁ ପୁଣି ଧରାରେ କ୍ଷତ୍ରିୟ କୁଳ ବୃଦ୍ଧି ପାଇବାକୁ ଲାଗିଲା । ତା'ପରେ

ମୁଁ ଭାବିଲି—ଏହି ସ୍ନାନଶାର୍ଥୀ କ୍ଷତ୍ରିୟମାନଙ୍କ ଦ୍ୱାରା କାଶ ଲାଭ କ'ଣ ? କିନ୍ତୁ ଦେଖୁଛି—ତୁମେ ଭଗବାନ୍ ଚନ୍ଦ୍ରମୌଳିଙ୍କ ଦିବ୍ୟ ଧନୁକୁ ଗୁଣ ଦେବାବେଳେ ଭାଙ୍ଗି ଦେଇଛ । ମୁଁ ତୁମର ପରାକ୍ରମରେ ଈର୍ଷାନ୍ୱିତ ହୋଇ ତୁମ ସହିତ ଯୁଦ୍ଧ କରିବା ଲାଗି ଧାଇଁ ଆସିଛି ।"

ଏହା ଶୁଣିବା ମାତ୍ରେ ଦଶରଥଙ୍କ ପିଣ୍ଡରୁ ପ୍ରାଣ ବାହାରି ଗଲା ପରି ବୋଧ ହେଲା । ସେ ଅତ୍ୟନ୍ତ ଦୀନ ଭାବରେ ହାତ ଯୋଡ଼ି କହିଲେ—"ବ୍ରହ୍ମନ୍, ଅସ୍ତ୍ର ଧାରଣ ନ କରିବା ଲାଗି ଆପଣ ଦେବଗଣଙ୍କ ଆଗରେ ପ୍ରତିଜ୍ଞା କରିଥିଲେ । ଯଦି ଆପଣ ବର୍ତ୍ତମାନ ଯୁଦ୍ଧ କରି ଶ୍ରୀରାମଙ୍କୁ ବଧ କରନ୍ତି, ତେବେ ଆମମାନଙ୍କ ମଧ୍ୟରୁ କେହି ଜଣେ ହେଲେ ଜୀବିତ ରହିବୁ ନାହିଁ । ହେ ମୁନିବର, ଆପଣ ଦୟାକରି ଆମକୁ ଅଭୟ ଦାନ କରନ୍ତୁ ।"

ଦଶରଥଙ୍କ କମ୍ପିତ ବଚନ ନ ଶୁଣି ଶ୍ରୀରାମଙ୍କ ଆଡ଼କୁ ଚାହିଁ ପରଶୁରାମ କହିଲେ—"ରାମ, ତୁମେ କିଛି କହୁନାହିଁ କାହିଁକି ?"

ଶ୍ରୀରାମ କହିଲେ—"ମୁଁ ଆଉ କଣ କହିବି ଭଗବନ୍ ?"

ପରଶୁରାମ ପଚାରିଲେ—"ତୁମେ ଶିବଧନୁକୁ ଭାଙ୍ଗି ଦେଇଛ ?"

ଶ୍ରୀରାମ ବିନୀତ ଭାବରେ କହିଲେ—"ସେ ତ ଆପଣା ଛାଏଁ ଭାଙ୍ଗିଗଲା । ପୁରୁଣା ଧନୁଟି ଗୁଣ ଦେବା ମାତ୍ରେ ଭାଙ୍ଗି ଦୁଇଖଣ୍ଡ ହୋଇଗଲା ।"

ପରଶୁରାମ ଖୁବ୍ ରାଗିଯାଇ କହିଲେ—"ତୁମେ ବଡ଼ ଅଭିମାନୀ ଯୁବକ ଦେଖୁଛି । ଆଜି ମୁଁ ତୁମ ଅଭିମାନକୁ ଚୂର୍ଣ୍ଣ କରିବି !"

"ଯଦି ମୋର ଅଭିମାନ ଥିବ, ତେବେ ତାହା ଆପଣାଛାଏଁ ଚୂର୍ଣ୍ଣ ହୋଇଯିବ ।"

ଶ୍ରୀରାମଙ୍କ ଉତ୍ତରରେ ପରଶୁରାମ ଆହୁରି ଅଧିକ ରାଗିଯାଇ କହିଲେ— "ତୁମେ ମୋତେ ଜାଣିଛ ? ମୁଁ ମୋର ଏହି ପରଶୁରେ ଅନେକ କ୍ଷତ୍ରିୟଙ୍କ ମୁଣ୍ଡ କାଟିଛି । ଏତେ କ୍ଷତ୍ରିୟଙ୍କ ରକ୍ତପାନ କରି ସୁଦ୍ଧା ମୋ ପରଶୁ ତୃପ୍ତ ହୋଇନାହିଁ । ସେ ତୁମର ରକ୍ତ ପାନ କରିବା ପାଇଁ ଆଜି ଲାଳାୟିତ ହୋଇ ଉଠିଛି । ତୁମେ ମୋ କଥା ଶୁଣିଲ ତ ?"

"ହଁ...ମୁଁ ଆପଣଙ୍କ ଦମ୍ଭୋକ୍ତି ଶୁଣିଲି । ସେ ସମୟରେ କ୍ଷତ୍ରିୟମାନେ ନିର୍ବୀର୍ଯ୍ୟ ହୋଇ ଯାଇଥିଲେ ।"

ପରଶୁରାମ କହିଲେ—"ଅରେ ନୁହେଁ; ଏକୋଇଶ ଥର ମୁଁ କ୍ଷତ୍ରିୟ କୁଳକୁ ବିନାଶ କରିଥିଲି...।"

ଶ୍ରୀରାମ ଅତ୍ୟନ୍ତ ଗମ୍ଭୀର ହୋଇଯାଇ କହିଲେ—"ସେତେବେଳେ ଶ୍ରୀରାମଙ୍କ ପରି କ୍ଷତ୍ରିୟ ଜନ୍ମ ହୋଇ ନଥିଲେ ।"

ପରଶୁରାମ କହିଲେ—"ସେଇଥିପାଇଁ ମୁଁ ଆଜି ତୁମକୁ ସଂହାର କରିବି ! ତୁମେ ମୋ ସହିତ ଯୁଦ୍ଧ କରିବା ଲାଗି ଉଦ୍ୟତ ତ ?"

ଶ୍ରୀରାମ ଅତ୍ୟନ୍ତ ବିନୀତ ଭାବରେ କହିଲେ—"ଭଗବନ୍, ମୁଁ ବ୍ରାହ୍ମଣ-ମାନଙ୍କର ଭୃତ୍ୟାନୁଭୃତ୍ୟ ! ତଥାପି ମୋତେ ଯଦି ଯୁଦ୍ଧ ଲାଗି ଆହ୍ୱାନ କରାଯାଏ, ତେବେ ଆହ୍ୱାନକାରୀ ବିଷ୍ଣୁ, ଇନ୍ଦ୍ର, କିମ୍ବା ରୁଦ୍ର ହେଲେ ମଧ୍ୟ ମୁଁ ପଛଘୁଞ୍ଚା ଦେବି ନାହିଁ ।"

ପରଶୁରାମ ଶ୍ରୀରାମଙ୍କ ଉତ୍ତର ଶୁଣି ବିଚଳିତ ହୋଇ ଉଠିଲେ । ସେ ନିଜର କ୍ରୋଧକୁ ଦମନ କରି କହିଲେ—"ମୁଁ ଜାଣିଛି—ଶିବଧନୁ ଭାଙ୍ଗି ଦେବା ଫଳରେ ତୁମେ ଅଧିକ ଆତ୍ମାଭିମାନୀ ହୋଇ ଉଠିଛ । ତୁମେ ଜାଣିଛ—ପୂର୍ବ କାଳରେ ବିଷ୍ଣୁ ଓ ଶିବଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇଥିଲା । ପରେ ଶିବ ତାଙ୍କ ଧନୁଟିକୁ ଜନକଙ୍କର ପୂର୍ବପୁରୁଷ ଦେବରାତଙ୍କୁ ଦାନ କରିଥିଲେ । ସେହି ଶିବଧନୁକୁ ତୁମେ ଭାଙ୍ଗି ଦେଇ ଗର୍ବ କରୁଛ । କିନ୍ତୁ ବିଷ୍ଣୁ ତାଙ୍କ ଧନୁଟିକୁ ମହର୍ଷି ଋଚୀକଙ୍କୁ ଦେଇଥିଲେ । ତାଙ୍କଠାରୁ ମୋ ପିତା ଏହି ବୈଷ୍ଣବ ଧନୁକୁ ପାଇଥିଲେ । ସେହି ଧନୁରେ ତୁମେ ଯଦି ଗୁଣ ଦେଇ ପାରିବ, ତା'ହେଲେ ମୁଁ ତୁମର ବଳ ଓ ବୀରତ୍ୱକୁ ସ୍ୱୀକାର କରିବି !"

ଏହା କହି ପରଶୁରାମ ନିଜ ଧନୁଟିକୁ ଶ୍ରୀରାମଙ୍କ ଆଡ଼କୁ ବଢ଼ାଇ ଦେଲେ ।

ଶ୍ରୀରାମ ପରଶୁରାମଙ୍କ ହାତରୁ ଧନୁଟିକୁ ନେଇ ସେଥିରେ ଅତ୍ୟନ୍ତ ସହଜ ଭାବରେ ଗୁଣ ଚଢ଼ାଇ ଦେଇ କହିଲେ—"ମହାଭାଗ, ମୋର ବାଣ ଅମୋଘ ! ଗୁଣ ଦେଇ ସାରିବା ପରେ ଏହି ବାଣରେ ମୁଁ ଆପଣଙ୍କୁ ବଧ କରି ଆଣନ୍ତି; କିନ୍ତୁ ଆପଣ ମୋର ଅବଧ୍ୟ । ଗୁରୁଦେବ ବିଶ୍ୱାମିତ୍ରଙ୍କର ଆପଣ ଜ୍ଞାତିବନ୍ଧୁ ଅଟନ୍ତି । କ୍ରୋଧ ଫଳରେ ଆପଣଙ୍କର ତପୋବଳ ତଥା ପ୍ରଗତି ନଷ୍ଟ ହୋଇ ଯିବାର କଥା । କୁହନ୍ତୁ, ମୁଁ ଆପଣଙ୍କର ପ୍ରଗତି କିମ୍ବା ପୁଣ୍ୟ କାହା ପ୍ରତି ଏ ବାଣ ପ୍ରୟୋଗ କରିବି ?"

ଶ୍ରୀରାମଙ୍କ ଅତୁଳନୀୟ ପରାକ୍ରମ ଦେଖି ପରଶୁରାମ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ସେ ଲକ୍ଷ୍ୟ କଲେ—ତାଙ୍କ ଶରୀରରୁ ସମ୍ପୂର୍ଣ୍ଣ ପରାକ୍ରମ ତଥା ତେଜ ନିର୍ଗତ ହୋଇ ଶ୍ରୀରାମଙ୍କ ଶରୀରରେ ପ୍ରବେଶ କରିଗଲେ । ସେ ନିଜକୁ ଅତ୍ୟନ୍ତ ଅସହାୟ ଓ ଦୁର୍ବଳ ମନେକଲେ । ତହୁଁ ସେ ଅତ୍ୟନ୍ତ ବିନୀତ ଭାବରେ କହିଲେ—"ଶ୍ରୀରାମ, ମୁଁ ଭଗବାନ୍ କଶ୍ୟପଙ୍କଠାରେ ପୃଥିବୀରେ ବାସ ନ କରିବା ଲାଗି ପ୍ରତିଜ୍ଞା କରିଥିଲି । ତେଣୁ ଆପଣ ମୋର ଗତିରୋଧ କରନ୍ତୁ ନାହିଁ । ମୋର ତପସ୍ୟାଲବ୍ଧ

ପୁଣ୍ୟଫଳକୁ ଆପଣ ନଷ୍ଟ କରିଦେଇ ପାରନ୍ତି । କାରଣ ଆପଣ ସନାତନ ପୁରାଣ ପୁରୁଷ ଅଟନ୍ତି । ଆପଣଙ୍କ ଦର୍ଶନ ପାଇବା ମାତ୍ରେ ପାପ ଓ ପୁଣ୍ୟ ଉଭୟ ନଷ୍ଟ ହୋଇଯାଇଥାଏ ।"

ପରଶୁରାମଙ୍କ ଉତ୍ତର ଶୁଣି ଶ୍ରୀରାମ ବୈଷ୍ଣବ ଧନୁରେ ଭୃଗୁପତିଙ୍କର ସମସ୍ତ ତପସ୍ୟାଲବ୍ଧ ପୁଣ୍ୟଲୋକକୁ ନଷ୍ଟ କରିଦେଲେ । ତା'ପରେ ପରଶୁରାମ ପରମେଶ୍ୱର ଶ୍ରୀରାମଙ୍କୁ ସ୍ତୁତି କରିସାରି ମହେନ୍ଦ୍ର ପର୍ବତକୁ ଚାଲିଗଲେ ।

ଏହା ଶୁଣିବା ପରେ ଶୌନକ ମହର୍ଷି ପଚାରିଲେ—"ମହାଭାଗ, ପରଶୁରାମ ଓ ଶ୍ରୀରାମ ଦୁହେଁ ପ୍ରଭୁଙ୍କ ଅବତାର । ତା'ପରେ ପୁଣି ପରଶୁରାମ ଥିଲେ ବ୍ରାହ୍ମଣ । ସେ କିପରି ଭାବେ ଶ୍ରୀରାମଙ୍କ ନିକଟରେ ଏତେ ବିନୟ ପ୍ରକାଶ କଲେ କାହିଁକି ?"

ସୂତ ମହର୍ଷି ହସି ହସି ଉତ୍ତର ଦେଲେ—"ଆପଣଙ୍କ ଆଶଙ୍କା ଆଂଶିକ ସତ୍ୟ । ବ୍ରାହ୍ମଣ ଜଣେ କ୍ଷତ୍ରିୟ ଆଗରେ ଏତେ ନମ୍ର ହେବା ଉଚିତ ନୁହେଁ । କିନ୍ତୁ ଶ୍ରୀରାମ ଥିଲେ—ପରଂବ୍ରହ୍ମ ସନାତନ । ତାଙ୍କ ଦର୍ଶନ ପାଇବା ମାତ୍ରେ ପରଶୁରାମ ବୈଷ୍ଣବ ହୋଇ ଯାଇଥିଲେ । ବୈଷ୍ଣବ ସମସ୍ତ ଜଗତକୁ ଶ୍ରୀରାମମୟ ଅନୁଭବ କରେ । ସେ ପ୍ରତ୍ୟେକଠାରେ ବିଷ୍ଣୁଙ୍କ ଦର୍ଶନ ଅନୁଭବ କରି ବିନୀତ ଭାବରେ ତାଙ୍କର ଚରଣରେ ଲୋଟି ପଡ଼େ । ତା' ବ୍ୟତୀତ ପରଶୁରାମ ଥିଲେ—ଅଂଶାବତାର ଏବଂ ଶ୍ରୀରାମ ହେଉଛନ୍ତି ପୂର୍ଣ୍ଣବ୍ରହ୍ମ । ଏହେତୁ ସେ ତାଙ୍କ ପାଖରେ ବିନୀତ ହୋଇଥିଲେ ।" ଏ ସମ୍ପର୍କରେ ମୁଁ ଆପଣମାନଙ୍କୁ ଗୋଟିଏ ଦୃଷ୍ଟାନ୍ତ ଶୁଣାଉଛି—

"ପ୍ରାଚୀନ କାଳରେ ଜଣେ ନିର୍ଦ୍ଧନ ବ୍ୟକ୍ତି ଥିଲା । ସେ ସବୁବେଳେ ଧନ ପାଇବା ଲାଗି ବ୍ୟାକୁଳ ହେଉଥିଲା । କୌଣସି ମତେ ଦିନେ ତାକୁ ଗୋଟିଏ ଟଙ୍କା ମିଳିଗଲା । ସେହି ଟଙ୍କାଟିକୁ ସେ ଅତି ଯତ୍ନରେ ରଖି, ସେଥିରୁ ଲକ୍ଷ ଲକ୍ଷ ଉପାର୍ଜନ କରିବା ପାଇଁ ଚିନ୍ତା କଲା । ସେ ବେପାରୀମାନଙ୍କ ପାଖକୁ ଯାଇ ଧନ ଉପାର୍ଜନର ଉପାୟ ସମ୍ବନ୍ଧରେ ପ୍ରଶ୍ନ କଲା । ସେମାନେ କହିଲେ—"ଟଙ୍କା ଟଙ୍କାକୁ ଟାଣି ଆଣେ !"

ଏହା ଶୁଣି ସେ ମନେ ମନେ ଖୁସି ହୋଇ ଟିକେ ଅତି ସାବଧାନତାର ସହିତ ଗୋଟିଏ ଧନ ଭଣ୍ଡାର ପାଖକୁ ଚାଲିଗଲା । ଧନଭଣ୍ଡାର ପାଖରେ ଠିଆ ହୋଇ ସେ ଦେଖିଲା—ଘର ଭିତରେ ଅନେକ ଟଙ୍କା ରହିଛି । ତହୁଁ ସେ ଭଣ୍ଡାର ଘରର ଝରକା ପାଖକୁ ଯାଇ, ନିଜ ଟଙ୍କାଟିକୁ ହାତରେ ଧରି କହିଲା—"ଯାଃ...ଟଙ୍କା ସବୁ ଟାଣି ଆଣ !" ଅନେକ ସମୟ ପର୍ଯ୍ୟନ୍ତ ଏହିପରି ଭାବରେ ବାଉଳିଙ୍କ ପରି ସେ

ବନ୍ଦୋବସ୍ତ କରିବାକୁ ଲାଗିଲା । ଯା' ମଧ୍ୟରେ ତା' ହାତରୁ ନକଲ ଟଙ୍କାଟି ଧନଭଣ୍ଡାର ଭିତରକୁ ଖସି ପଡ଼ିଲା । ସେ ବିଚରା ନକଲ ଏକମାତ୍ର ଟଙ୍କାଟିକୁ ହରାଇ ମୁଣ୍ଡ କୋଡ଼ି ହୋଇ ସେହିଠାରେ ରୋଦନ କରିବାକୁ ଲାଗିଲା ।

ବିଚରା ଗରିବ ଲୋକଟିର ଦୁଃଖଣ୍ଟା କାନ୍ଦଣା ଶୁଣି ଲୋକମାନେ ଧାଇଁ ଆସିଲେ । ସେ ଲୋକଟିଠାରୁ ସମସ୍ତ ଘଟଣା ଶୁଣି ସେମାନେ କହିଲେ—"ବୁଝିଲ, ତୁମେ ଅସଲ କଥାଟିକୁ ଆଦୌ ବୁଝିପାରି ନଥିଲ । ସେଇଥିପାଇଁ ତୁମ ଟଙ୍କାଟି ହାତରୁ ଖସିଗଲା । ଭଣ୍ଡାର ମଧ୍ୟରେ ଅନେକ ଟଙ୍କା ଥିଲା । ତେଣୁ ସେମାନେ ଅଧିକ ବଳଶାଳୀ ହୋଇ ତୁମ ଟଙ୍କାଟିକୁ ଟାଣି ନେଲେ ।

"ଏହାଶୁଣି ବିଚରା ନିର୍ଦ୍ଧନ ଲୋକଟି କାନ ମୁଣ୍ଡ ଆଉଁସି ସେଠାରୁ ପଳାଇଲେ ।

"ତେଣୁ ହେ - ମୁନିଗଣ", ସୂତ ମହର୍ଷି କହିଲେ—"ଶ୍ରୀରାମ ଥିଲେ—ଅବତାରୀ । ତେଣୁ ସେ ଅଧିକ ବଳଶାଳୀ । ପରଶୁରାମ ଥିଲେ—ଅବତାର । ତେଣୁ ସେ ପୂର୍ଣ୍ଣବ୍ରହ୍ମଙ୍କଠାରେ ନ୍ୟୂନ ହୋଇଗଲେ । ଏହାପରେ ଖୁସିରେ ଶ୍ରୀରାମଚନ୍ଦ୍ର ପରଶୁରାମଙ୍କ ଗର୍ବ ଚୂର୍ଣ୍ଣ କରି ରଥରେ ବସିଲେ । ରାଜା ଦଶରଥ ପୁତ୍ର, ବଧୂ ଓ ଅନ୍ତଃପୁରଜନ ତଥା ପାତ୍ରମନ୍ତ୍ରୀଙ୍କୁ ନେଇ ଆନନ୍ଦରେ ଅଯୋଧ୍ୟାକୁ ଚାଲିଗଲେ ।"

## ଛପ୍ପୟ

"ଗରଜେ ତରଜେ ପରଶୁରାମ ରଘୁପତି ମୁଖ ମୋରେୟା ।
ଦୟୋ ବିଷ୍ଣୁକୋ ଧନୁଷ ତାହି ରଘୁନାଥକେ ତୋରେୟା ॥
ଜାମଦଗ୍ନ୍ୟକୀ ଆଁଖି ଖୁଲୀ ବିନତୀ ବହୁ କୀହ୍ନୀ ।
ଗଏ ମହେନ୍ଦ୍ର କୁଁ ଗୟେ ଶକ୍ତି ତିନକୀ ହରି ଲୀହ୍ନୀ ॥
ପୁର ଆୟେ ମାତା ସୁଖୀ, ଭଈ ବଧୂନ ଲଖି କମଲ ମୁଖ ।
କରୀ କ୍ରୀଡ଼ା ପ୍ରିୟ ସମଧିୟ, ପିତୁ ମାତନ ଅତି ଦେତ ସୁଖ "॥



# ମାତୃପିତୃ ଭକ୍ତ ଶ୍ରୀରାମ

"ଯଃ ସତ୍ୟପାଶ ପରିବୀତପିତୁର୍ନିଦେଶମ୍ ।
ସ୍ତ୍ରୈଣସ୍ୟ ଚାପି ଶିରସା ଜଗୃହେ ସଭାର୍ଯ୍ୟଃ ॥

(ଶ୍ରୀ ଭା ୯ସ୍କନ୍ଧ, ୧୦ଅ, ୮ ଶ୍ଳୋକ)]

## ଛପ୍‌ପୟ

"ଭାତ ଶତ୍ରୁହନ ଗୟେ ମାତୃଗୃହ କେକୟପୁର ମହଁ ।
ରାମ ହୋହିଁ ଯୁବରାଜ ଭଇ ଇଚ୍ଛା ନୃପ ଉର ମହଁ ॥
ସବନ ସମରଥନ କରେଉ ଝଲକ ରୀ ଭଇଂ ତୟାରୀ ।
କିନ୍ତୁ କୁବରୀ କୁଟିଲ ବୀଚ ମହ ବାତ ବିଗାରୀ ॥
କାନ କୈକୟୀ କେ ଭରେ, ମାଁଗେଉ ଦ୍ୱୈ ବର ତୁରତ ।
ବରଷୈଂ ଚତୁରଦଶ ବିପିନ ବନ, ରାମ ରାଜ୍ୟ ପାଓ୍ୱହିଁ ଭରତ ॥

ଅର୍ଥାତ୍—ଶ୍ରୀ ଶୁକଦେବ କହୁଛନ୍ତି—"ସ୍ତ୍ରୀ ବଶୀଭୂତ ହୋଇଥିବା ଏବଂ ସତ୍ୟପାଶରେ ଆବଦ୍ଧ ନିଜ ପିତାଙ୍କ ଆଦେଶରେ ଯେଉଁ ଶ୍ରୀରାମ ସ୍ତ୍ରୀ ସହିତ ବନକୁ ଯିବା ଲାଗି ଆଜ୍ଞା ଶିରୋଧାର୍ଯ୍ୟ କରିଥିଲେ, ସେହି ଭଗବାନ୍ ଶ୍ରୀ ରଘୁନାଥ ଆମର ମଙ୍ଗଳ କରନ୍ତୁ ।

ଶ୍ରୀରାମଙ୍କ ଚରିତ୍ର ବାସ୍ତବରେ ଚରିତ ନୁହେଁ; ଏହା ହେଉଛି ବିଶ୍ୱର ବୃତ୍ତାନ୍ତ ଶ୍ରୀରାମଙ୍କ ବିନା ଇଚ୍ଛାରେ ଗଛର ପତ୍ରଟିଏ ସୁଦ୍ଧା ହଲେ ନାହିଁ । ତେଣୁ ସଂସାରର ସମସ୍ତ ଦୁଃଖ ଓ ସୁଖ ସବୁକିଛି ଶ୍ରୀରାମମୟ । ପିମ୍ପୁଡ଼ିଟିଏ ଖୁଣ୍ଟରେ ଚଢ଼ିବା ବେଳେ ଅପର ପାର୍ଶ୍ୱରେ କ'ଣ ଅଛି ଦେଖିପାରେ ନାହିଁ । କିନ୍ତୁ ଆମେମାନେ ସେହି ଖୁଣ୍ଟରେ ଚଢ଼ିବା ବେଳେ ସମସ୍ତ ବିଷୟ ଜାଣିପାରୁ ଥାଉଁ । ଅଜ୍ଞ ପୁରୁଷମାନେ ଶ୍ରୀରାମଙ୍କ ଅଭିଷେକରେ ବିଘ୍ନ ପଡ଼ିବ ବୋଲି ଜାଣିପାରି ନଥିଲେ । କିନ୍ତୁ ଶ୍ରୀରାମ ବିଘ୍ନର

ଅନ୍ତର୍ଯାମୀ ହୋଇଥିବାରୁ ସେ ସବୁକିଛି ଜାଣିଥିଲେ । ପରଶୁରାମଙ୍କ ପରି ଯେ ଲୁଚାଇ ବୁଦ୍ଧି ଭ୍ରଷ୍ଟ କରି ଦେଉଥିଲେ । ରାମ ନାମ ଯେପରି ଜପ, ତାଙ୍କ ଲୀଳା ମଧ୍ୟ ସେହିପରି ଜପ । ସେ ଲୀଳା ସୁଖ ଦୁଃଖର ସୀମାରେ ଅନ୍ତର୍ଯାମୀ ଅନନ୍ତ ଦେଇଥାଏ ।

ସୂତ ମହର୍ଷି କହୁଛନ୍ତି—"ହେ ମୁନିପତି, ରାଜା ଦଶରଥ ପୁଅମାନଙ୍କ ବିବାହ କରାଇ ଫେରି ଆସୁଥିବାର ଶୁଣି ପ୍ରଜାମାନେ ନଗରଟିକୁ ଭଲ କରି ସଜାଇଲେ । ବର ଓ ବଧୂଙ୍କ ଉପରେ ସେମାନେ ଫୁଲ ଓ ଖଇ ବର୍ଷଣ କଲେ । ମାଆମାନେ ଆରତି ସଜାଇ ବଧୂମାନଙ୍କୁ ସ୍ୱାଗତ କଲେ । ଶାଶୂମାନେ ବଧୂମାନଙ୍କ ମୁହଁ ଦେଖି ଆନନ୍ଦରେ ଅଧୀର ହୋଇଗଲେ । ସେମାନେ ବଧୂମାନଙ୍କୁ ମୁହଁଚୁଆଁ କ'ଣ ଦେବେ ବୋଲି ଆଦୌ ସ୍ଥିର କରି ପାରିଲେ ନାହିଁ । କୌଶଲ୍ୟା ଶ୍ରୀରାମଙ୍କ ହାତଧରି ସୀତାଙ୍କୁ କହିଲେ—"ମାଆ, ମୋର ସର୍ବସ୍ୱ ହେଉଛନ୍ତି ରାମ । ମୁଁ ତାଙ୍କୁ ତୋ'ର ହାତରେ ଦେଉଛି । ତାହାହିଁ ହେଉଛି—ମୋର ତରଫରୁ ତତେ ମୁହଁଚୁଆଁ ।

ଏ କଥା ଶୁଣି ପୁରବାସୀମାନେ ହସିବାକୁ ଲାଗିଲେ । ବୋହୂମାନଙ୍କ ପାଖରେ ମୁହଁଚୁଆଁ ଜିନିଷ ଜମା ହୋଇଗଲା । ସେମାନେ ଶାଶୁମାନଙ୍କ ପାଦ ଛୁଇଁ ପ୍ରଣାମ କଲେ । ସେହି ଦିନଠାରୁ ଶାଶୁମାନେ ବହୂମାନଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଇଲେ । ତେଣୁ ସେମାନଙ୍କ ଦିନ ଗୁଡ଼ିକ ସୁରୁଖୁରୁରେ କଟିବାକୁ ଲାଗିଲା ।

ଭରତଙ୍କ ମାମୁଁ ଯୁଧାଜିତ୍ ବିବାହ ଉତ୍ସବକୁ ଆସିଥିଲେ । ସେ ରାଜାଙ୍କୁ ଭରତଙ୍କୁ ନେଇଯିବା ଲାଗି ଅନୁରୋଧ କଲେ । ଭରତ ଶ୍ରୀରାମଙ୍କୁ ଛାଡ଼ି ଅନ୍ୟତ୍ର ଯିବାକୁ ଚାହୁଁ ନଥିଲେ । କିନ୍ତୁ ପିତାଙ୍କ ଆଦେଶ ଫଳରେ ସେ ଶତ୍ରୁଘ୍ନଙ୍କୁ ସାଙ୍ଗରେ ନେଇ ମାମୁଁ ଘରକୁ ଚାଲିଗଲେ ।

ଶ୍ରୀରାମଚନ୍ଦ୍ର ପିତାମାତାଙ୍କ ସେବାରେ ଦିନ କଟାଇ ଅଯୋଧ୍ୟାରେ ସୀତାଙ୍କ ସହିତ ବିହାର କଲେ । ସେ ସୀତାଙ୍କୁ ଅତି ଭଲ ପାଉଥିଲେ । ତେଣୁ ପ୍ରତିଦିନ ସେ ସୀତାଙ୍କ ଠାରେ ନୂତନ ଆକର୍ଷଣୀୟ ସୌନ୍ଦର୍ଯ୍ୟ ଦେଖିବାକୁ ପାଇଲେ । ତେଣୁ ତାଙ୍କ ପ୍ରତି ଶ୍ରୀରାମଙ୍କ ଅନୁରାଗ ବଢ଼ିବାକୁ ଲାଗିଲା । ସୀତା ମଧ୍ୟ ନିଜର ସର୍ବସ୍ୱ ଶ୍ରୀରାମଙ୍କଠାରେ ଅର୍ପଣ କରିଥିଲେ । ନୀର ଓ କ୍ଷୀରର ସମ୍ପର୍କ ପରି ତାଙ୍କର ସମ୍ପର୍କ ବଢ଼ିବାକୁ ଲାଗିଲା । ସେ ସବୁବେଳେ ଶ୍ରୀରାମଙ୍କ ଦୁଃଖ ସୁଖରେ ନିଜକୁ ଏକାକାର କରି ଦେଉଥିଲେ । ଉଭୟ ଆନନ୍ଦ ତଥା ଅନୁରାଗରେ ପ୍ରେମମୟ ହୋଇ ଉଠିଲେ । ମାତା କୌଶଲ୍ୟା ସୀତାରାମଙ୍କୁ ଦେଖି ଆନନ୍ଦରେ ବିଭୋର ହେଉଥିଲେ । ସେ ନିନ୍ଦକ ଦଳରେ ସାମାନ୍ୟ

ବିରସ ବଦନ ଦେଖିଲେ । ସେ ଅଧୀର ହୋଇ ଉଠି, ତାଙ୍କ ମୁଖରେ ହସ ଉକୁଟାଇବା ଲାଗି ଚେଷ୍ଟା କରୁଥିଲେ । ଏହା ମଧ୍ୟରେ ଶ୍ରୀରାମ କୈଶୋରାବସ୍ଥା ପାର ହୋଇ ଯୌବନରେ ପଦାର୍ପଣ କଲେ ।

ଥରେ ମହାରାଜା ଦଶରଥ ରାଜସଭାରେ ବସିଥିଲେ । ଶ୍ରୀରାମ ମଧ୍ୟ ତାଙ୍କ ଆଗରେ ଉପସ୍ଥିତ ଥିଲେ । ହଠାତ୍ ଗୋଟିଏ ବସ୍ତୁ ଆଣିବା ଲାଗି ମହାରାଜ ହାତ ବଢ଼ାଇଲେ । ସେହି ବସ୍ତୁଟି ତାଙ୍କ ହାତରୁ ଖସି ପଡ଼ିଲା । ତେଣୁ ସେ ସଭାସଦମାନଙ୍କୁ ସମ୍ବୋଧନ କରି କହିଲେ —"ଆପଣମାନେ ଦେଖିଲେ, ମୁଁ ଗୋଟିଏ ସାମାନ୍ୟ ବସ୍ତୁକୁ ହାତରେ ଉଠାଇ ପାରୁ ନାହିଁ । ତେଣୁ ଏତେ ବଡ଼ ରାଜ୍ୟର ବୋଝ ମୁଁ କିପରି ଉଠାଇବି ? ତେଣୁ ଭାବୁଛି—ଶ୍ରୀରାମ ହାତରେ ରାଜ୍ୟଭାର ଲଦି ଦେଇ ମୁଁ ତପସ୍ୟା କରିବା ଲାଗି ବଣକୁ ବାହାରିବି ।"

ଏହାପରେ ସେ ସଭାସଦଙ୍କୁ ସମ୍ବୋଧନ କରି କହିଲେ—"ମୋ ସିଦ୍ଧାନ୍ତ ଶୁଣି ଆପଣମାନେ କ'ଣ ବିଚାର କରୁଛନ୍ତି ?"

ସଭାସଦଗଣ ରାଜାଙ୍କ ବିଚାର ଶୁଣି ଆନନ୍ଦରେ ଅଧୀର ହୋଇଗଲେ । ସେମାନେ ଶ୍ରୀରାମଙ୍କୁ ସିଂହାସନରେ ଦେଖିବା ଲାଗି ମନେ ମନେ ବିଚାର କରୁଥିଲେ । ତେଣୁ ଏକସ୍ୱରରେ ସେମାନେ ରାଜାଙ୍କ ପ୍ରସ୍ତାବକୁ ସ୍ୱାଗତ ଜଣାଇଲେ ।

ଏହାଶୁଣି ରାଜା ମନେ ମନେ ଆନନ୍ଦିତ ହୋଇ ଉଠିଲେ । ସେ କେବଳ ଉପରକୁ ମୁହଁ ଦେଖାଇ କହିଲେ —"ସଭାସଦଗଣ ଆପଣମାନେ ମୋ' ଶାସନରେ ଅସନ୍ତୁଷ୍ଟ ବୋଲି ଅନୁଭବ କରୁଛନ୍ତି । ମୁଁ ସାରା ଜୀବନ ପ୍ରଜାମାନଙ୍କୁ ପୁତ୍ରପରି ପାଳନ କରିଛି । ଧର୍ମ ପୂର୍ବକ ପ୍ରଜାମାନଙ୍କଠାରୁ କର ଆଦାୟ କରିଛି । ଶତ୍ରୁମାନଙ୍କୁ ସଂହାର କରି ରାଜ୍ୟର ସୀମା ସୁରକ୍ଷିତ ରଖିଛି । ତଥାପି ସିଂହାସନ ଛାଡ଼ି ଦେବା ଲାଗି ମୁଁ ପ୍ରସ୍ତାବ ଦେବା ମାତ୍ରେ ଆପଣମାନେ ଏତେ ଆନନ୍ଦିତ ହେଉଛନ୍ତି କାହିଁକି ?

ଏହାଶୁଣି ସମସ୍ତେ ମନେ ମନେ ଭୟଭୀତ ହୋଇ ଉଠିଲେ । ସେମାନେ କ'ଣ ଉତ୍ତର ଦେବେ ଆଦୌ ଚିନ୍ତା କରି ପାରିଲେ ନାହିଁ । ଏହି ସମୟରେ ଜଣେ ବୁଦ୍ଧିମାନ୍ ବ୍ରାହ୍ମଣ ସାହସର ସହିତ ଉତ୍ତର ଦେଲେ—"ମହାରାଜ, ଆମେମାନେ ଆପଣଙ୍କୁ ସିଂହାସନରୁ ଓହ୍ଲାଇ ଦେବାକୁ ଚାହୁଁ ନାହୁଁ, କେବଳ ପୁଣି ଥରେ ଆପଣଙ୍କୁ ନୂତନ ରୂପରେ ଅଭିଷେକ କରିବା ଲାଗି ଚାହୁଁଛୁ । ବେଦ ବଚନ ହେଉଛି ପୁତ୍ର ଆତ୍ମାର ଅନ୍ୟରୂପ । ପୁରୁଷ ସ୍ତ୍ରୀର ଗର୍ଭରେ ସ୍ପର୍ଶ ଆଧାନ କରି ସ୍ୱୟଂ

ତା' ଉଦରରୁ ଅନ୍ନପ୍ରକାଶ କରେ । ସେଇଥିପାଇଁ ସ୍ତ୍ରୀର ନାମ 'ଜାୟା' । ସେହି ନ୍ୟାୟରେ ଶ୍ରୀରାମ ଆପଣଙ୍କଠାରୁ ପୃଥକ୍ ନୁହନ୍ତି । ତେଣୁ ଜଣକୁ ଓହ୍ଲାଇ ଦେଇ ଅନ୍ୟ ଜଣକୁ ସିଂହାସନରେ ବସାଇବାର ପ୍ରଶ୍ନ ଉଠୁଛି କୁଆଡ଼ୁ ?

ଏହାଶୁଣି ରାଜା ଦଶରଥ ଖୁସି ହୁସି ଗୁରୁ ବଶିଷ୍ଠଙ୍କ ମତାମତ ଜାଣିବା ପାଇଁ ଇଚ୍ଛା ପ୍ରକାଶ କଲେ । ତହୁଁ ବଶିଷ୍ଠ କହିଲେ—"ମହାରାଜ, ଆପଣ ଉତ୍ତମ ପ୍ରସ୍ତାବ ଦେଇଛନ୍ତି । ତା' ଫଳରେ ପ୍ରଜାମାନଙ୍କର କଲ୍ୟାଣ ହେବ । ଦେବଗଣ ସନ୍ତୁଷ୍ଟ ହେବେ ଏବଂ ମାତା ଧରିତ୍ରୀଙ୍କ ଭାର ଲଘୁ ହୋଇ ଯିବ ।"

ଏହାଶୁଣି ରାଜା ଦଶରଥ ସହର୍ଷରେ ଶୁଭ ମୁହୂର୍ତ୍ତ ବାଛିବା ପାଇଁ ମୁନିଙ୍କୁ ଅନୁରୋଧ କଲେ । ମୁନି ଶାସ୍ତ୍ର ଅନୁସାରେ ଗଣନା କରି କହିଲେ—"ମହାରାଜ, ଆସନ୍ତା କାଲି ଗୋଟିଏ ଶୁଭଲଗ୍ନ ରହିଛି । ଏଭଳି ମୁହୂର୍ତ୍ତ ଆଗାମୀ ସାତବର୍ଷ ଛଅମାସ ମଧ୍ୟରେ ମିଳିବ ନାହିଁ । ତେଣୁ ଆପଣ କାଲି ଶ୍ରୀରାମଙ୍କ ରାଜ୍ୟାଭିଷେକ ସମ୍ପନ୍ନ କରାଇ ଦିଅନ୍ତୁ ।"

ଏହାଶୁଣି ରାଜା ଦଶରଥ କହିଲେ—"ରାଜାମାନଙ୍କୁ ନିମନ୍ତ୍ରଣ ପଠାଯିବ । ପୁଣି ଭରତ ଶତ୍ରୁଘ୍ନ ଏଠାରେ ନାହାନ୍ତି । ତା'ପରେ ମଧ୍ୟ ଆହୁରି ଅନେକ ଆୟୋଜନ କରିବାର ରହିଛି । ଏତେ ଶୀଘ୍ର ଏହା ସମ୍ଭବ ହେବ କିପରି ?"

ଏହାର ଉତ୍ତର ଦେଇ ମୁନି ବଶିଷ୍ଠ କହିଲେ—"ମହାରାଜ, ଆପଣ ବର୍ତ୍ତମାନ ଉତ୍ସବଟିକୁ ସାଧାରଣ ଭାବରେ ସମ୍ପନ୍ନ କରାଇ ଦିଅନ୍ତୁ । ପରେ ଆଡ଼ମ୍ବର ସହକାରେ ତାହା ପାଳନ କରିବେ । ଆଉ ଏପରି ଶୁଭ ଅବସର ଏହା ମଧ୍ୟରେ ମିଳିବ ନାହିଁ ।"

ଏଥିରେ ରାଜା ପରମ ପ୍ରୀତ ହୋଇ କହିଲେ—"ଆପଣ ଠିକ୍ କହୁଛନ୍ତି । କାରଣ, ଶୁଭ କାର୍ଯ୍ୟରେ ଆଦୌ ବିଳମ୍ବ ହେବା ଉଚିତ ନୁହେଁ । ମୁଁ କୈକେୟୀଙ୍କୁ ବିବାହ କରିବା ସମୟରେ ତାଙ୍କ ପିତା କହିଥିଲେ—ମୋ' କନ୍ୟାର ପୁଅ ଅଯୋଧ୍ୟାରେ ରାଜା ହେବ । ମୁଁ ମଧ୍ୟ ତାହା ସ୍ୱୀକାର କରିଥିଲି । ସେ କଥା ଉପରେ ମୁଁ ଆଉ ଗୁରୁତ୍ୱ ଦେଉ ନାହିଁ । ଭରତ ଶ୍ରୀରାମଙ୍କୁ ଅଧିକ ଶ୍ରଦ୍ଧା ଓ ସମ୍ମାନ କରେ । ବଡ଼ଭାଇ ଥାଉଁ ଥାଉଁ ସେ ରାଜସିଂହାସନରେ ବସିବାକୁ କେବେ ହେଲେ ରାଜି ହେବ ନାହିଁ । ତା'ପରେ ପ୍ରଜାମାନେ ମଧ୍ୟ ଶ୍ରୀରାମଙ୍କୁ ଚାହାନ୍ତି । ଶ୍ରୀରାମ ଅଯୋଧ୍ୟାର ସିଂହାସନରେ ଅଧିଷ୍ଠିତ ହେଲେ, ପ୍ରଜାମାନେ ସନ୍ତୁଷ୍ଟ ହେବା ସଙ୍ଗେ ସଙ୍ଗେ ଶତ୍ରୁମାନଙ୍କ ମନରେ ଭୟଜାତ ହେବ । ତେଣୁ ଏ କାର୍ଯ୍ୟ ଅବିଳମ୍ବେ ସାଧିତ ହେବା ଉଚିତ ।"

ରାଜା ଦଶରଥ ଅଭିଷେକର ଆୟୋଜନ କରିବା ଲାଗି ପାତ୍ର ମନ୍ତ୍ରୀମାନଙ୍କୁ ଆଦେଶ ଦେଲେ । ରାଜ୍ୟର ଆବାଳବୃଦ୍ଧବନିତା ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ । ମୁନି ବଶିଷ୍ଠ ସୀତାରାମଙ୍କୁ ବ୍ରତ ପାଳନର ବିଧିବିଧାନ ବତାଇ ଦେଲେ । ସୀତା ଦେବୀ ଏହା ଶୁଣି ଆନନ୍ଦରେ ଅଧୀର ହୋଇ ଯାଇ କହିଲେ—"ପ୍ରାଣେଶ୍ୱର, ରାତି ପାହିଲେ ଆପଣ ସିଂହାସନରେ ବିରାଜମାନ କରିବେ । ଆପଣଙ୍କ ଶିରରେ ମୁକ୍ତାଛତ୍ର ଶୋଭା ପାଇବ ଏବଂ ସହସ୍ର ଦାସଦାସୀ ଚାମର ଚାଳନା କରି ଆପଣଙ୍କୁ ଶୀତଳତା ପ୍ରଦାନ କରିବେ । ଏହା କେଡ଼େ ଆନନ୍ଦର କଥା ନ ହେବ ?"

ଏହା ଶୁଣି ଶ୍ରୀରାମ କିଛିଏ ଗମ୍ଭୀର ହୋଇ ଯାଇ କହିଲେ—"ପ୍ରିୟେ, କାଲି ଆସୁ ଦେଖିବା । ଭବିଷ୍ୟତ ବିଷୟରେ ଆଗରୁ କିଛି କହିବା ଆଦୌ ସମ୍ଭବ ନୁହେଁ । ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ।"

ସୀତା ମୃଦୁ ପ୍ରତିବାଦ କରି କହିଲେ—ପ୍ରିୟତମ, ମହାରାଜ ଧର୍ମପ୍ରାଣ ତଥା ସତ୍ୟନିଷ୍ଠ ବ୍ୟକ୍ତି । ତା'ପରେ ପୁଣି ବଶିଷ୍ଠଙ୍କ ପରି ମୁନି ବ୍ରତପାଳନ କରିବାକୁ କହି ଗଲେଣି, ସେପରି ସ୍ଥଳେ ଆଉ ସନ୍ଦେହର ଅବକାଶ ରହିଲା କେଉଁଠି ?"

ଶ୍ରୀରାମ କହିଲେ—"ଭଦ୍ରେ, ସମସ୍ତ ସବୁଠାରୁ ଅଧିକ ବଳବାନ୍ । କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ସାରିଲେ, ତା ହେଲା ବୋଲି ଜାଣିବ । ଆମେ ଅବଶ୍ୟ ଗୁରୁଦେବଙ୍କ ଆଜ୍ଞାନୁସାରେ ଆଜି ବ୍ରତ ପାଳନ କରିବା ।"

ଏହା କହି ଦୁହେଁ ବ୍ରତ ପାଳନ କଲେ ଏବଂ ମାତାଙ୍କୁ ପ୍ରଣାମ କରିବା ଲାଗି କୌଶଲ୍ୟାଙ୍କ ପ୍ରାସାଦକୁ ଗଲେ । କୌଶଲ୍ୟା ପୂର୍ବରୁ ଲକ୍ଷ୍ମଣଙ୍କ ମୁଖରୁ ଏ ଶୁଭ ସମ୍ବାଦ ଶୁଣି ସାରିଥିଲେ । ତେଣୁ ମାତା କୌଶଲ୍ୟା ନିଜ ସଞ୍ଚିତ ଧନରୁ ଦାନ କରି ପରମ ପ୍ରୀତ ହୋଇଥିଲେ । ଯିଏ ଯାହା ପ୍ରାର୍ଥନା କଲା, ମାତା କୌଶଲ୍ୟା ତା'ର ମନ ତୁଷ୍ଟ କରି ଦାନ ଦେବାକୁ ଲାଗିଲେ । ସୀତାରାମ କୌଶଲ୍ୟାଙ୍କ ପାଖରେ ପହଞ୍ଚିବା ବେଳକୁ ତାଙ୍କର ନେତ୍ର ଆନନ୍ଦରେ ବାଷ୍ପାଶ୍ରିତ ହୋଇ ଯାଇଥିଲା । ରାମ ସୀତା ଦୁହେଁ ମାତାଙ୍କୁ ପ୍ରଣାମ କରି ତାଙ୍କଠାରୁ ଆଶୀର୍ବାଦ ଗ୍ରହଣ କଲେ । ସେ ଅନେକ ଧନରତ୍ନ ପୁଅ ବୋହୂଙ୍କୁ ଛୁଆଁଇ ସେବକ ସେବିକା ମଧ୍ୟରେ ବିତରଣ କରି ଦେଲେ ।

ଏହି ସମୟରେ ମନ୍ଥରା ଦାସୀ କୌଶଲ୍ୟାଙ୍କ ଦାସୀଙ୍କୁ ପଚାରି ଶ୍ରୀରାମଙ୍କ ରାଜ୍ୟାଭିଷେକ ସମ୍ବନ୍ଧରେ ସବୁକଥା ଜାଣିଗଲା । ଏହା ଶୁଣିବା ମାତ୍ରେ ତା'ର ଦେହ ଜଳିଗଲା । ସେ କୈକେୟୀଙ୍କ ନିକଟରେ ଉପସ୍ଥିତ ହୋଇ କହିଲା—"ମହାରାଣି, ତୁମେ କିଛି ଶୁଣିଛ ?"

ସେ କହିଲେ—"ନାଃ, ମୁଁ ତ କିଛି ଶୁଣି ନାହିଁ !

ମନ୍ଥରା ନିତାନ୍ତ ବ୍ୟସ୍ତ ହୋଇ କହିଲା—"ତୁମେ ଶୁଣି ନାହଁ ? କାଲି ସକାଳୁ ଶ୍ରୀରାମଙ୍କର ରାଜ୍ୟାଭିଷେକ ହେବ !"

ଏତକ ଶୁଣିବା ମାତ୍ରେ କୈକେୟୀ ଆନନ୍ଦରେ ଅଧିର ହୋଇ ନିଜ ଗଳାରୁ ମଣିମୟ ହାର ବାହାର କରି କହିଲେ—"ନେଃ ·····, ଏହି ଆନନ୍ଦରେ ମୁଁ ତୋତେ ଏ ହାରଟି ଉପହାର ଦେଉଛି ।"

ମନ୍ଥରା ଟିକିଏ ଘୁଞ୍ଚି ଯାଇ କହିଲା—"ତୁମେ ଏ ସମ୍ବାଦ ଶୁଣି ଆନନ୍ଦିତା ହୋଇ ପାରୁଛ ? ମୋର ହୃଦୟ ଏ ସମ୍ବାଦରେ ଜଳି ଯାଉଛି ।"

ମାତା କୈକେୟୀ କହିଲେ—"ପୋଡ଼ା ମୁହଁ ତୁ ଏ କ'ଣ କରୁଛୁ ? "ଶ୍ରୀରାମର ମଙ୍ଗଳ କାମନାରେ ଏ ପୁରର ଗଛ ପଥର ମଧ୍ୟ ଆନନ୍ଦିତ ହେଉଛି, ଅଥଚ ତୋ ହୃଦୟ ଜଳି ଯାଉଛି । ଶ୍ରୀରାମର ରାଜ୍ୟାଭିଷେକ ସମ୍ବାଦ ଶୁଣି କିଏ ଅବା ସୁଖି ନ ହେବ ଯେ ? ଏଥିରେ ତୋ ହୃଦୟ ଜଳି ଯିବାର କାରଣ କ'ଣ ?

ମନ୍ଥରା ଆଖିରୁ ଲୁହ ଗଡ଼ାଇ କହିଲା—"ମୋ' ଦୁଃଖର କାରଣ ମୁଁ ପୁଣି ମୁହଁ ଖୋଲି କହିବ ? ହେଉ ···· ଶୁଣ ! ଆଜି ପର୍ଯ୍ୟନ୍ତ ମୁ ମହାରାଣୀଙ୍କର ଦାସୀ ଥିଲି । କାଲିଠାରୁ ଜଣେ ଦାସୀ ହୋଇ ରହିବ ! ରାମ ରାଜା ହେବା ପରେ ଭରତ ହେବ ତା'ର ଦାସ ।"

"ଏଥିରେ କ୍ଷତି କ'ଣ ? ସାନ ଭାଇ ବଡ଼ ଭାଇର ଦାସ ନ ହେବ ତ ଆଉ କ'ଣ ହେବ ? ଭରତ ମହାରାଜାଙ୍କ ଅପେକ୍ଷା ଶ୍ରୀରାମକୁ ବେଶୀ ଆଦର କରେ ।"

ମନ୍ଥରା ବିଷ ଉଦ୍‌ଗାର କରି କହିଲା –"ତୁମର କ'ଣ ଅଛି ? ତୁମେ ଭାବୁଛ, ମହାରାଜ ତୁମକୁ ସବୁ ରାଣୀଙ୍କଠାରୁ ଅଧିକ ଭଲ ପାଆନ୍ତି । ସେଥିରେ ତୁମେ ବେଶ୍ ମଶ୍‌ଗୁଲ ହୋଇ ରହିଛ । କିନ୍ତୁ ଜାଣିଛ କି, ସେଇ ଭଲ ପାଇବା ମୂଳରେ କେତେ କ'ଣ କୂଟ କପଟ ପୂରି ରହିଛି । ମହାରାଜା ସବୁଠାରୁ ବେଶୀ ଭଲ ପାଆନ୍ତି କୌଶଲ୍ୟାଙ୍କୁ । ତମକୁ କେବଳ ଭୁଲାଇ ରଖିବା ପାଇଁ ଆଜି ସୁଦ୍ଧା ମହାରାଜ କେବଳ କୌଶଳ ଅବଲମ୍ବନ କରିଆସିଛନ୍ତି । ତୁମେ କ'ଣ ଜାଣିଛ, ଯେ, କୌଶଲ୍ୟା ଓ ମହାରାଜ ଗୋଟିଏ ଷଡ଼ଯନ୍ତ୍ର ତୁମ ବିରୁଦ୍ଧରେ କରିଛନ୍ତି !

କୈକେୟୀ ଖୁବ୍ ରାଗି ଯାଇ କହିଲେ—"ମନ୍ଥରା, ତୋତେ ମୁଁ ବେଶୀ ଭଲ ପାଏ ବୋଲି, ତୋର ମୁହଁ ବଢ଼ିଯାଉଛି । ତୁ ମୋ' ମାଆଙ୍କର ପୁରୁଣା ଦାସୀ

ରାବରେ ମୁଁ ତୋତେ ସ୍ନେହ ଓ ଆଦର କରି ଆସିଛୁ । କିନ୍ତୁ ତୁ ସେଇ ବଦଳରେ ମୋ ସ୍ୱାମୀ ଓ ତାଆଙ୍କ ବିରୁଦ୍ଧରେ ମୁହଁ ଖୋଲିବାକୁ ଲାଗିଲୁଣି । ଦେଖ, ତୁ ଆଉ ଯଦି ପଦେ ହେଲେ ଏମିତି କଥା କହିବୁ ମୁଁ ତୋ' ଜିଭ ଉପାଡ଼ି ଦେବି !"

ମନ୍ଥରା ପୂର୍ବପରି କହି ଚାଲିଲା—"ତୁମେ ମୋ' ଜିଭ ଉପାଡ଼ି ଦିଅ କିମ୍ବା ଆଖି ତାଡ଼ି ଦିଅ, ମୁଁ କିନ୍ତୁ ସତ କଥା ନ କହି ରହି ପାରିବି ନାହିଁ । ତୁମେ କିପରି ଭୁଲି ଯାଉଛ ଯେ, ଏ ସିଂହାସନରେ ଏକମାତ୍ର ଅଧିକାରୀ ହେଉଛି ଭରତ । ବିବାହ ସମୟରେ ତୁମ ପିତାଙ୍କୁ ମହାରାଜ ଏହି ପ୍ରତିଶ୍ରୁତି ଦେଇ-ଥିଲେ । ସମସ୍ତେ ଏ କଥା ଜାଣନ୍ତି ! ମହାରାଜ ସେହି ପ୍ରତିଜ୍ଞାକୁ ଆଡ଼େଇ ଦେଇ, ଏବେ ଶ୍ରୀରାମଙ୍କୁ ସିଂହାସନ ଦାନ କରୁଛନ୍ତି । କାଳେ ଭରତ ଏଥିରେ ପ୍ରତିବାଦ କରି ଅସଲ କଥାଟିକୁ ପଦାରେ ପକାଇ ଦେବ, ସେଥିଲାଗି ମହାରାଜ ଜାଣିଶୁଣି ତାକୁ ମାମୁଁ ଘରକୁ ପଠାଇ ଦେଇଛନ୍ତି । ତା'ପରେ ଆଉ ଗୋଟିଏ କଥା ତୁମେ ବିଚାର କର— ଘରେ ସାମାନ୍ୟ ପୂଜା ପାର୍ବଣଟିଏ ହେଲେ ଲୋକ କରି ନିଜ ପରିବାରର ଲୋକଙ୍କୁ ବିଦେଶରୁ ଡକାଇ ଆଣନ୍ତି । ଘରେ ଏଡ଼େ ବଡ଼ ଉତ୍ସବ, ଅଥଚ ଭରତ ଟିକିଏ ହେଲେ ଖବର ପାଇଲା ନାହିଁ ? ଏହା ମହାରାଜାଙ୍କର ଗୋଟିଏ ମସ୍ତବଡ଼ ଷଡ଼ଯନ୍ତ୍ର ନୁହେଁ ତ ଆଉ କ'ଣ ? ତୁମେ କେଉଁଠୁ ଜାଣିବ ଯେ, କୌଶଲ୍ୟା ତୁମ ଉପରେ କେତେ ଅସନ୍ତୁଷ୍ଟ ? କେବଳ ଏଇ କାମଟି ହାସଲ କରାଇ ନେବା ପର୍ଯ୍ୟନ୍ତ, ସେ ତୁମ ମନ ନେଇ ଚାଲୁଛନ୍ତି । କାଲି ରାମର ଅଭିଷେକ ସରିଯାଉ, ତୁମେ ଦେଖିବ, ତୁମର ଦଶା କ'ଣ ହେବ ! ସେ ମହାରାଜଙ୍କୁ ଶିଖାଇ ବୁଝାଇ ହାତ କରି ରଖିଛନ୍ତି । ଉପରକୁ କେବଳ ମହାରାଜ ତୁମକୁ ସ୍ନେହ ଓ ଶ୍ରଦ୍ଧା କରୁଛନ୍ତି । ଉପରେ ଉପରେ ପାଣି ସିଞ୍ଚି ଭିତରେ ଭିତରେ ମହାରାଜା ତୁମ ଗଳାରେ ଛୁରୀ ଚଳାଉଛନ୍ତି । କାଲିଠାରୁ ତୁମେ ହେବ, କୌଶଲ୍ୟାର ଦାସୀ । ଟିକିଏ କରି ମୁହଁ ଖୋଲିଲେ, ମହାରାଜ ତୁମକୁ କାରାଗାରରେ ବନ୍ଦିନୀ କରି ରଖିଦେବେ । ଭରତ ରାଜ୍ୟରେ ଗୋଟିଏ ସାଧାରଣ ସେବକ ହୋଇ କାମ କରିବ । ତା'ପରେ ସେ ଯଦି କିଛି ଆପତ୍ତି ଅଭିଯୋଗ କରିବ, ତେବେ ତା' ଦଶା ମଧ୍ୟ ତୋରି ପରି ହେବ । ବୃଦ୍ଧ କାଳରେ କାନ୍ଦି କାନ୍ଦି ତୁମ ଆଖିରୁ ଲୁହ ଶୁଖିବ ନାହିଁ । ଶ୍ରୀରାମଙ୍କ ପରେ ତା'ର ପୁତ୍ର ପୌତ୍ର ଆଦି ରାଜା ହେବେ । ମୋର କଣ ଅଛି ? ମୁଁ ଆଜି ଏଠାରେ ଚାକିରି କରୁଛି, କାଲି ଆଉ କେଉଁଠି ଯାଇ ପୋଇଲି ହେବି । କିଛି ନହେଲେ କୌଶଲ୍ୟାଙ୍କ ଗୋଡ଼ ଘଷି ଦିନ କାଟିନେବି । ମୁଁ ତ ଆଉ ରାଣୀ ହୋଇ ଯିବି ନାହିଁ । ଯେଉଁ ଦାସୀକୁ ସେହି ଦାସୀ ହୋଇ ରହିବି । କିନ୍ତୁ ମନେ ରଖ, ତୁମକୁ ମହାରାଣୀରୁ ଦାସୀ ହେବାକୁ ପଡ଼ିବ । ବାଜା ବଜାଇ ହରିଣକୁ ଜାଲରେ ପକାଇଲା ପରି ତୁମକୁ ଫାନ୍ଦରେ ପକାଇ

ସାରା ଜୀବନ ହଇରାଣ କରାଯିବ । ମନେରଖ, ତୁମର ସର୍ବସ୍ୱ ଲୁଟ୍‌ପାଟ କରାଯାଉଛି ।”

ଏତିକ କହି ମନ୍ଥରା ସେଠାରୁ ଚାଲି ଯିବାକୁ ଉଦ୍ୟତ ହେବା ମାତ୍ରେ କୈକେୟୀ ତା ନିକଟକୁ ଆଗେଇ ଯାଇ କୋମଳ ସ୍ୱରରେ କହିଲେ—“ଓଃ ମନ୍ଥରା ତୁ ଅନେକ କଥା ଭାବି ପାରୁଛୁ । ମୋ’ ମଗଜରେ ଏତେ ଛନ୍ଦ କପଟ କଥା ପଶେ ନାହିଁ । ମୁଁ ଏବେ ମଧ୍ୟ ତୋ କଥାକୁ ଆଦୌ ବିଶ୍ୱାସ କରି ପାରୁନାହିଁ ।”

ମନ୍ଥରା କୈକେୟୀଙ୍କ କଥାରେ ଗଦ୍ ଗଦ୍ ହୋଇ କହିଲା – “ତୁମେ କାହିଁକି ବିଶ୍ୱାସ କରିବ ? ବର୍ଷ ବର୍ଷ ଆଗରୁ କୌଶଲ୍ୟା ସବୁ, କିଛି ଜାଣି ପାରିଥିଲେ । ସେହି ଦିନରୁ ସେ ଧନ ଦରବ ସଞ୍ଚି ରଖିଛନ୍ତି । ଆଜି ସେହି ଧନ ଦଉଲତ ସବୁ ମନ ଖୁସିରେ ଦାନ ଖଇରାତ କରୁଛନ୍ତି । ଦେଖନ୍ତୁ, ଆସନ୍ତା କାଲି ରାଜ୍ୟାଭିଷେକ, ଅଥଚ ଏ ପର୍ଯ୍ୟନ୍ତ ତୁମକୁ କେହି ଟିକିଏ ହେଲେ ସୂଚନା ଦେଇ ନାହାନ୍ତି କିମ୍ବା ମହାରାଣୀ କୌଶଲ୍ୟା ତୁମକୁ ଟିକିଏ ହେଲେ ଡକାଇ ପଠାଇ ନାହାନ୍ତି । ଏଇଥିରୁ ସେମାନଙ୍କ ଚାଲାକି ତୁମେ ବୁଝି ପାରୁ ନାହଁ !”

ମନ୍ଥରା ଏତିକ କହିସାରି ସକେଇ ହୋଇ କାନ୍ଦି କାନ୍ଦି କହିଲା— “ମହାରାଣୀ, ତୁମକୁ ମୁଁ ନିଜର ଝିଅ ଭଳି ଏଇ କୋଳରେ ବଢ଼ାଇଛି । ସେଇଥିପାଇଁ ତୁମର ଅପମାନ ମୁଁ ସହି ପାରିବି ନାହିଁ । ଶାସ୍ତ୍ର ପୁରାଣରେ ଲେଖା ଅଛି—ଯାର ବେଳକାଳ ଖରାପ ଆସିବାର ଥାଏ, ତାକୁ ଭଲ କଥା ଶୁଣିବାକୁ ଖରାପ ଲାଗେ । ମୁଁ ଭଲକଥା କହିଦେଲି; ତା’ ଯଦି ତୁମକୁ ଭେଲୁ ହେଲା, ହେଉ ! ମୋର ଯାଏ ଆସେ କେତେ ?”

ମନ୍ଥରାର ମନ୍ତ୍ର ବେଶ୍ କାଟ୍‌କଲା । ତା’ର ବପବୋଲା କଥାରେ ଏତେ ବଡ଼ ରାଜ୍ୟର ମହାରାଣୀ ଘଡ଼ିକ ମଧ୍ୟରେ ଭଲି ଗଲେ । ମନ୍ଥରାର ମନ୍ଥୁଡ଼ୀ କଥାରେ କୈକେୟୀ ରାଗରେ ଜଳି ଉଠି କହିଲେ—“ମୁଁ ପ୍ରତିଜ୍ଞା କରି କହୁଛି—କେବେ ହେଲେ ରାମକୁ ଏ ସାମ୍ରାଜ୍ୟର ମହାରାଜା କରାଇ ଦେବି ନାହିଁ । ଯାହା ହେଉ ପଛକେ, ମୁଁ ଭରତକୁ ଏହି ସିଂହାସନରେ ଅଭିଷିକ୍ତ କରାଇବି । ମୁଁ ନିଜେ ରାଜମାତା ହୋଇ କୌଶଲ୍ୟାକୁ ଦାସୀ ପରି ଖଟାଇବି । ଯଦି ଏହା ସମ୍ଭବ ନ ହୁଏ, ତେବେ ବିଷଖାଇ ଆତ୍ମହତ୍ୟା କରିଦେବି !”

ସେ ମନ୍ଥରାକୁ ପାଖରେ ବସାଇ କୋମଳ ସ୍ୱରରେ କହିଲେ—“ଏ ରାଜଭବନରେ ମୋର ସମସ୍ତେ ଶତ୍ରୁ । ଲୁଚି ଲୁଚି ସମସ୍ତେ ମୋ’ ବିରୁଦ୍ଧରେ ଚକ୍ରାନ୍ତ ଚଲାଇଛନ୍ତି । ସେମାନଙ୍କ କାରସାଦି ମୋ’ ଦାସ ଦାସୀମାନେ ମଧ୍ୟ ଜାଣିପାରୁ

ନାହାନ୍ତି । ମୋର ମନେ ହୁଏ—ଏମାନେ ସମସ୍ତେ କୌଶଲ୍ୟା ସହିତ ହାତ ମିଳାଇଛନ୍ତି । ଗୁପ୍ତ ଖବରରେ ସମସ୍ତେ କୌଶଲ୍ୟାଠାରୁ ଧନ ପାଉଛନ୍ତି । ଅସଲ ସମୟରେ ମୋ ପୁଅକୁ ଏଠାରୁ ଦୂରେଇ ରଖା ଯାଇଛି । ମୋ ସ୍ୱାମୀ ମଧ୍ୟ ମିଛି ମିଛିକା ମୋ' ସହିତ ପ୍ରେମର ସୁଆଙ୍ଗ ଲଗାଇଛନ୍ତି । ମୋ' ସୌନ୍ଦର୍ଯ୍ୟ ପ୍ରତି ସମସ୍ତେ ଈର୍ଷା କରୁଛନ୍ତି । ମନ୍ଥରା, ତୁ ମୋତେ ଭଲ ବୁଦ୍ଧି ଠିକ୍ ବେଳରେ ଦେଇଛୁ । ନୋହିଲେ ମୋ' ଭେଲା ବୁଡ଼ି ଯାଇଥାଆନ୍ତା ! ଏବେ ତୁ ବୁଦ୍ଧି ବାଟ ବତାଇ ଦେଇ, ମୋତେ ଏ' ବିପଦରୁ ଉଦ୍ଧାର କର ! ବର୍ତ୍ତମାନ କେବଳ ଦୁଇଟି କଥା—କାଲି ରାଜ୍ୟାଭିଷେକ କିପରି ବନ୍ଦ ହେବ ଏବଂ ଭରତ କିପରି ରାଜସିଂହାସନରେ ବସିବ ।"

ମନ୍ଥରା ମନେ ମନେ ଖୁବ୍ ପ୍ରସନ୍ନ ହୋଇ କହିଲା—"ଏ ସିଂହାସନ ପ୍ରକୃତରେ ଭରତ ପାଇବା କଥା ·· !"

"ସତ କହୁଛୁ ଯେ, କିନ୍ତୁ ମୋ କଥା ଶୁଣିବ କିଏ ? ରାଜମହଲରେ ସମସ୍ତେ ମୋର ଶତ୍ରୁ । ଏବେ କୌଶଲ୍ୟା ପଟେ ସମସ୍ତେ ହୋଇ ଗଲେଣି । ମୁଁ ବିଚାରୀ ଅନାଥିନୀ, ମୋ' ପୁଅ ମଧ୍ୟ ଏତେବେଳେ ଏଠାରେ ନାହିଁ । ମୁଁ କରିବି କଅଣ !"

କୈକେୟୀଙ୍କ ମନରେ ବିଶ୍ୱାସ ଜନ୍ମାଇ ମନ୍ଥରା କହିଲା—"ପରିଚିନ୍ତା କରିବାରେ କିଛି ଲାଭ ନାହିଁ । ବୁଦ୍ଧି ବଳରେ ସବୁକାମ ହାସଲ କରି ହେବ । କିନ୍ତୁ ତୁମେ ଯଦି ମହାରାଜାଙ୍କ ମିଠା କଥାରେ ଭୁଲିଯିବ, ତେବେ ସବୁ ବିଗିଡ଼ି ଯିବ । ମୋର ବିଶ୍ୱାସ ତୁମେ ସେପରି ଭୁଲକାରେ କାମ କରି ପାରିବ ନାହିଁ ।"

କୈକେୟୀ ଦୃଢ଼ତାର ସହିତ କହିଲେ—"ମୁଁ ଥରେ ବୁଦ୍ଧି ହରାଇ ସାରିଛି । ଆଉ ସେପରି କରିବି ନାହିଁ । ଏଥର ମୁଁ ସାବଧାନ ହୋଇ ଗଲିଣି । ଏଣିକି ପୂର୍ବର ସୂର୍ଯ୍ୟ ପଶ୍ଚିମରେ ଉଦୟ ହେଲେ ମଧ୍ୟ ମୁଁ ମହାରାଜାଙ୍କ କଥାରେ ଆଦୌ ଭୁଲି ଯିବି ନାହିଁ । ଭରତକୁ ରାଜସିଂହାସନରେ ନ ବସାଇଲେ ମୁଁ ଜଳ ଗ୍ରହଣ କରିବି ନାହିଁ । କେବଳ ସେତିକି ନୁହେଁ, ଭରତକୁ ନିଷ୍କଣ୍ଟକ କରିବା ପାଇଁ ମୁଁ ରାମକୁ ଉଚିତ ଦଣ୍ଡ ଦେଇ ବନବାସକୁ ପଠାଇ ଦେବି । ଏହା ମୋର ଅଟଳ ପ୍ରତିଜ୍ଞା !"

ମନ୍ଥରା କୈକେୟୀଙ୍କର ପ୍ରତିଜ୍ଞା ଶୁଣି ମନେ ମନେ ଆନନ୍ଦିତା ହୋଇ ମହାରାଣୀଙ୍କୁ କୋପଭବନରେ ପଶି ମହାରାଜାଙ୍କଠାରୁ ଦାବୀ ହାସଲ କରିବା ପାଇଁ ପ୍ରବର୍ତ୍ତାଇଲା । ତାହାର କଥା ଅନୁସାରେ କୈକେୟୀ କୋପଭବନରେ ପ୍ରବେଶ କରି ଭୂଇଁରେ ଶୋଇ ପଡ଼ିଲେ ।

ସେଦିନ ମହାରାଜା ଦଶରଥ ଅତ୍ୟନ୍ତ ବ୍ୟସ୍ତ ଥିଲେ । ସେ ରାତି ଅର୍ଦ୍ଧ ପର୍ଯ୍ୟନ୍ତ ରାଜକାର୍ଯ୍ୟରେ ବ୍ୟସ୍ତ ରହି ଶେଷରେ ଅନ୍ତଃପୁରରେ ପ୍ରବେଶ କଲେ । ସେ କୈକେୟୀଙ୍କ ସୌନ୍ଦର୍ଯ୍ୟରେ ବିମୁଗ୍ଧ ଥିଲେ । ତେଣୁ କୈକେୟୀଙ୍କ ମହଲରେ ପ୍ରବେଶ କରି, ଘରଆଡ଼ ଅନ୍ଧକାର ହୋଇଥିବାର ଦେଖି ମନେ ମନେ ଆତଙ୍କିତ ହୋଇ ଉଠିଲେ । ସେ ବ୍ୟସ୍ତ ହୋଇ ଗୋଟିଏ ଦାସୀକୁ ପଚାରିଲେ—"ମହାରାଣୀ କାହାନ୍ତି ?"

ପରିଚାରିକା ଧୀରେ ବିନୀତ ଭାବରେ କହିଲା—"ମହାରାଜ, ଆଜି ଦି'ପହରୁ ବେଳୁ ମହାରାଣୀ କୋପଭବନରେ ପଶି ଭୂମିରେ ଶୋଇଛନ୍ତି । କେହି କିଛି ପଚାରିଲେ, ସେ ଆଦୌ ଉତ୍ତର ଦେଉ ନାହାନ୍ତି ।"

ଦାସୀ ମୁଖରୁ ଏହା ଶୁଣି ଦଶରଥଙ୍କ ମୁଣ୍ଡରେ ବଜ୍ର ପଡ଼ିଗଲା । ତାଙ୍କ ହୃଦୟରେ ସ୍ପନ୍ଦନର ବେଗ ବୃଦ୍ଧି ପାଇବାକୁ ଲାଗିଲା । ସେ ଖୁବ୍ ଶୀଘ୍ର କୋପଭବନ ଆଡ଼କୁ ଆଗେଇ ଗଲେ । ଏହା ଥିଲା – କୈକେୟୀଙ୍କର ଅଭୂତପୂର୍ବ ଘଟଣା । ସେ କେବେହେଲେ ଏପରି କରି ନ ଥିଲେ । ବୃଦ୍ଧ ରାଜା ମନେ ମନେ ଡରିଯାଇ କୋପ-ଭବନରେ ପ୍ରବେଶ କଲେ । ସେ ଭୂମିରେ ବସି ପଡ଼ି କୈକେୟୀଙ୍କ ମୁଣ୍ଡଟିକୁ ନିଜ କୋଳକୁ ଉଠାଇ ଆଣି ଅତ୍ୟନ୍ତ ବିନୀତ ଭାବରେ ତାଙ୍କ ହାତ ଧରି କହିଲେ—"ପ୍ରିୟେ, ମୁଁ ତୁମର କେଉଁ ଅପରାଧ କଲି କୁହ ! ମୁଁ ସବୁବେଳେ ତୁମର ଆଜ୍ଞାକୁ କାନ ଡେରି ରହିଥାଏ । ତୁମ ମନରେ ଦୁଃଖ ଦେଖିଲେ ମୋର ହୃଦୟ ତରଳି ଯାଏ । ଆଜି ଯଦି ମୋ' ଦ୍ୱାରା କୌଣସି ଅପରାଧ ହୋଇଛି, ତାହା ତୁମେ ପ୍ରକାଶ ନ କଲେ ମୁଁ ଜାଣିବି କେମିତି ?"

ମହାରାଜାଙ୍କ ବିନମ୍ର ବଚନ ଶୁଣି କୈକେୟୀ କିଛି ଉତ୍ତର ଦେଲେ ନାହିଁ । ସେ କେବଳ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ । ଦଶରଥ ଆହୁରି ନମ୍ର ଭାବରେ କହିଲେ—"ପ୍ରିୟେ, ତୁମେ କୁହ, ମୁଁ ତୁମ ନିକଟରେ କେଉଁ ଅପରାଧ କରିଛି । ମୁଁ ଆଦୌ କିଛି ହେଲେ ସ୍ମରଣ କରି ପାରୁ ନାହିଁ । ହଁ ମୋର ମନେ ହେଉଛି—ତୁମକୁ ନ ପଚାରି ମୁଁ ରାଜ୍ୟାଭିଷେକ ଉତ୍ସବର ଆୟୋଜନ କରିଥିବାରୁ, ତୁମେ ହୁଏତ କୁପିତା ହୋଇଛ । ମୁଁ ସତ କହୁଛି—ଆଜି ମଧ୍ୟାହ୍ନ ସମୟରେ ଗୁରୁଦେବ ରାଜ୍ୟାଭିଷେକ ସମ୍ବନ୍ଧରେ ଶୁଭଲଗ୍ନ ସ୍ଥିର କଲେ, ଆସନ୍ତାକାଲି ବ୍ୟତୀତ ଆଉ ସାଢ଼େ ସାତବର୍ଷ ପର୍ଯ୍ୟନ୍ତ ଭଲ ଦିନ ନାହିଁ । ସେଇଥିପାଇଁ ମୁଁ ଆସନ୍ତାକାଲି ଅଭିଷେକ ଉତ୍ସବ କରାଇବା ଲାଗି ରାଜି ହୋଇଗଲି । ଏ ସମ୍ବାଦ ଶୁଣିବା ମାତ୍ରେ ପ୍ରଜାମାନେ ଆନନ୍ଦରେ ପାଗଳ ହୋଇଗଲେ । ସେହି କାର୍ଯ୍ୟରେ ବ୍ୟସ୍ତ ରହି ମୁଁ ତୁମକୁ ଖବର ଦେବା ଲାଗି ଆସି ପାରିଲି ନାହିଁ । ତୁମେ ମୋର ଅତି ପ୍ରିୟତମା

ରାଣୀ । ତୁମେ ହିଁ ରାମର ଅଭିଷେକ କାର୍ଯ୍ୟ ସମ୍ପନ୍ନ କରିବ । କୁହ, ଏଇଥିପାଇଁ ଯଦି ତୁମେ ମୋ ଉପରେ ରାଗିଥାଅ, ଏଥର ସବୁ କଥା ମୋ ମୁହଁରୁ ଶୁଣି ଖୁସି ହୁଅ ।”

କୁପିତା କୈକେୟୀ କହିଲେ—“ନାଃ ମହାରାଜ ! ମୁଁ ଏଥିଲାଗି ମନ ଦୁଃଖ କରିନାହିଁ ।”

ଦଶରଥ ପଚାରିଲେ—“ତା’ହେଲେ···? କୁହ, ତୁମ ମନରେ କାହିଁକି କ୍ରୋଧ ଜାତ ହୋଇଛି ?”

କୈକେୟୀ ଦୃଢ଼ ସ୍ୱରରେ କହିଲେ—“ଦେବାସୁର ସଂଗ୍ରାମରେ ଆପଣ ମୋତେ ଯେଉଁ ଦୁଇଟି ବର ଦେଇଥିଲେ, ମୁଁ ଆଜି ତାହା ମାଗିବାକୁ ଚାହୁଁଛି···!”

ରାଜା ଦଶରଥ ହସି ହସି କହିଲେ—“ମୁଁ ଦେଖୁଛି, ତୁମ ହୃଦୟ ସେତେ ବିଶାଳ ନୁହେଁ । ସ୍ୱୟଂ ମହାରାଜ ଦଶରଥ ତୁମର ଆଜ୍ଞାଧୀନ । କ’ଣ କହୁଛ କୁହ— ରାଜ୍ୟ, ଧନ, ରାଜକୋଷ, ନିଜେ ମୁଁ, ସବୁ କିଛି ତୁମର ଅଧୀନ । କ’ଣ ମାଗୁଛ ମାଗ !”

କୈକେୟୀ କହିଲେ—“ନାଃ···ସେମିତି କହିଦେଲେ ହେବ ନାହିଁ ମହାରାଜ ! ଆପଣ ତିନିବାର ସତ୍ୟ କରି କୁହନ୍ତୁ, ମୁଁ ଯାହା ମାଗିବି ତାହା ବିନା ଦ୍ୱିଧାରେ ଆପଣ ଅର୍ପଣ କରିବେ ।”

କୈକେୟୀଙ୍କ କପଟପୂର୍ଣ୍ଣ ମନୋଭାବ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ମହାରାଜ ଦଶରଥ କହିଲେ—“ମୁଁ ତିନିବାର ସତ୍ୟ କରି କହୁଛି, ତୁମେ ଯାହା ମାଗିବ, ତାହା ଯେତେ ଅସମ୍ଭବ ହେଲେ ବି ମୁଁ ପ୍ରଦାନ କରିବି ! ପ୍ରଦାନ କରିବି !! ପ୍ରଦାନ କରିବି !!!”

କୈକେୟୀ କହିଲେ—“ଦେଖନ୍ତୁ ମହାରାଜ, ଇକ୍ଷ୍ୱାକୁ କୁଳର ପ୍ରତ୍ୟେକ ମହାରାଜ ନିଜ ନିଜର ପ୍ରତିଜ୍ଞା ପାଳନରେ କେବେହେଲେ ଆପତ୍ତି କରି ନାହାନ୍ତି । ସେମାନେ ପ୍ରାଣ ବିନିମୟରେ ପ୍ରତିଜ୍ଞା ପାଳନ କରିଛନ୍ତି । ତେଣୁ ଆପଣ ତିନିବାର ସତ୍ୟ କରି ସାରିଲେଣି । ଏଥର ମୁଁ ଯାହା ମାଗିବି, ଆପଣ ନିଶ୍ଚୟ ମୋର ମାଗୁଣି ପୂରଣ କରିବେ ।”

ଦୃଢ଼ତା ପୂର୍ବକ ରାଜା ଦଶରଥ କହିଲେ—“ତୁମେ ଏତେ ଭୂମିକା ପ୍ରସ୍ତୁତ ନକରି, ଯାହା ମାଗିବାର କଥା, ଶୀଘ୍ର ଶୀଘ୍ର ମାଗ ।”

ମହାରାଣୀ କୈକେୟୀ କହିଲେ—“ମହାରାଜ !···ମୋର ପ୍ରଥମ ବର ହେଉଛି—ଭରତ ଅଯୋଧ୍ୟାର ରାଜସିଂହାସନରେ ଅଭିଷିକ୍ତ ହେବ ଏବଂ ଦ୍ୱିତୀୟ ବର

ହେଉଛୁ—ମୋ ପୁଅକୁ ନିଷ୍କଣ୍ଟକ କରିବା ପାଇଁ ରାମ ତପସ୍ୱୀ ବେଶରେ ଚଉଦ ବର୍ଷ ଲାଗି ବନକୁ ଗମନ କରିବ । ଯଦି ଆପଣ ସତ୍ୟବ୍ରତଙ୍କ ଓ ଦୃଢ଼ବ୍ରତୀ, ତେବେ କାଲି ପ୍ରଭାତରୁ ଶ୍ରୀରାମର ରାଜ୍ୟାଭିଷେକ ବନ୍ଦ କରାଇ ତାଙ୍କୁ ବନକୁ ପଠାଇ ଦିଅନ୍ତୁ । ଭରତକୁ ମାମୁଁ ଘରୁ ଡକାଇ ଆଣି ସିଂହାସନରେ ଅଭିଷିକ୍ତ କରାନ୍ତୁ ।"

କୈକେୟୀଙ୍କ ବଚନ ଶୁଣିବା ମାତ୍ରେ ମହାରାଜ ଦଶରଥ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । କେତେ ସମୟ ପରେ ତାଙ୍କ ମୂର୍ଚ୍ଛାଭଙ୍ଗ ହେଲା । ସେ ହଠାତ୍ ଉଠିପଡ଼ି କୈକେୟୀଙ୍କ ହାତକୁ ଧରି ପକାଇ କହିଲେ—"ପ୍ରିୟେ, ତୁମେ ଏ କ'ଣ କହୁଛ ? ତୁମର ଆଜି କ'ଣ ହୋଇଛି ?"

କ୍ରୁଦ୍ଧା ସିଂହୀ ପରି ଗର୍ଜି ଉଠି ମହାରାଣୀ କୈକେୟୀ କହିଲେ - "ବେଶ୍ ବେଶ୍ ଜଣାଗଲା ଆପଣଙ୍କର ସ୍ନେହ । ଭରତର ରାଜ୍ୟାଭିଷେକ କଥା ଶୁଣିବା ମାତ୍ରେ ଆପଣ ମୂର୍ଚ୍ଛିତ ହୋଇଗଲେ ? ସେ କ'ଣ ରାଜପୁତ୍ର ନୁହେଁ ? ମୁଁ କ'ଣ ଏ ପ୍ରାସାଦର ଦାସୀ ?? ମୋତେ କ'ଣ ଆପଣ ବିବାହ କରି ନାହାନ୍ତି ?!?"

ମହାରାଜ ଦଶରଥ ନିତାନ୍ତ ବିଚଳିତ ହୋଇ ବିନମ୍ର ସ୍ୱରରେ କହିଲେ— "ଭରତର ରାଜ୍ୟାଭିଷେକ ପାଇଁ ମୁଁ କେବେ ହେଲେ ବାରଣ କରୁନାହିଁ । କିନ୍ତୁ ନିର୍ଦ୍ଦୋଷ ରାମକୁ ବୃଥାଟାରେ ତୁମେ କାହିଁକି ବନବାସ ପଠାଇବା ଲାଗି ଜିଦ୍ ଧରୁଛ ? ତୁମେ ରାମକୁ ଖୁବ୍ ସ୍ନେହ କର ଏବଂ ରାମ ମଧ୍ୟ ତୁମକୁ କୌଶଲ୍ୟାଙ୍କଠାରୁ ଅଧିକ ଭକ୍ତି ଓ ଶ୍ରଦ୍ଧା କରେ । ଆଜି ତୁମେ ଶ୍ରୀରାମ ବିରୁଦ୍ଧରେ ଏପରି ବିଦ୍ରୋହର ନିଆଁ ଜାଳୁଛ କାହିଁକି ? ତୁମର ସ୍ୱଭାବ ତ ଏପରି ନଥିଲା ? ଆଜି ତୁମ ମନରେ ଏ ବିଷ ମଞ୍ଜି କିଏ ପୋତି ଦେଲା ?"

କୈକେୟୀ ଦୃଢ଼ତାର ସହିତ କହିଲେ—"ମୋ ସରଳତାର ସୁଯୋଗ ନେଇ ଆପଣମାନେ ମୋର ସର୍ବନାଶ କରିବାକୁ ବସିଛନ୍ତି । ମୋତେ କୁଟ କପଟ କଥାରେ ଭୁଲାଇ ମୋ ପୁଅକୁ ମୋ'ଠାରୁ ଦୂରକୁ ପଠାଇ ଦେଇଛନ୍ତି । ମୋତେ ମିଠା କଥାରେ ଭୁଲାଇ ଦେବ, ଆପଣ ଦର୍ମ ଦୁର୍ମ ଧରି ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କରୁଛନ୍ତି । ମୁଁ ଆଜି ଆପଣଙ୍କ ଖୋସାମଦି କଥାରେ କେବେ ହେଲେ ଭୁଲି ଯିବି ନାହିଁ । ଭରତ ସିଂହାସନରେ ନ ବସିବା ପର୍ଯ୍ୟନ୍ତ ମୁଁ ଅନ୍ନଜଳ ଛୁଇଁବି ନାହିଁ ।"

ମହାରାଜ ଦଶରଥ ଗୋଟିଏ ଅପରାଧୀ ବ୍ୟକ୍ତି ପରି ନିତାନ୍ତ ଧୀର କଣ୍ଠରେ କହିଲେ—"ଭରତକୁ ସିଂହାସନରେ ବସାଇବା ପାଇଁ ମୁଁ ଆଦୌ ମନା କରୁନାହିଁ । କିନ୍ତୁ ଶ୍ରୀରାମ ପ୍ରତି ଏପରି କଠୋର ଆଦେଶ କାହିଁକି ? ସେ ଏହି ଅଯୋଧ୍ୟା ନଗରରେ ରହିଲେ କ୍ଷତି କ'ଣ ?"

କୈକେୟୀଙ୍କ ଭ୍ରୂଯୁଗଳ କୁଞ୍ଚିତ ହୋଇଗଲା । ସେ ମୁହଁରେ କଠୋର ଭାବ ଫୁଟାଇ କହିଲେ –"ମୁଁ ଆପଣଙ୍କର ଭୁଲାଣିଆ କଥାରେ ଭୁଲି ଯିବି ନାହିଁ । ଗୋଟିଏ ଜଙ୍ଗଲରେ ଦୁଇଟା ସିଂହ ରହି ପାରିବେ ନାହିଁ । ବଂଶର ବଡ଼ପୁଅ ଭାବେ ଶ୍ରୀରାମ ସିଂହାସନର ପ୍ରକୃତ ଅଧିକାରୀ କିନ୍ତୁ ଆପଣଙ୍କ ପ୍ରତିଜ୍ଞା ଅନୁସାରେ ଭରତ ସିଂହାସନରେ ବସିବ । ତା' ଫଳରେ ପାଞ୍ଚ, ମନ୍ତ୍ରୀ ଓ ପ୍ରଜାମାନେ ଦୁଇଭାଗ ହୋଇ-ଯିବେ ଏବଂ ରାଜ୍ୟରେ ବିଦ୍ରୋହ ଦେଖାଦେବ । ସେପରି ଏକ ଗଣ୍ଡଗୋଳିଆ ପରିସ୍ଥିତିରେ ମୋ' ପୁଅ ରାଜତ୍ୱ କରି ପାରିବ କିପରି ? କିନ୍ତୁ ରାମ କାଲିଠାରୁ ଚଉଦ ବର୍ଷ ବନକୁ ଚାଲିଗଲେ ଭରତ ନିଷ୍କଣ୍ଟକ ହୋଇ ଚଉଦ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରିବ । ଏହା ମଧ୍ୟରେ ସେ ତା'ର ପ୍ରଭୁତ୍ୱ ସୁଦୃଢ଼ କରାଇ ନେବ । ତା'ପରେ ରାମ ବନରୁ ଫେରି ଆସି ଜଣେ ସାଧାରଣ ନାଗରିକ ଭାବରେ ଅଯୋଧ୍ୟାରେ ବାସ କରିବ । ତେଣୁ ମୋ' ବର ପ୍ରାର୍ଥନାର କୌଣସି ପରିବର୍ତ୍ତନ ହେବ ନାହିଁ । କାଲି ପ୍ରଭାତରୁ ରାମ ବନକୁ ଯିବ ଏବଂ ଆପଣ ଭରତକୁ ଡକାଇ ଆଣି ରାଜସିଂହାସନରେ ଅଭିଷିକ୍ତ କରାଇ ଦେବେ । ଏହା ବ୍ୟତୀତ ମୁଁ ଆଉ କିଛି ଚାହେଁ ନାହିଁ । କାଲି ସୂର୍ଯ୍ୟ ଉଦୟ ହେବା ସଙ୍ଗେ ସଙ୍ଗେ ରାମ ବନବାସ ଲାଗି ଅଯୋଧ୍ୟାରୁ ପ୍ରସ୍ଥାନ କରିବ କିମ୍ବା ମୋର ମୃତ ଦେହ ଚିତାରେ ଜଳି ଉଠିବ । ମୋତେ ବୁଝାଇବା ନିରର୍ଥକ ହେବ । ହଁ, ଆପଣ ଯଦି ତଳକୁ ଖସି ଯାଇ ସତ୍ୟ ଭଙ୍ଗ କରନ୍ତି, ତେବେ ଆପଣଙ୍କ ଆଗରେ ମୁଁ ଆତ୍ମହତ୍ୟା କରିବି ! ଏହା ମୋର ଶେଷ ନିଷ୍ପତ୍ତି !"

ସୁତ ମହର୍ଷି କହିଲେ –"ହେ ମୁନିଗଣ, ସେ ନିର୍ମମ ହୃଦୟା କୈକେୟୀ ଏତିକି କହି, ଆଘାତପ୍ରାପ୍ତ ସର୍ପିଣୀ ପରି ଫଁ ଫଁ...ହେବାକୁ ଲାଗିଲା । ରାଜା ଦଶରଥ ନେତେ ପ୍ରକାର ବିନୀତ ଭାବରେ ବୁଝାଇଲେ ମଧ୍ୟ କିଛି ଫଳ ହେଲା ନାହିଁ । ଶ୍ରୀରାମଙ୍କ ବିନା ତାଙ୍କର ନିଶ୍ଚିତ ମୃତ୍ୟୁ ହେବ ବୋଲି କହିଲେ ମଧ୍ୟ କୈକେୟୀ ସେଥିପ୍ରତି ଆଦୌ କର୍ଣ୍ଣପାତ ନ କରି ନିଜ ଜିଦ୍‌ରେ ଅଟଳ ରହିଲେ । ତେଣୁ ମହାରାଜ ଦଶରଥ ଅତ୍ୟନ୍ତ ଉଦାସ ହୋଇ ପଡ଼ିଲେ । ସେ ମନେ ମନେ କୈକେୟୀଙ୍କୁ ଘୃଣା କରିବା ସଙ୍ଗେ ସଙ୍ଗେ ନିଜେ ଶ୍ରେଷ୍ଠ ପିଲାଙ୍କ ପରି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ । କାରଣ, ଶ୍ରୀରାମଙ୍କ ବିୟୋଗ ତାଙ୍କ ପକ୍ଷରେ ଅସହ୍ୟ ହୋଇଗଲା । ସେ ଭଲଭାବରେ ଜାଣିଥିଲେ, ଶ୍ରୀରାମ ଏ'କଥା ଶୁଣିଲେ ନିଶ୍ଚିତ ଭାବରେ ବନକୁ ଗମନ କରିବେ । ତାଙ୍କୁ କୌଣସି ଶକ୍ତି ଅଟକାଇ ପାରିବ ନାହିଁ । କାରଣ, ଯେଉଁଠାରେ ଅନାଦର ମିଳିବ, ସେଠାରେ ଶ୍ରୀରାମ କେବେହେଲେ ରହିବେ ନାହିଁ । ଯେଉଁଠାରେ କାମନା, ବାସନା ତଥା ଈର୍ଷା ଓ ଘୃଣାର ରାଜତ୍ୱ ଚାଲିବାର ସମ୍ଭାବନା ରହିଛି, ସେଠାରେ ରାମ କେବେ ହେଲେ ଶାନ୍ତିରେ ନିଃଶ୍ୱାସ ମାରି ପାରିବେ ନାହିଁ । ଏହିପରି ଆହୁରି କେତେ କ'ଣ ଭାବି ଭାବି ରାଜା ଦଶରଥ ପାଗଳ ହୋଇଗଲେ । ସେ ଲକ୍ଷ୍ୟ

କଲେ—କୈକେୟୀ ଉଦାସ ମନରେ ମଇଳା ଲୁଗା ପିନ୍ଧି ତାଙ୍କ ଆଗରେ ବସିଥିଲେ । କିନ୍ତୁ ତାଙ୍କୁ ଦେଖି ରାଜା ଦଶରଥଙ୍କର ମନେ ହେଉଛି—ସତେ ଯେପରି, କୁଞ୍ଚା ସିଂହୀ କଳଙ୍କ ତଥା ଶତ୍ରୋହର ମୂର୍ତ୍ତିମନ୍ତ ସ୍ୱରୂପ ଧାରଣ କରି ତାଙ୍କର ଜୀବନ ନାଡିକାଟିକୁ ଶେଷ କରି ଦେବାକୁ ସଦର୍ପରେ ପ୍ରସ୍ତୁତ ହେଉଛି ।

ସାରା ରାତ ବେଦନରେ କଟିଗଲା । ରାଜା ଦଶରଥ କିଛୁ ଜାଣି ପାରିଲେ ନାହିଁ । ଏପରିକି, ପ୍ରାତଃକାଳ ହେବାର ଆଭାସ ସୁଦ୍ଧା ସେ ପାଇ ପାରିଲେ ନାହିଁ । ତାଙ୍କର ଧ୍ୟାନ, ଧାରଣା କେବଳ ଶ୍ରୀରାମଙ୍କଠାରେ ଲୀନ ହୋଇ ଯାଇଥିଲା ।

ଏତିକିବେଳେ ମଙ୍ଗଳ ଧ୍ୱନି କରି ସୂତ ଆସି ମହାରାଜାଙ୍କର ଜୟ ଜୟକାର କରି କହିଲା—"ମହାରାଜ, ସିଂହଦ୍ୱାରରେ ସହସ୍ର ବେଦପାଠୀ ବ୍ରାହ୍ମଣ ତଥା ପ୍ରଜାମାନେ ଉପସ୍ଥିତ ହୋଇ ଗଲେଣି । ସମସ୍ତେ ମହର୍ଷି ବଶିଷ୍ଠଙ୍କ ଆଦେଶକୁ ଅପେକ୍ଷା କରିଛନ୍ତି । ଏହା ମଧ୍ୟରେ ମଙ୍ଗଳ ଲଗ୍ନ ଉପସ୍ଥିତ ହୋଇ ଗଲାଣି । ମହାରାଜ ସମସ୍ତଙ୍କୁ ଦର୍ଶନ ଦେଇ କୃତାର୍ଥ କରନ୍ତୁ ।"

ମହାରାଜା ଦଶରଥଙ୍କର ଚୈତନ୍ୟ ଫେରି ଆସିଲା । ସେ ସିଂହଦ୍ୱାରର ବାଜା ଓ ବେଦଧ୍ୱନି ଶୁଣି ଅଧୀର ହୋଇ ଉଠିଲେ । ସତେ ଅବା, ସେହି ଧ୍ୱନି ମାଧ୍ୟମରେ ଅସଂଖ୍ୟ ବଜ୍ରପ୍ରହାର ତାଙ୍କର କର୍ଣ୍ଣକୁହର ଭେଦ କରି ତାଙ୍କୁ ବିଚଳିତ କରି ଦେଉଛି । ସେ ପାଗଳଙ୍କ ପରି ହାତ ହଲାଇ କହିଲେ—"ଏ ବାଦ୍ୟଧ୍ୱନି ବନ୍ଦ କର ! ସୂତ, ମୁଁ ଏବେଠାରୁ ଶ୍ରୀରାମଙ୍କୁ ଦେଖିବା ଲାଗି ଚାହୁଁଛି । ତୁମେ ଶୀଘ୍ର ତାଙ୍କୁ ଏଠାକୁ ନେଇ ଆସ !"

ରାଜାଙ୍କର ବ୍ୟବହାର ତଥା ଭାବଭଙ୍ଗୀ ଦେଖି ସୂତ ମନେ ମନେ ଭୟ କଲା । ସେ ଶୀଘ୍ର ସେଠାରୁ ଶ୍ରୀରାମଙ୍କ ଭବନ ଅଭିମୁଖେ ରଥ ନେଇ ଆଗ୍ରସର ହେଲା । ସିଂହଦ୍ୱାରରେ ସମସ୍ତେ ତାଙ୍କୁ ଘେରିଯାଇ ଅନେକ ପ୍ରଶ୍ନ ପଚାରିଲେ । ସୂତ କାହାରିକୁ କିଛି ଉତ୍ତର ନ ଦେଇ ଉଦାସ ମନରେ ସେଠାରୁ ଯାଇ ଶ୍ରୀରାମଙ୍କ ଭବନରେ ଉପସ୍ଥିତ ହେଲେ । ସେ ଶ୍ରୀରାମଙ୍କ ଆଗରେ ହାତ ଯୋଡ଼ି କହିଲେ—"ରାଜକୁମାର ଆପଣଙ୍କୁ ଜନ୍ମ ଦେଇ ମହାରାଣୀ କୌଶଲ୍ୟା ଧନ୍ୟ ହୋଇଛନ୍ତି । ଆପଣଙ୍କର ମଙ୍ଗଳ ହେଉ ! କୁମାର, ଆପଣଙ୍କୁ ଦେଖିବା ଲାଗି ମହାରାଜ ବ୍ୟାକୁଳ ହୋଇ ମହାରାଣୀ କୈକେୟୀଙ୍କ ମହଲରେ ଅପେକ୍ଷା କରିଛନ୍ତି ।"

ଏତିକି ଶୁଣିବା ମାତ୍ରେ ସଙ୍କୋଚଶୀଳ ଶ୍ରୀରାମ କୌଣସି ପ୍ରକାର ବେଶ-ଭୂଷଣରେ ସଜ୍ଜିତ ନ ହୋଇ ରଥରେ ଯାଇ ବସି ପଡ଼ିଲେ । ସେତିକିବେଳେ

ଲକ୍ଷ୍ମଣ ଛଡା, ସୁମନ୍ତ୍ର ଧୀରେ ସେଠାରେ ପହଞ୍ଚି ଗଲେ । ଶ୍ରୀରାମ ବ୍ୟଗ୍ରଭାବରେ ରଥରେ ବସି ଯାଉଥିବାରୁ, ସେ ମଧ୍ୟ ଭାଇଙ୍କ ଅନୁଗମନ କଲେ । ଅନ୍ୟାନ୍ୟ ସେବକମାନେ ତାଙ୍କ ସହିତ ଯିବାକୁ ବାହାରି ପଡ଼ିଲେ; କିନ୍ତୁ ଶ୍ରୀରାମ ସେମାନଙ୍କୁ ଯିବାଲାଗି ବାରଣ କଲେ । ପଥ ମଧ୍ୟରେ ଅସଂଖ୍ୟ ପ୍ରଜା ଶ୍ରୀରାମଙ୍କୁ ସମ୍ବର୍ଦ୍ଧନା ଜଣାଇ ଅନେକ ପ୍ରକାର ମଙ୍ଗଳ ଧ୍ୱନି କଲେ । ଶ୍ରୀରାମ ହାତ ହଲାଇ ସମସ୍ତଙ୍କୁ ଆଶ୍ୱାସନା ଦେଇ ଆଗେଇ ଗଲେ । ସେ କୈକେୟୀ ରାଣୀଙ୍କ ବାସଭବନର ଦ୍ୱାର ଦେଶରେ ଓହ୍ଲାଇ ପଡ଼ି ଭିତରକୁ ପଶିଗଲେ । ସେ ଭିତରକୁ ପଶିଯାଇ ମହାରାଜଙ୍କର ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମହାରାଜ ତଳେ ବସି ମୁଣ୍ଡରେ ହାତ ରଖି କାନ୍ଦୁଥିବାର ଲକ୍ଷ କରି ବ୍ୟସ୍ତ ହୋଇ ପଡ଼ିଲେ । ସେ ଆହୁରି ମଧ୍ୟ ଲକ୍ଷ୍ୟ କଲେ— ସଦାସର୍ବଦା ବିଳାସପ୍ରିୟା କୈକେୟୀ ମଳିନ ବସ୍ତ୍ର ଧାରଣକରି ପିଶାଚିନୀ ପରି ଦେଖା ଯାଉଛନ୍ତି । ଆହତ ସର୍ପିଣୀ ପରି ତାଙ୍କ ମୁଖମଣ୍ଡଳ ଦେଖା ଯାଉଛି । ଶ୍ରୀ ରାମଚନ୍ଦ୍ର ହଠାତ୍ ଯେଉଁକାର ଅବସ୍ଥା ସମ୍ବନ୍ଧରେ କିଛି ହେଲେ ଅନୁମାନ କରି ପାରିଲେ ନାହିଁ । ସେ ଧାଇଁଯାଇ ପିତାଙ୍କ ଚରଣ ସ୍ପର୍ଶ କରି କହିଲେ—"ପିତା, ମୁଁ ଆସିଗଲି !"

ଅନ୍ୟମନସ୍କ ଦଶରଥ ଶ୍ରୀରାମଙ୍କ କଣ୍ଠସ୍ୱର ଶୁଣି ଚମକି ପଡ଼ିଲେ । ସେ ଶ୍ରୀରାମଙ୍କୁ କୁଣ୍ଢାଇ ପକାଇ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ । —"ରାମ ! ହାୟ ରାମ !! ହାୟ ମୋର ପ୍ରାଣର ରାମ !!!" ଏତିକି କହି ରାଜା ଦଶରଥ ପୁଣି ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ।

ଶ୍ରୀରାମ ପିତାଙ୍କର ହଠାତ୍ ଏ ଅବସ୍ଥାଦେଖି ଆଦୌ କିଛି ବୁଝି ପାରିଲେ ନାହିଁ । ସେ ଆହୁରି ମଧ୍ୟ ଲକ୍ଷ୍ୟ କଲେ, ଯେଉଁ କୈକେୟୀ ତାଙ୍କୁ ଦେଖିଲେ ସ୍ନେହ ଅଜାଡ଼ି ଦେଉଥିଲେ, ସେ ଆଜି ନୀରବ ନିସ୍ପନ୍ଦ ହୋଇ ବକ୍ର ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁଛନ୍ତି କାହିଁକି ? ସେ କୌଣସି ପ୍ରକାର ସମାଧାନରେ ପହଞ୍ଚି ନ ପାରି କହିଲେ— "ମା' ପିତାଙ୍କର ହେଲା କ'ଣ ? ସେ କାହିଁକି ଏତେ ଦୁଃଖିତ ହୋଇ ପଡ଼ିଛନ୍ତି ?"

କୈକେୟୀ ନିତାନ୍ତ ସରଳ ଭାବରେ କହିଲେ—"ରାମ, ପିତାଙ୍କର ଦୁଃଖର କାରଣ ହେଉଛ ତୁମେ ନିଜେ .. !"

ଏ କଥା ଶୁଣିବା ମାତ୍ରେ ଶ୍ରୀରାମଙ୍କ ମୁଣ୍ଡରେ ବଜ୍ର ପଡ଼ିଗଲା ପରି ତାଙ୍କୁ ବୋଧ ହେଲା । ସେ ଅନୁଭବ କଲେ—ସତେ ଅବା, ପୃଥ୍ୱୀ ତାଙ୍କ ପାଦ ତଳୁ ଖସି ତଳକୁ ତଳକୁ ଧସେଇ ଯାଉଛି । ସେ କୌଣସି ମତେ ନିଜ ମନଃସ୍ଥିତିକୁ ଆୟତ୍ତ କରି ପଚାରିଲେ –"ମାଆ...., ମୁଁ କି ଅପରାଧ କଲି ?"

ହଳାହଳ ପୂର୍ଣ୍ଣ ହୃଦୟରେ କୈକେୟୀ ମୁଖରେ କୃତ୍ରିମ ହସ ଫୁଟାଇ କହିଲେ—"ତୁମେ କିଛି ଦୋଷ କରି ନାହଁ ଶ୍ରୀରାମ, କିନ୍ତୁ ବହୁ ପୂର୍ବରୁ ମହାରାଜ

ମୋତେ ଦୁଇଟି ବର ଦେଇଥିଲେ । ସେ ବର ଦୁଇଟି ମୁଁ ଏଇକ୍ଷଣି ତାଙ୍କଠାରୁ ମାଗି ନେଲି । ଗୋଟିଏ ବର ହେଉଛି—ଭରତ ଅଯୋଧ୍ୟା ସିଂହାସନରେ ଅଭିଷିକ୍ତ ହେବ । ଅନ୍ୟ ବରଟି ହେଉଛି—ତୁମେ ଚଉଦ ବର୍ଷ ପାଇଁ ବନବାସ କରିବ । ରାଜା ତୁମକୁ ବନଗମନ ଲାଗି ଆଦେଶ ଦେଇ ପାରିବେ ନାହିଁ । ତେଣୁ ପ୍ରତିଜ୍ଞା ଭଙ୍ଗ ଭୟରେ ଦୁଃଖରେ ଅଧୀର ହୋଇ ଉଠୁଛନ୍ତି । ତୁମେ ଯଦି ଆଜି ରାଜ୍ୟ, ସିଂହାସନ ତଥା ରାଜଭବନର ସୁଖ ସୁବିଧା ତ୍ୟାଗ କରି ବନକୁ ଯିବା ଲାଗି ବାହାରି ପଡ଼ିବ, ତେବେ ରାଜା ଆଶୁ ବିପଦରୁ ରକ୍ଷା ପାଇଯିବେ । ସେ ଯାହା ସଙ୍କୋଚରେ ତୁମକୁ କହି ପାରୁ ନାହାନ୍ତି, ତାହା ପୂରଣ ହୋଇ ଯିବ ।"

ରାଜା ଏହା ମଧ୍ୟରେ ଚୈତନ୍ୟ ଲାଭ କରି ସାରିଥିଲେ । ସେ କୈକେୟୀଙ୍କ ବାଣୀ ଶୁଣି ଲଲାଟରେ କର ପ୍ରହାର କରି କହିଲେ—"ଧିକ୍...ଧିକ୍...ମୋତେ.. ! ଶତ ଧିକ୍କାର ମୋର ଏ' ରାଜପଣକୁ... !" ଏତିକି କହି ସେ ପୁଣି ମୂର୍ଚ୍ଛିତ ହୋଇଗଲେ ।

ଶ୍ରୀରାମ ସମସ୍ତ ରହସ୍ୟ ବେଶ୍ ବୁଝି ପାରିଲେ । ସେ ଆଦୌ ବିଚଳିତ ନ ହୋଇ ଧୀର, ପ୍ରଶାନ୍ତ ତଥା ବିନୀତ ସ୍ୱରରେ କହିଲେ—"ମାଆ, ଏଇ ସାମାନ୍ୟ କଥା ଲାଗି ତୁମେ ପିତାଙ୍କୁ ଏତେ କଷ୍ଟ ଦେଇଛ । ପିତାଙ୍କର ଆଜ୍ଞା ଦୂରର କଥା, ତୁମେ ଯଦି କହିବ, ମୁଁ ଏହିକ୍ଷଣି ଜଳନ୍ତା ଅଗ୍ନି କୁଣ୍ଡକୁ ହସି ହସି ଡେଇଁ ପଡ଼ିବି । ଭରତ ମୋର ପ୍ରାଣର ଭାଇ । ତା'ପାଇଁ ସାମାନ୍ୟ ଅଯୋଧ୍ୟା ସିଂହାସନ କ'ଣ, ତ୍ରିଭୁବନର ସିଂହାସନ ମୋତେ ମିଳିବାର ଥିଲେ ମଧ୍ୟ ମୁଁ ତାହା ତ୍ୟାଗ କରି ଦେବି । ପିତାଙ୍କ ମୁଖରୁ ଶୁଣିବାକୁ ମୁଁ ଚାହୁଁ ନାହିଁ । ତୁମେ ହିଁ ବନଗମନ ଲାଗି ଆଦେଶ ଦେଇଛ, ସେତିକି ଯଥେଷ୍ଟ ! ତୁମେ ଏଇ କ୍ଷୁଦ୍ର କଥା ଲାଗି ମଳିନ ବେଶ ଧାରଣ କରିଛ ? କେବଳ ଚଉଦ ବର୍ଷ କାହିଁକି, ମୁଁ ସାରା ଜୀବନ ବନବାସ କରିବାକୁ ପ୍ରସ୍ତୁତ ଅଛି । ତୁମେ ମନରୁ ଅନୁଶୋଚନା ତ୍ୟାଗ କରି, ପିତାଙ୍କୁ ସାନ୍ତ୍ୱନା ଦିଅ । ତାଙ୍କୁ ଭୂମିରୁ ଉଠାଇ ଶଯ୍ୟାରେ ଶୟନ କରାଅ । ନିଜେ ମଧ୍ୟ ଏ ମଳିନ ବେଶ ତ୍ୟାଗ କରି ସୁସଜ୍ଜିତା ହୁଅ । ମୁଁ ଏଇ ମୁହୂର୍ତ୍ତରେ ଅଯୋଧ୍ୟା ତ୍ୟାଗ କରି ବନକୁ ଚାଲିଯିବି ।"

କୈକେୟୀ ଶ୍ରୀରାମଙ୍କ କଥା ଶୁଣି କହିଲେ—"ରାମ ତୁମେ ଏଠାରୁ ବନକୁ ଚାଲିଯିବା ପରେ ସବୁ ଠିକ୍ ହୋଇଯିବ ଏବଂ ମୁଁ ମଧ୍ୟ ଏ ମଳିନ ବେଶ ତ୍ୟାଗ କରି ମୂଲ୍ୟବାନ ରତ୍ନଖଚିତ ଭୂଷଣରେ ଭୂଷିତା ହେବି ।"

ବାହାରେ ଛିଡ଼ା ହୋଇ ସବୁ କଥା ଶୁଣୁଥିବା ବୃଦ୍ଧ ସୁମନ୍ତ୍ର କ୍ରୋଧରେ ଅଗ୍ନିଶର୍ମା ହୋଇ ଯାଇ କହିଲେ—"ଧିକ୍ ତୁମର ଏ ପ୍ରକାର ମନୋଭାବକୁ ! ତୁମେ ଏ

ତିରସ୍କାର କରିଦେବା ଲାଗି ଏଠାକୁ ଆସିଥିଲ ? ଏଭଳି ବାକ୍ୟ ଉଚ୍ଚାରଣ କରିବା ଲାଗି ତୁମେ ଲଜ୍ଜାବୋଧ କରୁନାହଁ ? ଶ୍ରୀରାମ ବନକୁ ଚାଲିଯିବା ପରେ ତୁମେ ରାଜୋଚିତ ଭୂଷଣରେ ଭୂଷିତା ହେବ କ'ଣ, ମୋର ମନେ ହେଉଛି—ତୁମେ ଆଉ କୌଣସି ଭୂଷଣ ଗ୍ରହଣ କରିବାର ସୌଭାଗ୍ୟ ଲାଭ କରି ପାଇବ ନାହିଁ । ତୁମେ କୁଳ କଳଙ୍କିନୀ ହୋଇ ଏ ବଂଶକୁ ଧ୍ୱଂସ କରିବାଲାଗି ଜନ୍ମ ହୋଇଛ···।''

ବୃଦ୍ଧ ମନ୍ତ୍ରୀଙ୍କୁ ନିବାରଣ କରି ଅତି ନମ୍ରତାର ସହିତ ଶ୍ରୀ ରାମଚନ୍ଦ୍ର କହିଲେ—''ମାଆ, ମୁଁ ଅଯୋଧ୍ୟା ତ୍ୟାଗ କରି ବନକୁ ଚାଲିଗଲି ବୋଲି ମନେକର । ମୁଁ ଏଠାରୁ ଯାଇ ମାଆଙ୍କଠାରୁ ଅନୁମତି ନେଇ ଆସୁଛି । ତା'ପରେ ପିତାଙ୍କୁ ପ୍ରଣାମ ଜଣାଇ, ତୁମଠାରୁ ତପସ୍ୱୀ ବେଶଭୂଷଣ ଗ୍ରହଣ କରି ବନକୁ ଚାଲିଯିବି । ସୂର୍ଯ୍ୟାସ୍ତ ପରେ ରାମକୁ ଅଯୋଧ୍ୟାରେ ଆଉ କେହି ଦେଖିବାକୁ ପାଇବେ ନାହିଁ ।''

ସୂତ ମହର୍ଷି କହିଲେ—'' ହେ ମୁନିଗଣ, ଲକ୍ଷ୍ମଣ ଏହା ମଧ୍ୟରେ ଖୁବ୍ ରାଗି ଯାଇଥିଲେ । ଶ୍ରୀରାମ ତାଙ୍କୁ କୌଣସିମତେ ବୁଝାଇ ମାତା କୌଶଲ୍ୟାଙ୍କ ମହଲକୁ ଚାଲିଗଲେ । ସୁମନ୍ତ୍ର ସେଠାରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଛିଡ଼ା ହୋଇଥିଲେ । ସେ କ'ଣ କରିବେ ବୋଲି ଆଦୌ ସ୍ଥିର କରି ପାରିଲେ ନାହିଁ । ସୁମନ୍ତ୍ରଙ୍କ ମାନସିକ ଅବସ୍ଥା ଲକ୍ଷ୍ୟ କରି ଶ୍ରୀରାମ ତାଙ୍କୁ ମଧ୍ୟ ସାଥିରେ ନେଇଗଲେ । ସେ ତୁରନ୍ତରୁ ପଦେ ହେଲେ କଥା ବାହାର ନକରି ଶ୍ରୀରାମଙ୍କ ପଛେ ପଛେ ଅନୁସରଣ କଲେ ।''

## ଛପ୍‌ପୟ

''ଦଶରଥ ଅନୁନୟ ବିନୟ କରୀ ବନୀ ନ ଦୟୀକୀ ।
ବଜ୍ର ହୃଦୟ ବନୀ ଗୟୀ ମନୁଜ ବଷମହୁଁ ଭୀଜୀ ।।
ପ୍ରାତ ସୂତ ତେ ତୁରତ ଭୂପ ରଘୁବର ବୁଲବାୟେ ।
ମାତୁ ପିତାକୀ ଦଶା ଦେଖି ରଘୁପତି ଘବରାୟେ ।।
ଜବ ନହିଁ ବୋଲେ ନୃପତି କଛୁ, କଥା କୈକେୟୀ ସବ୍ କହୀ ।
ଉଠେ ବିଲଖି ନୃପ ରାମ କହି, ପର ପାପିନି ବୈଠୀ ରହୀ ।''



# ନିର୍ଗନ ରାମ

ରାଜ୍ୟଂ ଶ୍ରିୟଂ ପ୍ରଣୟିନଃ ସୁହୃଦୋ ନିବାସମ୍ ।
ତ୍ୟକ୍ତ୍ୱା ଯଯୌ ବନମସୂନିବ ମୁକ୍ତସଙ୍ଗଃ ।।

(ଶ୍ରୀଭାଗ ୯, ସ୍କ ୧୦,ଅ ୮ ଶ୍ଳୋ)

## ଛପ୍ପୟ

କୌଶଲ୍ୟା ଢିଁଙ୍ଗ ଜାୟ ରାମ ଚରନନ ସିର ନାୟୋ ।
ଲଖନ କୋପ ଅତି କରେୟ ନୃପତି ମତ ନହିଁ ମନ ଭାୟୋ ।।
ମାତାକୁଁ ସମୁଝାଇ ବନ୍ଧୁକୁଁ ଶିକ୍ଷା ଦୀନ୍ହୀ ।
ଜପ ତପ ଧର୍ମ ବତାଇ ଜନନି ତେ ଅନୁମତି ଲୀନ୍ହୀ ।।
ବୈଦେହୀ ବନ ଚଲନ ହିତ, ହଠ ଅତି କୀନ୍ହୀ ସଗ ଲଇଂ ।
ଚଲେ ରାମ ପାଛେ ଲଖନ, ମଧ୍ୟ ଜାନକୀ ଚଲୀଦଇଂ ।।"

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ପରୀକ୍ଷିତ, ଯେଉଁ ଶ୍ରୀରାମଚନ୍ଦ୍ର ନିଜର ପ୍ରିୟ ରାଜ୍ୟ, ଭାଇ ଓ ରାଜଲକ୍ଷ୍ମୀଙ୍କୁ ତ୍ୟାଗ କରି ନିଃସ୍ପୃହ ଭାବରେ ବନକୁ ଚାଲିଗଲେ, ସେହି ଶ୍ରୀରାମ ଆମକୁ ରକ୍ଷା କରନ୍ତୁ ।

ଧର୍ମସଙ୍କଟ ସମୟରେ ଯେ ବିଚଳିତ ନ ହୁଏ, ସବୁ କିଛି ଭୋଗବିଳାସର ସାଧନ ଥିଲେ ମଧ୍ୟ ଯେ ନିଃସ୍ପୃହ ଭାବରେ ସବୁ ତ୍ୟାଗ କରିପାରେ ଏବଂ ଗୁରୁଜନମାନେ ଅସୁବିଧାରେ ପଡ଼ିଥିବା ସମୟରେ ଯେ ସ୍ୱାର୍ଥସାଧନ ଲାଗି ଇଚ୍ଛା ନ କରେ, ସେହି ଏକମାତ୍ର ପୁଣ୍ୟଶ୍ଳୋକ ସାଂସାରିକ ବିଷୟ ବାସନା ପ୍ରତି ଆଗ୍ରହ ପ୍ରକାଶ କରିବା ମୃତ୍ୟୁ ତୁଲ୍ୟ ଏବଂ ଅମର କୀର୍ତ୍ତି ଅର୍ଜନ ପାଇଁ ଅଭିଳାଷ କରିବା ହେଉଛି—ପ୍ରକୃତ ଜୀବନ । ଶ୍ରୀରାମଙ୍କ ଜୀବନଧାରାରେ କାମନାର ଗନ୍ଧବାସନା ନାହିଁ, ବିଷୟବାସନ

ପ୍ରତି ସ୍ପୃହା ନାହିଁ, ଭୋଗବିଳାସ ପ୍ରତି ଆକାଂକ୍ଷା ନାହିଁ, ଦୁଃଖ ଭୋଗ ଲାଗି ଚିନ୍ତା ନାହିଁ ଏବଂ ସର୍ବୋପରି ସେ ହିଁ ତାଙ୍କ ଜୀବନର ଉଦାହରଣ । ଶ୍ରୀରାମ ସ୍ୱଚ୍ଛନ୍ଦ ଗତିରେ ବନ୍ଧ ଭାଙ୍ଗିଥିବା ତଟିନୀ ପରି ନିର୍ମଳ ଏବଂ ତାଙ୍କ ପାଇଁ ଘର ଓ ଘୋରବନ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଶ୍ରୀରାମ ରାଜକୀୟ ଭୋଜ୍ୟବସ୍ତୁ ଅପେକ୍ଷା ବଣର ଫଳମୂଳକୁ ଅଧିକ ଆଦରର ସହିତ ଗ୍ରହଣ କରୁଥିଲେ । ତାଙ୍କ ମନରେ ବିଷୟ ଭୋଗ ଲାଗି ତୃଷ୍ଣା ନ ଥିଲା ବରଂ ସେ ଭବଭକ୍ତକୁ ଆଦର କରୁଥିଲେ । ଶ୍ରୀରାମ ଯେ କୌଣସି ଜାତ୍ ଆଗରେ ମୁଣ୍ଡ ନୁଆଁଇ ଦେଇ ଜାତ୍‌ଖୋରକୁ ଆଦର କରୁଥିଲେ । ସେ ଆଶ୍ରିତ ଜନକୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ ଏବଂ ଶରଣାଗତର ସୁରକ୍ଷା ନିମିତ୍ତ ନିଜକୁ ବଳି ବେଦୀ ଉପରେ ଉତ୍ସର୍ଗ କରି ଦେଉଥିଲେ ।

ଶ୍ରୀରାମ କୈକେୟୀଙ୍କ ପୁରରୁ ଆସି ମାତା କୌଶଲ୍ୟାଙ୍କ ପୁରରେ ପହଞ୍ଚିଲେ । ସେତେବେଳକୁ କୌଶଲ୍ୟା ଉଠି ସାରି ସ୍ନାନ, ପୂଜା ତଥା ଜପ ଆଦି ଶେଷ କରି ପୁତ୍ରର ମଙ୍ଗଳ କାମନାରେ ବହୁବିଧ ଦାନ ସାମଗ୍ରୀ ଏକତ୍ରିତ କରିଥିଲେ । ଶ୍ରୀରାମ ଅତ୍ୟନ୍ତ ସାଧାରଣ ଭାବରେ ଯାଇ ମାତାଙ୍କ ଚରଣ ବନ୍ଦନା କଲେ । ମାତା ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ଆଶୀର୍ବାଦ କରି ତାଙ୍କୁ ଆସନ ପକାଇ ବସିବା ଲାଗି ଇଙ୍ଗିତ କଲେ । ଶ୍ରୀରାମ ଆସନଟିକୁ ଉଠାଇ ଦେଇ ମାଆଙ୍କ ପାଖରେ ସେହିଠାରେ ଭୂଇଁରେ ବସିପଡ଼ି ଧୀର ଏବଂ ପ୍ରଶାନ୍ତ ମନରେ କହିଲେ—"ମାଆ, ମୁଁ ଗୋଟିଏ କଥା କହିବି, ତୁମେ ଦୁଃଖିତ ହେବ ନାହିଁ ତ ?"

ମାତା କୌଶଲ୍ୟା ଶ୍ରୀରାମଙ୍କ ପିଠି ଆଉଁସି ଦେଇ କହିଲେ—"ବତ୍ସ,, ଦୁଃଖିତ ହେବା ଭଳି ଅବସର ବା କାହିଁ । ଆଜି ତ ଗୋଟିଏ ଶୁଭଦିନ । ତୁ ରାଜସିଂହାସନରେ ଅଭିଷିକ୍ତ ହେବାକୁ ଯାଉଛୁ ପରା ? ଏହା'ଠାରୁ ବଳି ଆଉ ଅଧିକ ଆନନ୍ଦକର ଘଟଣା ମୋ' ପକ୍ଷରେ କ'ଣ ହୋଇପାରେ !"

"ହଁ ମାଆ ହେବାର ଥିଲା, କିନ୍ତୁ···। ଶ୍ରୀରାମଙ୍କ ମୁଖରୁ 'କିନ୍ତୁ' ଶବ୍ଦଟି ଶୁଣିବା ମାତ୍ରେ କୌଶଲ୍ୟାଙ୍କ ହୃଦୟରେ ଛୁରୀ ଭୁସିଗଲା ପରି ବୋଧ ହେଲା, ସେ ଶ୍ରୀରାମଙ୍କ ମୁଖ ମଣ୍ଡଳକୁ ନିରୀକ୍ଷଣ କରି ଦେଖିଲେ । ସେ ମୁଖ ମଣ୍ଡଳରେ ବିଷାଦର ଛାୟା ଆଦୌ ନଥିଲା । ବରଂ ପୂର୍ବପରି ତାଙ୍କ ମୁଖରୁ ପ୍ରସନ୍ନତାର ଆଭା ସହଜରେ ଝରି ପଡ଼ୁଥିଲା । କୌଶଲ୍ୟା ଲକ୍ଷ୍ମଣଙ୍କ ମୁହଁକୁ ଚାହିଁ ଦେଇ ଥରି ଉଠିଲେ । ଲକ୍ଷ୍ମଣ କ୍ରୋଧର ମୂର୍ତ୍ତିମାନ ସ୍ୱରୂପ ହୋଇ ଉଠିଥିଲେ । ତାଙ୍କ ଚକ୍ଷୁ ରକ୍ତବର୍ଣ୍ଣ ଦିଶୁଥିଲା । କିନ୍ତୁ ଶ୍ରୀରାମଙ୍କ ପ୍ରଭାବରେ ପ୍ରଭାବିତ ହୋଇ ସେ ମୁହଁରୁ ପଦେ ହେଲେ କଥା ବାହାର କରୁ ନଥିଲେ । ମାତା କୌଶଲ୍ୟା ମନେ ମନେ ଅସମଞ୍ଜସରେ ପଡ଼ି ଲକ୍ଷ୍ମଣଙ୍କୁ ପଚାରିଲେ—"ବତ୍ସ ଲକ୍ଷ୍ମଣ, ମୋତେ କହିଲୁ, ଏ 'କିନ୍ତୁ' ପୁଣି କଅଣ ?

"କିନ୍ତୁ ମାଆ......", କ୍ରୋଧରେ ଥର ଉଠି ଲକ୍ଷ୍ମଣ କହିଲେ—"ବିଶେଷ କିଛୁ ଅସୁବିଧା ହୋଇ ନଥିଲା ଯେ, କିନ୍ତୁ...ଭାଇ...ସବୁ କିଛୁ ଅସୁବିଧା ନିଜେ ଜାଣିଶୁଣି କରି ଦେଲେ...... ।"

ଶ୍ରୀରାମ ଅତ୍ୟନ୍ତ ନମ୍ର ସ୍ୱରରେ ଲକ୍ଷ୍ମଣଙ୍କୁ ବୁଝାଇ କହିଲେ—"ଭାଇ ଲକ୍ଷ୍ମଣ, ମଣିଷ ମଣିଷକୁ ଅସୁବିଧାରେ ପକାଇ ନ ପାରେ ଦଇବ ଦଉଡ଼ି ମଣିଷ ଗାଣ୍ଡି, ଯେଣିକି ଓଟାରେ ସେଣିକି ଯାଇ । ବିଧାତାଙ୍କ ନିର୍ଦ୍ଦେଶ ଆଗରେ କାହାର ଶକ୍ତି କିମ୍ବା ସାମର୍ଥ୍ୟ କିଛି ହେଲେ କାମ କରେ ନାହିଁ...... ।"

ଶ୍ରୀରାମଙ୍କ ଭୂଣ୍ଡରୁ କଥା ଛଡ଼ାଇ ନେଇ ଲକ୍ଷ୍ମଣ କହିଲେ—"ଭାଇ, ମୋତେ ସେପରି ଆଶ୍ୱାସନା ଦିଅନ୍ତୁ ନାହିଁ । ପୌରୁଷହୀନ ଅଳସୁଆ ଲୋକେ ଭାଗ୍ୟ ଭାଗ୍ୟ ବୋଲି କହି ହୁଅନ୍ତି । କର୍ତ୍ତବ୍ୟ ପରାୟଣ କର୍ମବୀର ନିଜ ଭାଗ୍ୟର ବକ୍ରରେଖାକୁ ଅନାୟାସରେ ସଳଖ କରାଇ ପାରେ । ସବୁବେଳେ ନତ ମସ୍ତକ ହୋଇ ସମସ୍ତଙ୍କର ଉଚିତ ଅନୁଚିତ ଉପଦେଶକୁ ଶୁଣି ସେହି ଅନୁସାରେ କାର୍ଯ୍ୟ କରି ଚାଲିଲେ ମଣିଷ ଗୋଟିଏ ମୁହୂର୍ତ୍ତ ମଧ୍ୟ ଏ' ସଂସାରରେ ଚଳି ପାରିବ ନାହିଁ !"

ମାତା କୌଶଲ୍ୟା ନିତାନ୍ତ ବ୍ୟଗ୍ର ହୋଇ ପଚାରିଲେ—"ଲକ୍ଷ୍ମଣ, କଥା କ'ଣ ମୋତେ ପରିଷ୍କାର ଭାବରେ କହୁ ନାହୁଁ କାହିଁକି ?"

"କଅଣ କହିବି ମାଆ ..!" ସିଂହଶାବକ ପରି ଗର୍ଜି ଉଠିଲେ ଲକ୍ଷ୍ମଣ —"ତୁମେ ସବୁ କିଛି ଜାଣିଛ । ମହାରାଜ ବୃଦ୍ଧ ତଥା ଅକର୍ମଣ୍ୟ ହୋଇ ପଡ଼ିଛନ୍ତି । ତାଙ୍କର ବୁଦ୍ଧିବୃତ୍ତି ସବୁ ଲୋପ ପାଇ ଯାଇଛି । ସେ କୈକେୟୀଙ୍କ ହାତରେ ସଖୀ କଣ୍ଢେଇ ହୋଇ ସେହି ଅନୁସାରେ ନାଚିବାରେ ଲାଗିଛନ୍ତି । ସେ ପିଶାଚୀନୀ ଦୁର୍ଦ୍ଧର୍ଷଣର କେତୁକା ସାଜି ମହାରାଜାଙ୍କଠାରୁ ଦୁଇଟି ବର ପାଇଛି । ପ୍ରଥମ ବରଟି—ଶ୍ରୀରାମ ଚଉଦ ବର୍ଷ ବନବାସ କରନ୍ତୁ ଓ ଦ୍ୱିତୀୟ ବରଟି ହେଉଛି—ଭରତ ଅଯୋଧ୍ୟାର ସିଂହାସନରେ ଅଭିଷିକ୍ତ ହେଉ ! ଭାଇ ସେ ପାପିଷ୍ଠା ଆଗରେ ମୁଣ୍ଡ ନୁଆଁଇ ସବୁକଥା ମାନିଗଲେ । କିନ୍ତୁ ମାଆ..." କ୍ରୋଧରେ ଥରି ଉଠିଲେ ଲକ୍ଷ୍ମଣ । ତାଙ୍କର କଣ୍ଠରୋଧ ହୋଇଗଲା । ସେ କୌଣସି ମତେ ନିଜର କ୍ରୋଧକୁ ଆୟତ୍ତ କରି କହିଲେ—"ସେ ମାନି ନିଅନ୍ତୁ ପଛକେ, ମୁଁ କେବେହେଲେ ଏହା କରାଇ ଦେବି ନାହିଁ । ମୁଁ ମୋର ବାହୁବଳରେ କୈକେୟୀର ସମସ୍ତ ପ୍ରକାର ଷଡ଼ଯନ୍ତ୍ରକୁ ଛିନ୍ନଛିନ୍ନ କରି ଦେଇ ଶ୍ରୀରାମଙ୍କୁ ରାଜସିଂହାସନରେ ବସାଇବି ! ମୋର ପ୍ରଗତି ପଥରେ ଯେ ବାଧା ଦେବ, ସ୍ୱୟଂ ମହାରାଜ ହେଲେ ମଧ୍ୟ ମୁଁ ତାଙ୍କୁ ବନ୍ଦୀକରି କାରାଗାର ମଧ୍ୟରେ ବସାଇ ଦେବି । ମାଆ..., ତୁମ ଶ୍ରୀଚରଣରେ ମୋର ଏକମାତ୍ର ଅନୁରୋଧ, ତୁମେ ଶ୍ରୀରାମଙ୍କୁ ବୁଝାଇ

ଦିଅ । ସେ ରାଜସିଂହାସନରେ ବସିବା ଲାଗି ରାଜା ହୋଇ ଯାଆନ୍ତୁ । ତା'ପରେ ଯାହା କିଛି ଭଗବାନ୍ଙ୍କ କଥା ମୁଁ ବରି ନେବ । ଆଜି ସଂସାରବାସୀ ଲକ୍ଷ୍ମଣର ବାହୁବଳ ପରୀକ୍ଷା କରିନେବେ । ମୋ' ଧନୁଶରକୁ ମୁଁ କେବଳ ସୁଅବସରରେ ପୂଜା କରିବା ପାଇଁ ରଖିନାହିଁ ! ତା'ର ସାହାଯ୍ୟରେ ମୁଁ ଅସାଧ୍ୟ ଶତ୍ରୁଙ୍କୁ ମଧ୍ୟ ସାଧ୍ୟ କରି ପାରିବ !''

ଶ୍ରୀରାମ ଲକ୍ଷ୍ମଣଙ୍କୁ କୋଳକୁ ଟାଣି ଆଣିଲେ । ସେ ତାଙ୍କ ପିଠି ଆଉଁସି ଦେଇ କହିଲେ – ''ଭାଇ, ତୁ ଏବେ ନିଜର ଅଧୀନରେ ନାହୁଁ । କ୍ରୋଧର ବଶବର୍ତ୍ତୀ ହେବା ମନୁଷ୍ୟ ପକ୍ଷରେ ସବୁଠାରୁ ବଡ଼ ଭୁଲ । ମୁଁ ଅକର୍ମଣ୍ୟ କିମ୍ବା ଅଳସୁଆ ହୋଇଥିବାରୁ ବନକୁ ପଳାଇ ଯାଉ ନାହିଁ । ପିତାମାତା ହେଉଛନ୍ତି – ପରମ ଆରାଧ୍ୟ । ତାଙ୍କର ସତ୍ୟନିଷ୍ଠା ତଥା ରଘୁକୁଳର ମର୍ଯ୍ୟାଦାକୁ ଜଗି ମୁଁ ବନବାସ କରିବା ଲାଗି ସିଦ୍ଧାନ୍ତ ଗ୍ରହଣ କରିଛି । ଭରତ ରାଜା ହେଉ, ଏଥିରେ ମୋର ଭଲେ-ହେଲେ ଆପତ୍ତି ନାହିଁ । ତାହା ମୋ' ପକ୍ଷରେ ହେବ ସବୁଠାରୁ ଆନନ୍ଦର ବିଷୟ... ।''

ମାତା କୌଶଲ୍ୟା ଦୁଇଭାଇଙ୍କ ଉକ୍ତି ପ୍ରତ୍ୟୁକ୍ତିରୁ ସବୁ ଘଟଣା ବେଶ୍ ବୁଝି ପାରିଲେ । ତାଙ୍କ ମୁଣ୍ଡରେ ବଜ୍ର ପଡ଼ିଗଲା ପରି ତାଙ୍କୁ ବୋଧ ହେଲା । ସେ କ୍ଷଣକାଳ ଲାଗି ବାକ୍‌ଶକ୍ତି ହରାଇ ବସିଲେ । କିଛି ମୁହୂର୍ତ୍ତ ପରେ ତାଙ୍କ ଆଖିରୁ ଝର ଝର ହୋଇ ଲୁହର ଧାର ଝରିବାକୁ ଲାଗିଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ—''ମୁଁ କେତେ ଜନ୍ମ ଧରି କେତେ ଯେ ପାପ କରିଛି, ତାହା ଏହି ଜନ୍ମରେ ମୋତେ ଭୋଗିବାକୁ ପଡ଼ୁଛି । ମୁଁ ପାପିନୀ, କେଉଁ ଜନ୍ମରେ ମାଆଠାରୁ ପୁଅକୁ ପୃଥକ୍ କରାଇଛି; ସ୍ୱାମୀଠାରୁ ପତ୍ନୀକୁ ବିମୁଖ କରାଇ ବାର କୁଚେଷ୍ଟା କରିଛି । ତେଣୁ ଏ ଜୀବନରେ ମୁଁ ସୁଖ ପାଇ ପାରିବ ନାହିଁ । ଜୀବନରେ ଭଲେ ହେଲେ ସୁଖ ପାଇନାହିଁ କିମ୍ବା ଭବିଷ୍ୟତରେ ମୋ' ଭାଗ୍ୟରେ ସୁଖ ଲେଖା ନାହିଁ । ମୁଁ ରାଜପ୍ରାସାଦରେ ପାଦ ଦେଲା ଦିନରୁ ଦୁଃଖ ମୋର ଚିର ସହଚର ହୋଇ ରହିଛି । ପ୍ରଥମରେ ପୁତ୍ରହୀନା ହୋଇ ମୁଁ ମହାଚିନ୍ତା ତଥା ଗୁରୁଜନମାନଙ୍କ ଲାଞ୍ଛନାର ପାତ୍ରୀ ହୋଇଥିଲି । ତା ପରେ ପରେ ସପତ୍ନୀମାନଙ୍କ ଜ୍ୱାଳାରେ ମୋର ଶରୀର ସଦା ସର୍ବଦା ଜଳିବାକୁ ଲାଗିଲା । କିନ୍ତୁ ବୃଦ୍ଧାବସ୍ଥାରେ ପୁତ୍ରର ମୁଖ ଦର୍ଶନ କରି ମୁଁ ଅତୀତର ଦୁଃଖକୁ ସହଜରେ ଭୁଲି ଯାଇଥିଲି । ପତି ତଥା ସପତ୍ନୀଙ୍କ ଅବହେଳାକୁ ମୁଁ କେବଳ ଶ୍ରୀରାମର ଚନ୍ଦ୍ରବଦନକୁ ଚାହିଁ ପାଶୋରି ପକାଇଥିଲି । କାରଣ, ମୋର ଆଶା ଥିଲା —ଶ୍ରୀରାମ ବଡ଼ ହୋଇ ରାଜସିଂହାସନରେ ବସିବ । ସେତେବେଳେ ମୋର ସମସ୍ତ ଦୁଃଖ ସୁଖରେ ପରିଣତ ହୋଇଯିବ । ମୁଁ ମନେ ମନେ ସବୁ ଦୁଃଖକୁ ଚାପିରଖି

ଉପରେ ଉପରେ ହସୁଥିଲି, ଆନନ୍ଦିତା ହେଉଥିଲି । କାରଣ, ଶ୍ରୀରାମ ମୋ' ଅନ୍ତରର ଦୁଃଖ ନ ଜାଣୁ, ଏହାହିଁ ଥିଲା—ମୋର ଏକମାତ୍ର ଉଦ୍ଦେଶ୍ୟ । ମଙ୍ଗଳ କାମନା ପାଇଁ ମୁଁ କଷ୍ଟ ସହି କେତେ ଦେବ ଦେବୀଙ୍କ ବ୍ରତ-ଉପବାସ କରୁଥିଲି । ସମସ୍ତଙ୍କ ଆଗରେ ମୁଣ୍ଡ ନୁଆଇଁ ଶ୍ରୀରାମ ପାଇଁ ଶୁଭାଶିଷ ମାଗୁଥିଲି, ମନେ ମନେ କାନ୍ଦୁଥିଲେ ମଧ୍ୟ ଉପରକୁ କେବେ ହେଲେ ତାହା ପ୍ରକାଶ କରୁ ନ ଥିଲି ।

ବତ୍ସ, ମୁଁ କାଲିଠାରୁ ମନେ ମନେ ଆନନ୍ଦିତା ହୋଇ ଉଠିଥିଲି । କିନ୍ତୁ ବିଧାତା ମୋ' କପାଳରେ କେବେହେଲେ ସୁଖ ଲେଖି ନାହାନ୍ତି । କେବଳ ଦୁଃଖରେ ମୋ' ଜୀବନ ଢଳଢଳ ହୋଇ ଜଳୁ, ଏହାହିଁ ପରମାତ୍ମାଙ୍କ ଉଦ୍ଦେଶ୍ୟ । ମୋ' ପ୍ରାଣର ପ୍ରିୟପୁତ୍ର ରାଜ ସିଂହାସନରେ ବସିବା ପରିବର୍ତ୍ତେ ମୋ' ଗୃହରେ ଛାଡ଼ିଦେଇ ସେ ବନକୁ ଚାଲି ଯିବାକୁ ବସିଛି । ଏହାଠାରୁ ଅଧିକ ଦୁଃଖ ମୋ' ପକ୍ଷରେ କ'ଣ ହୋଇପାରେ !

"ମୁଁ ଜାଣେ, ରାମ ମୋ' କଥା ମାନିବ ନାହିଁ । ତା'ର ହୃଦୟ ମୁଁ ଜାଣେ । ତା' ହୃଦୟ ପିତୃମାତୃଙ୍କ ପ୍ରତି ଭକ୍ତିରେ ପୂରି ରହିଛି । କିନ୍ତୁ···ସେ ରାଜଭୋଗ ଛାଡ଼ି କିପରି ବନରେ ବୁଲି ବୁଲି ଫଳମୂଳ ଖାଇ ଜୀବନ ଧାରଣ କରିବ ? ମୁଁ ଯେତେ ପ୍ରକାର କାକୁତି ମିନତି କରି ତାକୁ ଅଟକାଇଲେ ମଧ୍ୟ ସେ କେବେହେଲେ ମୋ କଥା ମାନିବ ନାହିଁ ।"

"ରାମ ! ମୋର ସ୍ନେହର ଗଳାମାଳା !! ମୋ' ରକ୍ତନୀର ଥାଳ !!! ମୁଁ ତୋତେ ଜୀବନରେ କେବେହେଲେ କିଛି ମାଗି ନାହିଁ । ମୁଁ ତୋତେ ଦଶମାସ ଗର୍ଭରେ ଧାରଣ କରିଛି । ତୋତେ ପିଲାଟି ଦିନରୁ ପାଳି ପୋଷି ଆଜି ଏପରି ଅବସ୍ଥାରେ ଆଣି ଛିଡ଼ା କରାଇଛି । ତେଣୁ ଗୋଟିଏ ଅନୁରୋଧ କରୁଛି । ମୋର ବିଶ୍ୱାସ—ତୁ ମୋ' ମାଗୁଣି ରକ୍ଷା କରିବୁ । ମୁଁ ତୋ ଆଗରେ କାନି ପତାଇ ଗୋଟିଏ ଭିକ ମାଗୁଛି । ପୁଅରେ··· ! ମୋର ସେହି ଭିକ୍ଷା ହେଉଛି—ତୁ ମୋତେ ସାଥିରେ ବନକୁ ନେଇ ଯାଆ ! ମୁଁ ରାଜ ସୁଖ ଚାହେଁ ନାହିଁ, ରାଜପ୍ରାସାଦରେ ମୋର ରହିବା ଦରକାର ନାହିଁ । ଏ ଧନ ଐଶ୍ୱର୍ଯ୍ୟକୁ ମୁଁ ପାଦରେ ଏଡ଼ାଇ ଦେଉଛି । ମୁଁ ଚାହେଁ—ରାମ ମୋ' କୋଳରେ ଥାଉ ! ମୁଁ ତୋ'ର ମୁଖ ଚାହିଁ ବନରେ ରାଜସୁଖ ଭୋଗ କରିବାର ଆନନ୍ଦ ପାଇବି···" ଏତିକି କହି ମହାରାଣୀ କୌଶଲ୍ୟା କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ ।

ଶ୍ରୀରାମ ମାଆଙ୍କୁ ତଳୁ ଉଠାଇ ଅତ୍ୟନ୍ତ ସ୍ନେହବୋଳା ସ୍ୱରରେ କହିଲେ—"ମାଆ, ତୁମେ ଯାହା କହୁଛ, ତାହା ଜଣେ ମହାରାଣୀଙ୍କ ମୁଖରେ

ଶୋଭା ପାଉ ନାହିଁ । ଭରତ ରଜା ହେଲେ, ମୋର ପରି ଆଦର ଓ ଶ୍ରଦ୍ଧା କରିବ । ଚଉଦ ବର୍ଷ ପରେ ମୁଁ ପୁଣି ତୁମର ପାଦପୂଜା କରିବି । ମାଆ···, ନାରୀର ଏକମାତ୍ର ଆରାଧ୍ୟ ଦେବତା ହେଉଛନ୍ତି ସ୍ୱାମୀ । ପିତା ବଞ୍ଚି ଥାଉଁ ଥାଉଁ ତୁମେ ତାଙ୍କ ପାଦ ସେବା ତ୍ୟାଗ କରି କୈକେୟୀଙ୍କ ପରି ପୁଅର ପଛେ ପଛେ ବନକୁ ଚାଲିଗଲେ ତୁମ ନାମରେ କଳଙ୍କ ରହିବ । ମାଆ···, ତୁମେ ଭଲଭାବରେ ଜାଣିଛ, ନାରୀର ଇହ ଓ ପରକାଳର ଏକମାତ୍ର ଆଶା ଭରସାର ସ୍ଥଳ ହେଉଛନ୍ତି ସ୍ୱାମୀ । ପିତା,ଭାଇ ଓ ଅନ୍ୟାନ୍ୟ ଆତ୍ମୀୟ କେବେ ହେଲେ ପତିଙ୍କ ସଦୃଶ ହୋଇ ପାରିବେ ନାହିଁ । ମାଆ···, ତୁମେ ମୋ' ସହିତ ବନକୁ ଯିବା ଲାଗି ଆଉ ଇଚ୍ଛା କର ନାହିଁ । ଭରତ ମଧ୍ୟ ତୁମରି କୋଳରେ ଲାଳିତ ପାଳିତ ହୋଇଛି । ତୁମେ ତାକୁ ମୋରି ପରି ସ୍ନେହ କର । ସେ ତୁମର ମଧ୍ୟ ସ୍ନେହର ପୁତ୍ର······ ।''

ଏହି ସମୟରେ ଲକ୍ଷ୍ମଣ ଗର୍ଜି ଉଠି କହିଲେ—''ମାଆ, ଲକ୍ଷ୍ମଣ ପ୍ରାଣରେ ଥାଉଁ ଥାଉଁ ଶ୍ରୀରାମଚନ୍ଦ୍ର କେବେହେଲେ ବନକୁ ଯାଇ ପାରିବେ ନାହିଁ କିମ୍ବା ଭରତ ମଧ୍ୟ ରାଜସିଂହାସନରେ ବସି ପାରିବ ନାହିଁ । ମାଆ···, ତୁମେ ଭାଇଙ୍କୁ ବୁଝାଇ ଦିଅ । ସେ ବନକୁ ଯିବାର ଜିଦ୍ ଛାଡ଼ି ଦିଅନ୍ତୁ ।''

ଶ୍ରୀରାମ ବିରକ୍ତି ମିଶା ସ୍ୱରରେ କହିଲେ—''ଲକ୍ଷ୍ମଣ, ତୁ ଏପରି ବାକ୍ୟ ମୁହଁରୁ ବାହାର କରନା·· ! ମୁଁ ପିତାଙ୍କ ଆଜ୍ଞା କେବେହେଲେ ଅବଜ୍ଞା କରି ପାରିବି ନାହିଁ । ସୂର୍ଯ୍ୟ ନିଜ ଗତି ପରିବର୍ତ୍ତନ କରି ପାରନ୍ତି, ବ୍ରହ୍ମାଣ୍ଡ ଓଲଟପାଲଟ ହୋଇଯାଇପାରେ, କିନ୍ତୁ ମୁଁ ମୋ' ନିଷ୍ପତ୍ତିରୁ କେବେ ହେଲେ ଓହରି ଯିବି ନାହିଁ । ଲକ୍ଷ୍ମଣ ତୁ ରାଜଭୋଗ ଇଚ୍ଛା କରୁଛୁ କି ? ···· ବେଶ୍, ଭରତ ଆସୁ, ମୁଁ ତାକୁ କହିବି, ସେ ତୋତେ ସିଂହାସନରେ ବସାଇ ଦେବ । ରାଜସିଂହାସନ ପ୍ରତି ତୋ' ମନରେ ପ୍ରବଳ ତୃଷ୍ଣା ରହିଛି, ତୁ ରାଜା ହୋଇ ସୁଖରେ ରହିବୁ । ମୋର ସେଥିପ୍ରତି ଟିକେ ହେଲେ ଲୋଭ ନାହିଁ । ''

ଶ୍ରୀରାମଙ୍କ ପ୍ରତିବାଦ ପୂର୍ଣ୍ଣ ବାକ୍ୟ ଶୁଣି ଲକ୍ଷ୍ମଣ ମନେ ମନେ ଲଜ୍ଜିତ ହୋଇ ତଳକୁ ମୁହଁ କରି ଛିଡ଼ା ହୋଇ ରହିଲେ । ମାଆ ମଧ୍ୟ ବେଶ୍ ଜାଣିଗଲେ—ଲକ୍ଷେ ଚେଷ୍ଟା କଲେ ମଧ୍ୟ ରାମକୁ ତା' ଗନ୍ତବ୍ୟପଥରୁ କେହି ଫେରାଇ ପାରିବେ ନାହିଁ । ତେଣୁ ସେ କାନ୍ଦି କାନ୍ଦି ଶ୍ରୀରାମଙ୍କ ହସ୍ତରେ ରକ୍ଷାସୂତ୍ର ବାନ୍ଧି ଦେଇ କହିଲେ—''ବତ୍ସ, ବନ ଦେବତାଗଣ ତୋତେ ରକ୍ଷା କରନ୍ତୁ ! ମୁଁ ଆଜିଠାରୁ ତୋ'ରି ପାଇଁ ପୁଣି ବ୍ରତଚାରିଣୀ ହେବି । ବତ୍ସ, ବନରେ ବୁଲି ତୁ ଏ' ଅଭାଗିନୀ ମାଆଟିକୁ ଭୁଲି ଯିବୁ ନାହିଁ । ଯଦି ଜୀବନରେ ବଞ୍ଚିଥାଏ, ତେବେ ଚଉଦ ବର୍ଷ ପରେ ତୋ' ମୁଖଚନ୍ଦ୍ରମା

ଦର୍ଶନ କରିବ । କୁମାର, ଧର୍ମ ରକ୍ଷା ପାଇଁ, କୁଳର ମର୍ଯ୍ୟାଦା ବୃଦ୍ଧି କରିବା ଲକ୍ଷ୍ୟ ନେଇ, ତୁ ପୁତ୍ରଧର୍ମ ପାଳନ କରିବାକୁ ଯାଉଛୁ । ତୋତେ ତ୍ରିଦଶ ଦେବଗଣ ବନରେ ସହାୟ ହୁଅନ୍ତୁ ।"

ଏତିକି କହି ମାତା କୌଶଲ୍ୟା ଶ୍ରୀରାମଙ୍କ ଶିରରେ ହାତ ବୁଲାଉଥିବା ଅବସ୍ଥାରେ ଗଛକାଟିଲା ପରି ତଳେ ମୂର୍ଚ୍ଛିତା ହୋଇ ପଡ଼ିଗଲେ । ଶ୍ରୀରାମ ଓ ଲକ୍ଷ୍ମଣ ଦୁହେଁ ତାଙ୍କୁ ତଳୁ ଉଠାଇ ଶେଯରେ ଶୁଆଇ ଦେଲେ । ଶ୍ରୀରାମ ମାତାଙ୍କ ଚରଣ ସ୍ପର୍ଶ କରି ସେଠାରୁ ସୀତାଙ୍କ ନିକଟକୁ ଚାଲିଗଲେ ।

ସୀତା ଦେବୀ ଦୂରରୁ ଲକ୍ଷ୍ୟ କରି ଦେଖିଲେ—ଶ୍ରୀରାମଙ୍କ ଶିରରେ ରାଜଛତ୍ର ନାହିଁ । କୌଣସି ସୂତ ମାଗଧ ତାଙ୍କ ପଛେ ପଛେ ସ୍ତୁତି ପାଠ କରି ଆସୁ ନାହାନ୍ତି । ସେ ମଧ୍ୟ ରଥରେ ଆରୋହଣ କରି ଆସୁ ନାହାନ୍ତି । ତାଙ୍କ ଶିରର କୁଞ୍ଚିତ କେଶରାଶି ଅସ୍ତବ୍ୟସ୍ତ ହୋଇ ରହିଛି । ପଛରେ ଆସୁଥିବା ଲକ୍ଷ୍ମଣଙ୍କ ମୁଖମଣ୍ଡଳରେ ଉତ୍ତେଜନା ପୂରି ରହିଛି ଏବଂ ଶ୍ରୀରାମଙ୍କ ମୁଖମଣ୍ଡଳ ଚନ୍ଦ୍ରାଗ୍ରସ୍ତ ଥିଲାପରି ଜଣା ପଡୁଛି । ସୀତା ଏହା ଲକ୍ଷ୍ୟ କରି ଆଶ୍ଚର୍ଯ୍ୟ ହୋଇ ଯାଇ କହିଲେ—"ପ୍ରାଣନାଥ, ଆଜି ପରି ଶୁଭ ଦିନରେ ମୁଁ ଏ କ'ଣ ଦେଖୁଛି । ଯେଉଁ ମୁଖମଣ୍ଡଳରୁ ଆନନ୍ଦର ନିସ୍ୟନ୍ଦନୀ ସଦାସର୍ବଦା ଝରି ପଡ଼ୁଥାଏ, ସେଥିରେ ଚିନ୍ତାର ଆଶ୍ରୟ ହୋଇଛି କିପରି ? ଆଜିର ଏହି ଉତ୍ସବ-ମୁଖର ଦିନରେ ମୋ' ମନ ଏପରି ବିକଳ ହେଉଛି କାହିଁକି ? ଗୁରୁଦେବ କାଲି କହି ଯାଇ ଥିଲେ, ଆଜିର ପୁଣ୍ୟ ଲଗ୍ନରେ ଆପଣଙ୍କର ଅଭିଷେକ ନିଷ୍ପନ୍ନ ହେବ । ତେଣୁ ଆମେ କାଲିଠାରୁ ବ୍ରତ ପାଳନ କରିଥିଲେ । କିନ୍ତୁ ବର୍ତ୍ତମାନ ମୁଁ ତ ରାଜ୍ୟାଭିଷେକର କୌଣସି ଲକ୍ଷଣ ଦେଖିପାରୁ ନାହିଁ । ତା' ହେଲେ କ'ଣ ସତ୍ୟସନ୍ଧ ମହାରାଜ ତାଙ୍କ ନିଷ୍ପତ୍ତି ପରିବର୍ତ୍ତନ କରିଦେଲେ ?

ସୀତାଙ୍କର ଶଙ୍କାକୁଳ ତଥା ସରଳ ବାକ୍ୟମାନ ଶୁଣି ଶ୍ରୀରାମ ମନେ ମନେ ଅତ୍ୟନ୍ତ ବ୍ୟଥିତ ହୋଇଗଲେ । ସେ ରାଜ୍ୟ ତ୍ୟାଗ କରିବା ନିମନ୍ତେ ଟିକେହେଲେ ଚିନ୍ତା କରୁ ନଥିଲେ, କିନ୍ତୁ ସୀତାଙ୍କ ରାଜପ୍ରାସାଦର ସ୍ମୃତି, ତାଙ୍କ ବିରହ ଦୁଃଖରେ ସେ ବନଗମନ ଲାଗି ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଲେ । ତଥାପି ସେ ମୁଖମଣ୍ଡଳରେ ହାସ୍ୟରେଖାଟିଏ ଟାଣି ଦେଇ କହିଲେ—"ପ୍ରିୟେ, ରାଜ୍ୟାଭିଷେକ ଉତ୍ସବରେ ସାମାନ୍ୟ ପରିବର୍ତ୍ତନ ଘଟିଛି ।"

ମର୍ମନ୍ତୁଦ ଦୁଃଖ, ଆଶଙ୍କା, ସନ୍ତ୍ରମ ତଥା ଶୀଘ୍ରତାର ସହିତ ସୀତା ପଚାରିଲେ—"କି ପ୍ରକାର ପରିବର୍ତ୍ତନ...... ?"

ଶ୍ରୀରାମ ଅତ୍ୟନ୍ତ ସରଳ ଭାବରେ କହିଲେ—"ପ୍ରିୟେ, ପିତା ମୋତେ ଅଯୋଧ୍ୟା ରାଜସିଂହାସନ ବଦଳରେ ବନରାଜ୍ୟର ରାଜସିଂହାସନ ଆରୋହଣ କରିବାକୁ ଆଦେଶ ଦେଇଛନ୍ତି । ଆଜି···ଏହି ମୁହୂର୍ତ୍ତିରୁ ମୁଁ ଚଉଦ ବର୍ଷ ପାଇଁ ବନକୁ ଯାଉଛି । ମାତା କୈକେୟୀଙ୍କ ଆଗ୍ରହ ଅନୁସାରେ ଭରତ ଅଯୋଧ୍ୟା ସିଂହାସନରେ ଅଧିଷ୍ଠିତ ହେବ । ଭରତକୁ ମୁଁ ପ୍ରାଣରୁ ବଳି ଅଧିକ ଭଲ ପାଏ । ମୁଁ ବନରୁ ଫେରି ଆସିବା ପର୍ଯ୍ୟନ୍ତ ତୁମେ ଭରତ ଅଧୀନରେ ରହିବାକୁ ଆଦୌ ଦ୍ୱିଧାବୋଧ କରିବ ନାହିଁ ବୋଲି ମୋର ଅନୁରୋଧ । ମୋ ମାଆ ବୃଦ୍ଧା, ପିତା ମଧ୍ୟ ଅତ୍ୟନ୍ତ ବୃଦ୍ଧ । ତୁମେ ଏଠାରେ ରହି ସେମାନଙ୍କ ସେବାରେ ମନ ଦେବ । ହଁ, ମନେରଖ, ଏ ପର୍ଯ୍ୟନ୍ତ ତୁମେ ଭରତକୁ ନିଜର ପୁତ୍ର ପରି ସ୍ନେହ କରୁଥିଲ, କିନ୍ତୁ ଏଣିକି ତୁମେ ତାକୁ ଯଥୋଚିତ ସମ୍ମାନ ଦେବାକୁ ଭୁଲିଯିବ ନାହିଁ । ତା' ଆଗରେ କୌଣସି ଅଶିଷ୍ଟ ବ୍ୟବହାର କରି ତା'ର ପଦମର୍ଯ୍ୟାଦାକୁ କ୍ଷୁଣ୍ଣ କରିବାକୁ ଚେଷ୍ଟା କରିବ ନାହିଁ । ରାଜା ଭରତଙ୍କ ଆଗରେ କେବେ ହେଲେ ମୋ' ପ୍ରଶଂସା କରିବ ନାହିଁ । କାରଣ କ୍ଷମତାଶାଳୀ ତଥା ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତି ଅନ୍ୟର ପ୍ରଶଂସା ଶୁଣି ଖୁସି ହୁଏ ନାହିଁ ।"

ଏହା ଶୁଣି ସୀତାଦେବୀ ଅଧୀରତାର ସହିତ କହିଲେ—"ରଘୁନନ୍ଦନ ! ଆପଣ ଏପରି କ'ଣ କହି ଚାଲିଛନ୍ତି ? ଆପଣ ବନଗମନ କଲେ, ସର୍ବପ୍ରଥମେ ମୁଁ ଆପଣଙ୍କ ସାଥିରେ ବନକୁ ଯିବି । ଆପଣଙ୍କ ବ୍ୟତୀତ ଅଯୋଧ୍ୟାରେ ମୋର କ'ଣ ଅଛି ? ଆପଣ ମୋର ସର୍ବସ୍ୱ······ !"

ସୀତାଙ୍କୁ ବାଧା ଦେଇ ଶ୍ରୀରାମ କହିଲେ—"ପ୍ରିୟେ, ଜୀବନରେ ତୁମେ କେବେହେଲେ ଦୁଃଖ ଭୋଗୀ ନାହଁ । ସଦାସର୍ବଦା ତୁମେ ସୁଖର ଦୋଳିରେ ଝୁଲି ଝୁଲି ଜୀବନ ବିତାଇ ଆସିଛ । ରାଜାର ଅଲିଅଳ କନ୍ୟା ପୁଣି ରାଜ ଚକ୍ରବର୍ତ୍ତୀଙ୍କର ଜ୍ୟେଷ୍ଠା ବଧୂ । ତୁମେ କେବେହେଲେ ବନର ଦୁଃଖ ସହି ପାରିବ ନାହିଁ । ତୁମେ ମନରୁ ଏପରି ଜିଦ୍ ଛାଡ଼ିଦିଅ । ବନକୁ ଖେଳଘର ବୋଲି ମନେ କର ନାହିଁ । ତେଣୁ ବନକୁ ଯିବା ତୁମ ପକ୍ଷରେ ଆଦୌ ଉଚିତ ହେବ ନାହିଁ ।"

ସୀତା ନିଜ କଥାରେ ଅଟଳ ରହି କହିଲେ -"ମୁଁ ତ ବନକୁ ଯାଉନାହିଁ ! ମୁଁ ଯାଉଛି ମୋ' ପ୍ରାଣପ୍ରିୟ ସ୍ୱାମୀଙ୍କ ସହିତ । ଛାୟା କେବେ ହେଲେ ପ୍ରତିବିମ୍ବଠାରୁ ପୃଥକ୍ ରହିପାରେ ନାହିଁ । ପ୍ରାଣ ବିନା ଦେହର ଅସ୍ତିତ୍ୱ କେଉଁଠି ରହିଛି ? ଆପଣ ମୋର ସର୍ବସ୍ୱ; ତେଣୁ ଆପଣ ଯେଉଁଠାରେ ରହିବେ ତାହା ମୋ' ପକ୍ଷରେ ହେବ ନନ୍ଦନକାନନ !"

ଅତ୍ୟନ୍ତ ସ୍ନେହଭୋଳା ବଚନରେ ଶ୍ରୀରାମ କହିଲେ—"ଦେଖ, ବନ ମହାଭୟଙ୍କର ସ୍ଥାନ । ସେଠାରେ ପଦେ ପଦେ ବିପଦ । କଣ୍ଟକିତ ତଥା କଙ୍କରିଳ ମାର୍ଗରେ ଚାଲିବା ଅତ୍ୟନ୍ତ ଦୁଷ୍କର !"

"ହଁ ଠିକ୍ ଅଛି ମୁଁ ଆଗେ ଆଗେ ବାଟରୁ କଣ୍ଟା ଓ ଗେଡ଼ିଗୁଡ଼ିକ ଆଡ଼େଇ ଆଡ଼େଇ ଚାଲିବି ।"

ଶ୍ରୀରାମ କହିଲେ—"ତୁମେ ବୃଥାଠାରେ ଜିଦ୍ ଧରୁଛ··· ! ତୁମେ ଜାଣନାହିଁ, ବନରେ ପ୍ରଖର ଉଷ୍ଣତାପଯୁକ୍ତ ପବନ ବହି ତୁମ ସୁକୁମାର ଦେହଟିକୁ ଝାଉଁଳାଇ ଦେବ ।"

ସୁକୁମାରୀ ସୀତା କହିଲେ—"ହଁ ଆପଣ ଠିକ୍ କହୁଛନ୍ତି··· । ମୁଁ ମୋ' ପଣତ କାନରେ ଆପଣଙ୍କ ସୁକୁମାର ଦେହଟିକୁ ଘୋଡ଼ାଇ ଆଗେ ଆଗେ ଚାଲିବି !"

ଶ୍ରୀରାମ ମନେ ମନେ ବ୍ୟସ୍ତ ହୋଇ ପଡ଼ିଲେ । ସେ ପୁଣିଥରେ ସୀତାଙ୍କୁ ବୁଝାଇବାକୁ ଯାଇ କହିଲେ—"ପ୍ରିୟେ, ତୁମେ ଆଦୌ ବୁଝୁ ନାହଁ ! ବନରେ ଭୟଙ୍କର ସିଂହ, ବ୍ୟାଘ୍ର ଆଦି ପଶୁ ଅଛନ୍ତି । ସେମାନଙ୍କ ଗର୍ଜନ ଶୁଣିଲେ ତୁମ ଛାତି ଥରି ଉଠିବ··· ।"

"ରଘୁପୁଙ୍ଗବ, ମୁଁ କ'ଣ ଏତିକି ଜାଣି ନାହିଁ । କିନ୍ତୁ ଆପଣଙ୍କ ପରି ପୁରୁଷସିଂହ ମୋ' ସୁରକ୍ଷା ପାଇଁ ଥିବାବେଳେ ପଶୁସିଂହଙ୍କଠାରେ ମୋର ଡରିବା କଅଣ ?"

"ପ୍ରିୟେ, ତୁମେ ସବୁ କଥାକୁ ପିଲାଖେଳ ପରି ଧରି ନେଉଛ । ଦେଖୁ ଏପରି ଜିଦ୍ କରୁଛ । ତୁମେ ବୁଝ, ଜିଦି ସବୁବେଳେ ଭଲ ନୁହେଁ । ବନରେ ଖଣ୍ଡା ଧାରରେ ଚାଲିବାକୁ ପଡ଼ିବ । ହେଲା ଏବେ, ତୁମେ ସବୁ ଦୁଃଖ କଷ୍ଟ ସହିଯିବ; କିନ୍ତୁ ବନର ରାକ୍ଷସମାନେ ଅତ୍ୟନ୍ତ ଭୟଙ୍କର । ସେମାନେ ମନୁଷ୍ୟମାନଙ୍କୁ କଞ୍ଚା ଚୋବାଇ ଖାଇ ଯାଆନ୍ତି । ସ୍ତ୍ରୀମାନଙ୍କୁ ବଳପୂର୍ବକ ଅପହରଣ କରି ନିଅନ୍ତି । ଯଦି ସେମାନେ ତୁମକୁ ନେଇ ଯିବେ, ତେବେ ମୋର ମାନ, ସମ୍ମାନ ତଥା ବଂଶ-ମର୍ଯ୍ୟାଦା ଧୂଳିସାତ୍ ହୋଇ ଯିବ ନାହିଁ କି ?"

ଏହା ଶୁଣିବା ମାତ୍ରେ ସୀତାଦେବୀ ମନେ ମନେ ଖୁବ୍ ବିରକ୍ତ ହେବାଭଳି ସ୍ୱରରେ କହିଲେ—"ଯଦି ଆପଣଙ୍କ ମନରେ ଏପରି ଏକ ଭୟ ସଞ୍ଚାର ହୋଇଛି, ତେବେ ଆପଣ ଧନୁଶର ଫିଙ୍ଗି ଦେଇ ମୋ ଚୁଡ଼ି ନେଇ ହାତରେ ପିନ୍ଧି ଦିଅନ୍ତୁ ।

ଯେଉଁ ପୁରୁଷ ନିଜ ପତ୍ନୀକୁ ରକ୍ଷା କରି ନ ପାରେ, ସେ ପୁରୁଷ ପଦବାଚ୍ୟ ନୁହେଁ । ଆପଣ କେଉଁ ସାହସ ବଳରେ ବନକୁ ଯିବା ଲାଗି ବାହାରିଛନ୍ତି ?"

ସୀତାଙ୍କ କ୍ରୋଧପୂର୍ଣ୍ଣ ବଚନ ଶୁଣି ଶ୍ରୀରାମ ହସି ହସି କହିଲେ—"ସୀତେ, ତୁମେ ଅତ୍ୟଧିକ ଆବେଗର ବଶବର୍ତ୍ତୀ ହୋଇ ପଡ଼ୁଛ । ଭୀରୁକତା ଓ ବାସ୍ତବତା ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ଜୀବନର ପ୍ରତ୍ୟେକ ପଦକ୍ଷେପରେ ବିପଦ ରହିଛି । ଦୁଷ୍ଟମାନେ ସର୍ବଦା ଶିଷ୍ଟ ଲୋକମାନଙ୍କୁ କଷ୍ଟ ଦେବା ପାଇଁ ଜାଲ ବିଛାଇ ଥାଆନ୍ତି । ସେମାନେ କେବଳ ଅବସରର ଅପେକ୍ଷାରେ ରହିଥା'ନ୍ତି ! ତୁମେ ରୂପ, ଧନ ଓ ନାରୀର ଲୋଭ ଦୁଷ୍ଟଲୋକଙ୍କ ମନକୁ ଆଚ୍ଛନ୍ନ କରି ରଖିଥାଏ । ତୁମେ ସଂସାରରେ ଜଣେ ଅସାମାନ୍ୟା ସୁନ୍ଦରୀ, ସ୍ୱେଚ୍ଛାରେ ସୂର୍ଯ୍ୟ ମଧ୍ୟ ତୁମକୁ ଦେଖି ପାରେ ନାହିଁ । ତୁମେ ରାଜପୁରୀର ଅନ୍ତଃପୁରରେ ସୁରକ୍ଷିତ ହୋଇ ରହିଛ । ବନରେ ସମସ୍ତଙ୍କ ଦୃଷ୍ଟି ତୁମ ଉପରେ ପଡ଼ିବ । ତେଣୁ ମୋର ଇଚ୍ଛା—ଏହି ଚଉଦ ବର୍ଷ କାଳ ତୁମେ ରାଜପୁରୀରେ ସୁରକ୍ଷିତ ଅବସ୍ଥାରେ ରହି ଶାଶୁ ଶ୍ୱଶୁରଙ୍କ ସେବାରେ ସମୟ ବିତାଅ । ବନବାସର ଅବଧି ଶେଷ ହୋଇଯିବା ମାତ୍ରେ ମୁଁ ଶୀଘ୍ର ଏଠାକୁ ଫେରି ଆସିବି । ତା'ପରେ ଆମେ ସୁଖରେ କାଳଯାପନ କରିବା ।"

ସୀତା ଦେବୀଙ୍କୁ ଶ୍ରୀରାମଙ୍କ ଉପଦେଶପୂର୍ଣ୍ଣ ବାଣୀ ଆଦୌ ଭଲଲାଗୁ ନଥିଲା । ସେହି ବାକ୍ୟଗୁଡ଼ିକ ତାଙ୍କର ମର୍ମସ୍ଥଳକୁ ବିଦ୍ଧ କରୁଥିବାର ସେ ଅନୁଭବ କଲେ । ସେ ମନେ ମନେ ଆହୁରି ରାଗିଯାଇ କହିଲେ—"ମୁଁ ମୋ' କପାଳକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ମୋ' ପିତା ମହର୍ଷି ଜନକଙ୍କୁ ନିନ୍ଦା କରୁଛି । ସେ ମୋତେ ଜଣେ ପୁରୁଷ ବେଶଧାରୀ ନପୁଂସକଙ୍କ ହାତରେ ସମର୍ପଣ କରି ଦେଇଛନ୍ତି । ମୋ' ସ୍ୱାମୀ ନିଜ ପତ୍ନୀର ସୁରକ୍ଷା ଦାୟିତ୍ୱ ଗ୍ରହଣ କରିବା ଲାଗି ପ୍ରସ୍ତୁତ ନୁହନ୍ତି । ଜଣେ ବୀର ପୁରୁଷ ସାଥିରେ ଥିଲେ, ତା' ସ୍ତ୍ରୀ ଆଡ଼କୁ କେଉଁ ଦୁଷ୍ଟ ଆଖି ଉଠାଇ ଚାହିଁବାକୁ ସାହସ କରିବ ? ହେ ମୋର ପ୍ରିୟ ରଘୁନନ୍ଦନ, ମୁଁ ବେଶ୍ ଜାଣି ପାରୁଛି ଆପଣ ମୋତେ ଡରାଇ ଦେଇ ଏଠାରେ ଅନାଥିନୀ ପରି ଛାଡ଼ି ଯିବାକୁ ଚାହୁଁଛନ୍ତି । କିନ୍ତୁ ମନେ ରଖନ୍ତୁ—ଆପଣଙ୍କ ଉଦ୍ଦେଶ୍ୟ ଆଦୌ ସଫଳ ହେବ ନାହିଁ । ଚଉଦ ବର୍ଷ କ'ଣ ଚଉଦଟି ମୁହୂର୍ତ୍ତ ମଧ୍ୟ ମୁଁ ଆପଣଙ୍କ ବିନା ରହି ପାରିବି ନାହିଁ । ଆପଣ ମୋତେ ବୁଝାଇବା ଲାଗି ବୃଥା ଚେଷ୍ଟା କରନ୍ତୁ ନାହିଁ । ମୁଁ ଆପଣଙ୍କୁ ଛାଡ଼ି ଏ ରାଜପୁରୀର କଣ୍ଟକିତ ଶେଯରେ ମୁହୂର୍ତ୍ତେ ସୁଦ୍ଧା ଶାନ୍ତିରେ ଶୋଇ ପାରିବି ନାହିଁ ।"

ଶ୍ରୀରାମ ବେଶ୍ ବୁଝି ପାରିଲେ—ସୀତା କୌଣସି ମତେ ମାନିବେ ନାହିଁ । ତେଣୁ ସେ କହିଲେ—"ଏହା ଯଦି ତୁମର ଶେଷ ସିଦ୍ଧାନ୍ତ, ତେବେ ତୁମେ ଶୀଘ୍ର ପ୍ରସ୍ତୁତ ହୋଇଯାଅ ।"

ଆନନ୍ଦର ଉଲ୍ଲାସରେ ସୀତାଦେବୀ ଉଲ୍ଲସିତା ହୋଇ କହିଲେ—"ଆଉ ପ୍ରସ୍ତୁତ ହେବ କ'ଣ ? ଚାଲନ୍ତୁ, ମୁଁ ଆପଣଙ୍କ ପଛେ ପଛେ ଚାଲିବି ।" ଏହା କହି ସୀତା ଦେବୀ ଆଗକୁ ପାଦ ବଢ଼ାଇ ବାହାରି ପଡ଼ିଲେ ।

ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଚାହିଁ କହିଲେ—"ଭାଇ, ମୋ ମାଆ ତୋତେ ଲାଗିଲେ । ଏହି ବୃଦ୍ଧାବସ୍ଥାରେ ତାଙ୍କୁ ଯେପରି କିଛି କଷ୍ଟ ନ ହୁଏ, ସେଥିପ୍ରତି ତୁ ଦୃଷ୍ଟି ଦେବୁ ।"

ଏହା ଶୁଣିବା ମାତ୍ରେ ସୌମିତ୍ରିଙ୍କ ଆଖିରୁ ବରଷାର ଜଳଧାରା ପରି ଲୁହ ଝରିବାକୁ ଲାଗିଲା । ସେ ଆଖିରୁ ଲୁହ ପୋଛି ଆବେଗଭରା କଣ୍ଠରେ କହିଲେ—"ରାଘବ, ଆପଣ ମୋ ପ୍ରତି ଏପରି ଦାରୁଣ ଆଦେଶ ଦିଅନ୍ତୁ ନାହିଁ । ଆପଣଙ୍କୁ ଛାଡ଼ି ମୁଁ ଅଯୋଧ୍ୟାପୁରୀରେ ଦଣ୍ଡେ ହେଲେ ରହି ପାରିବି ନାହିଁ ।"

ଶ୍ରୀରାମ ସ୍ନେହରେ ଲକ୍ଷ୍ମଣଙ୍କର ପିଠିରେ ହାତ ବୁଲାଇ କହିଲେ—"ଭାଇ ଲକ୍ଷ୍ମଣ, ମୁଁ ଜାଣେ ତୁ ମୋତେ କେତେ ଭଲପାଉ । କିନ୍ତୁ ଭାଇ, କର୍ତ୍ତବ୍ୟ ଆଗରେ ସ୍ନେହ ଓ ଅନୁରାଗକୁ ବଳି ଦେବା ମନସ୍ୱୀ ଲୋକର କର୍ତ୍ତବ୍ୟ । ତୁ ଅଧୀର ହୁଅନା । ମୁଁ ଜାଣେ, ତୁ ଜଣେ ସାହସୀ କର୍ତ୍ତବ୍ୟ ପରାୟଣ । ତୋ' ପକ୍ଷରେ ଏପରି ଅଧୀର ହେବା ଉଚିତ ନୁହେଁ । ଦେଖ, ପିତା ମାତା ବୃଦ୍ଧାବସ୍ଥାରେ ଉପନୀତ ହେଲେଣି । ଭରତ ଓ ଶତ୍ରୁଘ୍ନ କେହି ଘରେ ନାହାନ୍ତି । ବର୍ତ୍ତମାନ ରାଜ୍ୟ, ପୁର, ପିତା, ମାତା, ସମସ୍ତଙ୍କ ଭାର ତୋ'ର ଉପରେ । ଏପରି ଏକ ଗୁରୁତର କର୍ତ୍ତବ୍ୟ ଆଡ଼କୁ ମୁହଁ ମୋଡ଼ି ଦେଇ କ୍ଷଣିକ ଆବେଗର ବଶବର୍ତ୍ତୀ ହେବା ତୋ' ପଦ ମର୍ଯ୍ୟାଦାର ଅନୁକୂଳ ନୁହେଁ ।"

ଲକ୍ଷ୍ମଣ ସୀତାଙ୍କ ପରି ଦୃଢ଼ତା ପ୍ରକାଶ କରି କହିଲେ—"ରାଘବ, ମୁଁ ଆଜିଯାଏ ଆପଣଙ୍କ ଆଗରେ ଉତ୍ତର ଦେଇ ନଥିଲି । କିନ୍ତୁ ଆଜି ଉତ୍ତର ନ ଦେଇ ନିଜକୁ ଆୟତ୍ତ କରି ପାରୁ ନାହିଁ ! ମନୁଷ୍ୟର ଗୋଟିଏ କର୍ତ୍ତବ୍ୟ ହେଉଛି ମୁଖ୍ୟ, ଅନ୍ୟ ସମସ୍ତ କର୍ତ୍ତବ୍ୟ ଗୌଣ ବୋଲି ମୋର ଦୃଢ଼ ଧାରଣା । ମୋ' ଜୀବନର ମୁଖ୍ୟ କର୍ତ୍ତବ୍ୟ ହେଉଛି—ଶ୍ରୀରାମଙ୍କ ପାଦସେବା । ତା' ଆଗରେ ଅନ୍ୟାନ୍ୟ ସମସ୍ତ କର୍ତ୍ତବ୍ୟ ଗୌଣ । ମୁଁ କୌଣସି ମତେ ଆପଣଙ୍କ ଠାରୁ ପୃଥକ୍ ରହି ଜୀବନ ଧାରଣ କରି ପାରିବି ନାହିଁ ।"

ଶ୍ରୀରାମଚନ୍ଦ୍ର ଲକ୍ଷ୍ୟ କଲେ—କଥାରେ ଲକ୍ଷ୍ମଣ ଅତ୍ୟନ୍ତ ବ୍ୟଥିତ ହୋଇଛନ୍ତି । ତେଣୁ ସେ ତାଙ୍କୁ ଆଉ ଅଧିକ ବୁଝାଇବାକୁ ଉଚିତ ମନେ କଲେ ନାହିଁ । ସେ ସ୍ନେହରେ ଲକ୍ଷ୍ମଣଙ୍କ ଚିବୁକଟିକୁ ଟିକିଏ ଛୁଇଁ ଦେଇ କହିଲେ—"ଯଦି ଏହା ହିଁ ତୋର ଶେଷ ନିଷ୍ପତ୍ତି, ତେବେ ଶୀଘ୍ର ଯାଇ ମାଆଙ୍କଠାରୁ ଆଜ୍ଞା ନେଇଆ ।"

ଶ୍ରୀରାମଙ୍କୁ ଗୁଡ଼ି ଦେଇ ଲକ୍ଷ୍ମଣ ସେଠାରୁ ମାଆଙ୍କ ପାଖକୁ ଯିବା ଲାଗି ଆଦୌ ଇଚ୍ଛା କରୁ ନଥିଲେ । କିନ୍ତୁ ଶ୍ରୀରାମଙ୍କ ଆଜ୍ଞାକୁ ସେ ଅବଜ୍ଞା କରି ପାରିଲେ ନାହିଁ । ସେ ସୁମିତ୍ରାଙ୍କ ପାଖକୁ ଯାଇ କହିଲେ—"ମାଆ, ଶ୍ରୀରାମଚନ୍ଦ୍ର ବନକୁ ଯାଉଛନ୍ତି, ମୁଁ ତାଙ୍କ ସହିତ ଯିବା ଲାଗି ଚାହୁଁଛି । ତମେ କ'ଣ କହୁଛ ?"

ଶ୍ରୀରାମଙ୍କ ବନ ଗମନ କଥା ଶୁଣିବା ମାତ୍ରେ ସୁମିତ୍ରା ଭୟଭୀତ ହୋଇଗଲେ । ସେ ଲକ୍ଷ୍ମଣଙ୍କଠାରୁ ସବୁ ବିଷୟ ଶୁଣି ସାରି କହିଲେ—"ଶ୍ରୀରାମ ବନକୁ ଯାଉଛି, ତୁ ତା' ସହିତ ଯିବୁ, ଏଥିରେ ମୋତେ ପଚାରିବାର କ'ଣ ଅଛି ? କିନ୍ତୁ ଗୋଟିଏ କଥା ମନେ ରଖିବୁ, ଏହା ମୋର ଆଦେଶ—ତୁ ସ୍ୱପ୍ନରେ ସୁଦ୍ଧା ରାମସୀତାଙ୍କ ବିରୁଦ୍ଧାଚରଣ କରିବୁ ନାହିଁ । ସର୍ବଦା ତାଙ୍କ ମନ ଜାଣି କାମ କରିବୁ । ତାଙ୍କ ଆଜ୍ଞାକୁ କେବେହେଲେ ମଧ୍ୟ ଅବଜ୍ଞା କରିବୁ ନାହିଁ । ତୁମେ ଭଲରେ ଯାଅ ବାପା, ମୁଁ ମୋ' ଭାଗ୍ୟକୁ ଆଦରି ଏଠାରେ କାନ୍ଦି କାନ୍ଦି ମରିବି !"

ଲକ୍ଷ୍ମଣ ମାଆଙ୍କ ଆଡ଼କୁ ଗୋଟିଏ ମୂହୂର୍ତ୍ତ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁବା ପରେ ତାଙ୍କ ପାଦ ଛୁଇଁ ଫେରି ପଡ଼ିବା ମାତ୍ରେ ଦେଖିଲେ, ତାଙ୍କ ପଛରେ ସୀତାରାମ ଠିଆ ହୋଇଛନ୍ତି । ଶ୍ରୀରାମ ସୁମିତ୍ରାଙ୍କୁ ପ୍ରଣାମ କରି କହିଲେ "ମାଆ, ମୁଁ ବନକୁ ଯାଉଛି ।"

କାନ୍ଦି କାନ୍ଦି ସୁମିତ୍ରା ଶ୍ରୀରାମଙ୍କ ମୁଣ୍ଡ ଆଉଁସି ଦେଇ କହିଲେ—"କୁମାର, ନିଜ ଧର୍ମାତ୍ମା ପିତାଙ୍କୁ ସତ୍ୟବାଦୀ ରୂପେ ପ୍ରମାଣିତ କରିବା ପାଇଁ ତୁ ବନକୁ ଯାଉଛୁ । ଯାଆ...... ପରମାତ୍ମା ତୋର ମଙ୍ଗଳ କରନ୍ତୁ । କିନ୍ତୁ...... ଏଠାରେ ଆଉ ଆମର ଯାହାଭରସା କିଏ ରହିଲା ?"

ସୁମିତ୍ରାଙ୍କ କଥା ଶୁଣିବା ମାତ୍ରେ ଶ୍ରୀରାମଙ୍କ ଚକ୍ଷୁ ମଧ୍ୟ ସଜଳ ହୋଇ ଉଠିଲା । ସେ ଅବିଳମ୍ବେ ଆଖି ପୋଛି ଦେଇ କହିଲେ—"ମାଆ, ପିତା ଉପସ୍ଥିତ ଥାଉଁ ଥାଉଁ ତୁମର ଚିନ୍ତା କଅଣ ? ସ୍ୱାମୀ ହେଉଛନ୍ତି—ଆର୍ଯ୍ୟନାରୀମାନଙ୍କର ଏକମାତ୍ର ଆଶାଭରସା । ଏହାହିଁ ହେଉଛି—ଆର୍ଯ୍ୟ ଧର୍ମର ସଦାଚାର ।"

ଶ୍ରୀରାମଙ୍କ କଥା ଶୁଣି ସୁମିତ୍ରାଙ୍କ ଆଖିରୁ ଝରଝର ହୋଇ ଲୁହ ଝରିବାକୁ ଲାଗିଲା । ଏହି ସମୟରେ ସୀତା ସୁମିତ୍ରାଙ୍କ ପାଦ ଛୁଇଁ ପ୍ରଣାମ କଲେ । ସୁକୁମାରୀ ସୀତା ରାମଙ୍କ ସହିତ ବନକୁ ଯାଉଥିବାରୁ ସୁମିତ୍ରାଙ୍କ ମୁଣ୍ଡରେ ବଜ୍ର ପଡ଼ିଗଲା ପରି ବୋଧ ହେଲା । ସେ ବାରମ୍ବାର ବିଧାତାଙ୍କୁ ଧିକ୍କାର କରିବାକୁ ଲାଗିଲେ । ସେ ସୀତାଙ୍କୁ ଗୁଡିରେ ଭିଡ଼ିଧରି ଅନେକ ସମୟ ପର୍ଯ୍ୟନ୍ତ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ ।

ଶ୍ରୀରାମ ଲକ୍ଷ୍ୟ କଲେ ମାତା କୌଶଲ୍ୟା ପାଗଳୀଙ୍କ ପରି ମୁକୁଳିତ କେଶା ହୋଇ ସୁମିତ୍ରାଙ୍କ ମହଲ ଆଡ଼କୁ ଧାଇଁ ଆସୁଛନ୍ତି । ନିଜ ମାଆଙ୍କର ଏପରି ଅବସ୍ଥା ଦେଖି ଶ୍ରୀରାମ ବିଚଳିତ ହୋଇ ଉଠିଲେ । କିନ୍ତୁ ସଙ୍ଗେ ସଙ୍ଗେ କର୍ତ୍ତବ୍ୟର କଠୋର ବନ୍ଧନରେ ନିଜର ଚହଲା ମନଟିକୁ ବାନ୍ଧିଦେଇ ଦୃଢ଼ ଭାବରେ ଛିଡ଼ାହୋଇ ରହିଲେ । ସେତେବେଳଯାଏ ସୀତା ଶ୍ରୀରାମଙ୍କ ସହିତ ବନକୁ ଯାଉଛନ୍ତି ବୋଲି କୌଶଲ୍ୟା ଜାଣି ନଥିଲେ । ଶ୍ରୀରାମ ତାଙ୍କୁ ବୁଝାଇ ସୁଝାଇ ଫେରି ଆସିବା ମାତ୍ରେ, କୌଶଲ୍ୟା ସାନ୍ତ୍ୱନା ଦେବା ଲାଗି ସୀତାଙ୍କ ମହଲରେ ଉପସ୍ଥିତ ହେଲେ । ସେଠାରେ ସେ ସୀତାଙ୍କ ବନଗମନ ସମ୍ବାଦ ଶୁଣିବା ମାତ୍ରେ ପାଗଳୀଙ୍କ ପରି ସୁମିତ୍ରାଙ୍କ ଭବନ ଆଡକୁ ଧାଇଁ ଆସିଲେ ।

କୌଶଲ୍ୟାଙ୍କର ଏପରି ଅବସ୍ଥା ଦେଖି ସୁମିତ୍ରାଙ୍କ ହୃଦୟ ଦୁଃଖରେ କାତର ହୋଇଗଲା । ସେ ମୂର୍ଚ୍ଛିତା ହୋଇ ତଳେ ପଡ଼ିଯିବା ଅବସ୍ଥାରେ ତାଙ୍କୁ ସୀତା ସମ୍ଭାଳି ନେଲେ । ସୁକୁମାରୀ ସୀତା ସୁମିତ୍ରାଙ୍କୁ ସମ୍ଭାଳି ନପାରି ଶ୍ରୀରାମଙ୍କ ଆଡ଼କୁ କାତର ଦୃଷ୍ଟିରେ ଚାହିଁ ରହିଲେ । ଶ୍ରୀରାମ ସୀତାଙ୍କ ସହିତ ମିଶି ସୁମିତ୍ରାଙ୍କୁ ଶେଯରେ ଶୁଆଇ ଦେଇ ମୁହଁରେ ଜଳ ସିଞ୍ଚିବାକୁ ଲାଗିଲେ ।

ଏହି ସମୟରେ କୌଶଲ୍ୟା ଧାଇଁ ଯାଇ ସୀତାଙ୍କୁ କୁଣ୍ଢାଇ ପକାଇ ଛୋଟ ପିଲାଟିଏ ପରି କାନ୍ଦିବାକୁ ଲାଗିଲେ । ଏହି ମର୍ମନ୍ତୁଦ ଦୃଶ୍ୟ ଦେଖି ଦାସୀ ପରିବାର-ମାନେ ମଧ୍ୟ ବିକଳ ହୋଇ କାନ୍ଦିବାକୁ ଲାଗିଲେ ।

ଶ୍ରୀରାମଚନ୍ଦ୍ର ସେ କରୁଣ ଦୃଶ୍ୟ ଦେଖି ନିଜକୁ ଆୟତ୍ତ କରିପାରିଲେ ନାହିଁ । ତଥାପି ସେ କୌଣସି ମତେ ନିଜକୁ ଆୟତ୍ତ କରିନେଇ ସୁମନ୍ତ୍ରଙ୍କୁ ଚାହିଁ କହିଲେ— "ମୁଁ ପିତାଙ୍କ ନିକଟରୁ ବିଦାୟ ନେଇ ଆସେ, ସେ ପର୍ଯ୍ୟନ୍ତ ତୁମେ ମାଆଙ୍କୁ ସମ୍ଭାଳି ଥାଅ ।"

ଶ୍ରୀରାମ କୈକେୟୀଙ୍କ ଭବନ ଆଡ଼କୁ ଆଗେଇ ଗଲେ ଏବଂ ସୀତା ଓ ଲକ୍ଷ୍ମଣ ମଧ୍ୟ ତାଙ୍କ ପଛେ ପଛେ ଚାଲିଗଲେ । ସୁମନ୍ତ୍ର କୌଶଲ୍ୟା ଓ ସୁମିତ୍ରାଙ୍କୁ ଆଶ୍ୱସ୍ତ କରାଇ ଶ୍ରୀରାମଙ୍କ ଅନୁଗମନ କଲେ ।

କ୍ଷଣଙ୍କ ମଧ୍ୟରେ ଏ' ସମ୍ବାଦ ସମଗ୍ର ଅଯୋଧ୍ୟା ନଗରୀରେ ବିଜୁଳି ବେଗରେ ଖେଳିଗଲା । ସେହି ସମ୍ବାଦ ଶୁଣିବା ମାତ୍ରେ ଅଯୋଧ୍ୟାର ସମସ୍ତ ଆନନ୍ଦ ଶୋକଗ୍ରସ୍ତରେ ପରିଣତ ହୋଇଗଲା । ସମସ୍ତ ପ୍ରଜା ବ୍ୟାକୁଳ ହୋଇ କ୍ରନ୍ଦନ କରିବାକୁ ଲାଗିଲେ । ସମସ୍ତେ ଏହି ନିର୍ମମ ସମ୍ବାଦ ଶ୍ରବଣରେ କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲେ । ଶ୍ରୀରାମଙ୍କୁ ଦେଖିବା ଲାଗି ସମସ୍ତ ପ୍ରଜା ବ୍ୟାକୁଳ ଚିତ୍ତରେ ସିଂହ ଦ୍ୱାର ପାଖକୁ ଧାଇଁ ଆସିଲେ ।

ଏହି ସମୟରେ ଶ୍ରୀରାମ ସୁମନ୍ତଙ୍କୁ କହିଲେ—"ମନ୍ତ୍ରୀ ମହୋଦୟ, ଆପଣ ଯାଇ ପିତାଙ୍କୁ ଖବର ଦିଅନ୍ତୁ—ଲକ୍ଷ୍ମଣ ଓ ସୀତାଙ୍କ ସହିତ ମୁଁ ବନକୁ ଯିବାପାଇଁ ପ୍ରସ୍ତୁତ ହୋଇ ଆସିଲିଣି । ଥରେ ମାତ୍ର ତାଙ୍କ ଶ୍ରୀଚରଣ ଦର୍ଶନ ଲାଗି ହୋଇ ଆସିଲିଣି । ଥରେ ମାତ୍ର ତାଙ୍କ ଶ୍ରୀଚରଣ ଦର୍ଶନ ଲାଗି ଅପେକ୍ଷା କରୁଛୁ ।" ଏହା ଶୁଣିବା ମାତ୍ରେ ସୁମନ୍ତ ଭିତରକୁ ଚାଲିଗଲେ ।

ଶ୍ରୀରାମ ଭିତରକୁ ପଶିଯାଇ ଦେଖିଲେ—ମହାରାଜଙ୍କ ନିକଟରେ କୁଳଗୁରୁ ବଶିଷ୍ଠ ବସିଛନ୍ତି । ଶ୍ରୀରାମଙ୍କୁ ଦେଖିବା ମାତ୍ରେ ତାଙ୍କ ଆଖିରୁ ଲୁହର ଧାର ଝରି ପଡ଼ିଲା । ସେ କୌଣସିମତେ ନିଜକୁ ଆୟତ୍ତ କରି କହିଲେ—"ଶ୍ରୀରାମ, ଭାଗ୍ୟର ନିର୍ଦ୍ଦେଶକୁ କେହି ଏଡ଼ାଇ ପାରିବ ନାହିଁ । କ'ଣ ଜାନକୀ ଓ ଲକ୍ଷ୍ମଣ ତୁମ ସହିତ ବନକୁ ଯାଉଛନ୍ତି ?" ଶ୍ରୀରାମ ମୁହଁ ନ ଖୋଲି କେବଳ ମୁଣ୍ଡଟି ହଲାଇ ଦେଇ ସ୍ୱୀକୃତି ସୂଚକ ଇଙ୍ଗିତ ଦେଲେ ।

ସୁମନ୍ତ ଶ୍ରୀରାମଙ୍କ ଆଗମନ ସନ୍ଦେଶ ମହାରାଜଙ୍କୁ କହିବା ମାତ୍ରେ ଦଶରଥ ପୁଣି ଥରେ ମୂର୍ଚ୍ଛିତ ହୋଇଗଲେ । ସେ କ୍ଷଣକ ମଧ୍ୟରେ ଚେତନା ଲାଭ କରି କହିଲେ—"ସୁମନ୍ତ, ମୁଁ ରାଣୀମାନଙ୍କ ସହିତ ଶ୍ରୀରାମଙ୍କୁ ଦେଖିବାକୁ ଚାହେଁ । ତୁମେ ସମସ୍ତଙ୍କୁ ଏହି ମୁହୂର୍ତ୍ତରେ ଡାକିଆଣ ।"

ରାଣୀମାନେ ଆସିଯିବା ମାତ୍ରେ ଶ୍ରୀରାମ ଗୁରୁଙ୍କ ସହିତ ଭିତର ପୁରକୁ ପ୍ରବେଶ କଲେ । ରାଣୀମାନେ ଶ୍ରୀରାମଙ୍କୁ ଦେଖି କାନ୍ଦି ଉଠିଲେ । ଦଶରଥ ମୃତ ତୁଲ୍ୟ ସେଠାରେ ପଡ଼ିରହି ଥିଲେ । ସେ ଆଦୌ ରାଣୀମାନଙ୍କ ଆଗମନ ଜାଣି ପାରିଲେ ନାହିଁ । ଏହି ସମୟରେ ଶ୍ରୀରାମ ଦଶରଥଙ୍କ ପାଦଧରି କହିଲେ—"ପିତା, ମୁଁ ବନକୁ ଯିବାଲାଗି ପ୍ରସ୍ତୁତ ହୋଇ ଆସିଛି । ମୋ' ସହିତ ଜାନକୀ ଓ ଲକ୍ଷ୍ମଣ ମଧ୍ୟ ବନକୁ ଯିବାଲାଗି ଚାହୁଁଛନ୍ତି । ଆପଣ ଆମମାନଙ୍କୁ ଆଦେଶ ଦିଅନ୍ତୁ ।"

ରାଜା ଦଶରଥ ଆଖି ଖୋଲି ଥରେ ସମସ୍ତଙ୍କୁ ଚାହିଁ କାନ୍ଦି ଉଠିଲେ । ସେ ଗୁରୁଦେବଙ୍କୁ ପ୍ରଣାମ ଜଣାଇ କହିଲେ—"ଗୁରୁଦେବ, ହାୟ...କି ପାପ ଆଜି ଅଁସି ମୋତେ ଗ୍ରାସ କଲା...? ମା' ସୀତା, ତୁମେ ମଧ୍ୟ ବନକୁ ଯିବା ଲାଗି ଆସିଛ ? ମାଆ, ତୁମେ ଏପରି କର ନାହିଁ ! ଜନକ ଶୁଣିଲେ କ'ଣ କହିବେ ? ସେ ଭାବିବେ, ନିର୍ଦ୍ଦୟ ଦଶରଥ ମୋର ସୁକୁମାରୀ କନ୍ୟାଟିକୁ ମଧ୍ୟ ବନକୁ ପଠାଇ ଦେଲା ? ହାୟ, ଏ ସମ୍ବାଦ ଶୁଣି ସେ ଅଯୋଧ୍ୟା ଆସିଲେ, ମୁଁ କେଉଁ ମୁହଁରେ ତାଙ୍କ ଆଡ଼କୁ ଚାହିଁ ପାରିବି ? ମାଆ, ତୁମେ ଏ ବୃଦ୍ଧ ଶ୍ୱଶୁରକୁ ଦୟା କରି ଅଯୋଧ୍ୟାରେ ରହିଯାଅ ! ଲକ୍ଷ୍ମଣ ମୋ' କଥା ଆଦୌ ଶୁଣିବ ନାହିଁ, ମୁଁ ଜାଣେ—ସେ ରାମକୁ କେତେ

ଶ୍ରଦ୍ଧା କରେ ! ମୁଁ ତାକୁ ବାଧ କରି ଅଟକାଇଲେ ମଧ ସେ ରହିବ ନାହିଁ । ସେ ଶ୍ରୀରାମର ପ୍ରାଣସଦୃଶ । ରାମ ମଧ ତା’ ବିନା ଦଣ୍ଡେ ରହି ପାରିବ ନାହିଁ । କିନ୍ତୁ ସୀତେ, ତୁମେ ବନକୁ ଯିବ କିପରି ? ତୁମେ ରାଜମାର୍ଗରେ ଖୁବ୍ ଧିରେ ହେଲେ ଚାଲି ନାହିଁ, ସେ ଅବସ୍ଥାରେ ବନର କଣ୍ଟକିତ ତଥା କଙ୍କରିଳ ଭୂମିରେ ଚାଲିବ କିପରି ?”

“ହେ ନଗରବାସୀଗଣ, ତୁମେମାନେ ଏପରି ହେବାକୁ ଦିଅ ନାହିଁ । ଆହା···ମୋର ତ କିଛି ଚାରା ନାହିଁ । କାହାରିକୁ କିଛି କହିବା ଭଳି ମୁହଁ ନାହିଁ । ତଥାପି ମୋର ଅନୁରୋଧ କେହି ଏପରି ହେବାକୁ ପ୍ରଶ୍ରୟ ଦିଅ ନାହିଁ··· ।” ଦଶରଥ ପୃଥିବୀରେ ମୂର୍ଚ୍ଛିତ ହୋଇଗଲେ ।

ଏହା ଦେଖି ସୁମନ୍ତ୍ର ଆଉ ସହି ପାରିଲେ ନାହିଁ । ସେ କୈକେୟୀଙ୍କୁ ଯା’ଇଚ୍ଛା ତାହା ବକିଗଲେ । କିନ୍ତୁ କୈକେୟୀ ସେଥିପ୍ରତି ଆଦୌ କର୍ଣ୍ଣପାତ କଲେ ନାହିଁ । ସମସ୍ତେ ବିକଳ ହୋଇ କାନ୍ଦୁଥିବା ବେଳେ ସେ ମନେ ମନେ ବେଶ୍ ହସୁଥିଲେ । ସେ ଚାହୁଁଥିଲେ—ଯେକୌଣସି ମତେ ରାମ ବନକୁ ଯାଆନ୍ତୁ । ଶ୍ରୀରାମ କୈକେୟୀଙ୍କ ମନୋଭାବକୁ ବେଶ୍ ଜାଣି ପାରିଲେ । ତେଣୁ ସେ ଶୀଘ୍ର ସେଠାରୁ ଚାଲିଯିବା ଲାଗି ବ୍ୟସ୍ତ ହୋଇ ପଡ଼ିଲେ ।

ଏହା ପରେ ପରେ ଗୁରୁଦେବ ବଶିଷ୍ଠ ତଥା ଅନ୍ୟାନ୍ୟ ବ୍ରାହ୍ମଣ ବର୍ଗ କୈକେୟୀଙ୍କୁ ଅନେକ ପ୍ରକାର ବୁଝାଇଲେ । କିନ୍ତୁ କୈକେୟୀ ନିଜର ହୃଦୟକୁ ପଥର କରି ନେଇଥିଲେ । କାହାରି ଅନୁନୟ, ବିନୟ ତଥା ଉପଦେଶର ପ୍ରଭାବ ତାଙ୍କ ଉପରେ ପଡ଼ିଲା ନାହିଁ ଶେଷକୁ ଦଶରଥଙ୍କ ଆଖିରୁ ଅନାଥ ଲୋକଙ୍କ ପରି ଲୁହ ଝରାଇ କହିଲେ—“ବତ୍ସ ରାମ, ମୁଁ ବେଶ୍ ଜାଣି ପାରୁଛି ତୁମେ କୌଣସି ମତେ ଏଠାରେ ରହିବ ନାହିଁ । ସୀତା ଓ ଲକ୍ଷ୍ମଣଙ୍କୁ ମଧ ମୁଁ ଅଟକାଇ ପାରିବି ନାହିଁ । କେବଳ ମୋର ଗୋଟିଏ ଅନୁରୋଧ ରଖାଯାଉ । ବତ୍ସ ! ତୁମେ ମୋତେ ବନ୍ଦୀ କରି କାରାଗାର ମଧ୍ୟରେ ରଖିଦିଅ । ମୋ’ ପରି ଅଯୋଗ୍ୟ, ବୃଦ୍ଧ ତଥା ଅକର୍ମଣ୍ୟ ପିତାର ଏହା ହିଁ ଏକମାତ୍ର ଦଣ୍ଡ ! ତୁମେ ମୋର ଯୋଗ୍ୟ ପୁତ୍ର, ରାଜସିଂହାସନର ଯୋଗ୍ୟ ଦାୟାଦ ! ରାଜ୍ୟର ହିତ ଦୃଷ୍ଟିରୁ ଏପରି କଲେ ତୁମ ପକ୍ଷରେ ଆଦୌ ଅନ୍ୟାୟ ହେବ ନାହିଁ ····· ।”

କିଛି ସମୟ ମୌନ ରହିବା ପରେ, ଦଶରଥ ପୁଣି କହିଲେ—“ନାଃ··· ତୁମେ ଏହା କରି ପାରିବ ନାହିଁ । ତା’ ହେଲେ, ତୁମେ ମୋର ଗୋଟିଏ ମାତ୍ର

ଅଭିଳାଷ ପୂରଣ କର ! ତୁମେ ଅଜ ବନକୁ ଯାଅ ନାହିଁ । ମୁଁ ଗାଧୋଇ ସାରଲେ ଏକ ସାଥିରେ ସମସ୍ତେ ଭୋଜନ କରବା । ମୋର ସମସ୍ତ ମନୋରଥ ପୂରଣ ହୋଇଯିବ । କାଲି ସକାଳୁ ତୁମେ ବନକୁ ଚାଲିଯିବ···ମୁଁ ଆଉ ତୁମକୁ ଅଟକାଇବ ନାହିଁ !''

ଶ୍ରୀରାମ ମାରବରେ ସବୁ ଶୁଣିସିବା ପରେ, ପିତାଙ୍କ ଅଧୀରତା ଲକ୍ଷ୍ୟ କର କହିଲେ—''ପିତା, ଆପଣ ଏହି ସଂସାରରେ ଜଣେ ଧର୍ମାତ୍ମା ଓ ସତ୍ୟବାଦୀ ରୂପେ ଖ୍ୟାତ ଅର୍ଜନ କରଛନ୍ତି । ମୁଁ ଆଜ ବନକୁ ନ ଗଲେ, ଆପଣଙ୍କ ନାମରେ ସବଦା କଲଙ୍କ ରହିବ । ଆପଣ ଅଯୋଧ୍ୟାର ପ୍ରଭୁ; ଆପଣ ଯାହାକୁ ଚାହିଁବେ ରାଜ-ସିଂହାସନରେ ବସାଇ ପାରବେ । କାରଣ, ପିତା ଥାଉଁ ଥାଉଁ ପୁତ୍ରର ସେଥିରେ କୌଣସି ଅଧିକାର ନାହିଁ । କିନ୍ତୁ ··ପିତା, ମୁଁ ଆଜ ବନକୁ ଚାଲିଗଲେ, ମୋର ଯେଉଁ ଲାଭ ହେବ, ତାହା ରାଜ୍ୟ ଗଲେ କୌଣସି ମତେ ହେବ ନାହିଁ । ତେଣୁ ଆପଣ ସତ୍ୟ ଧର୍ମ ରକ୍ଷା ପାଇଁ ମୋତେ ବନକୁ ଯିବା ଲାଗି ଏଇ ମୁହୂର୍ତ୍ତରେ ଆଜ୍ଞା ଦିଅନ୍ତୁ ।''

ଶ୍ରୀରାମଙ୍କ ଦୃଢ଼ ନିଷ୍ପତ୍ତି ତଥା ଆଗ୍ରହ ଲକ୍ଷ୍ୟ କର ଦଶରଥ ସୁମନ୍ତଙ୍କୁ ଆଦେଶ ଦେଲ ଭଳି କହିଲେ—''ମନ୍ତ୍ରୀ, ରାମ କେବେହେଲେ ମୋ କାରଣ ମାନବ ନାହିଁ । ତେଣୁ ତୁମେ ଚତୁରଙ୍ଗ ବାହିନୀ, ଭଣ୍ଡାର ରକ୍ଷକ ତଥା ଅଯୋଧ୍ୟାର ବଣିକ-ବର୍ଗଙ୍କୁ ଆଦେଶ ଦିଅ—ସେମାନେ ଶ୍ରୀରାମଙ୍କ ଅନୁସରଣ କର ବନକୁ ଚାଲି ଯାଆନ୍ତୁ ! ଏହି ଶୂନ୍ୟ ରାଜ୍ୟର କଣ୍ଟକତ ରାଜସିଂହାସନରେ ଭରତ ବସି ତା' ମାଆ ସହିତ ଅଧିକାର ସାବ୍ୟସ୍ତ କରୁ !''

କୈକେୟୀ ଏହା ଶୁଣି ଅତ୍ୟନ୍ତ କୁପିତା ହୋଇ କହିଲେ—''ଏପର ଏକ ଅନ୍ତଃସାରଶୂନ୍ୟ ରାଜ୍ୟ ନେଇ ମୋ' ପୁଅ କ'ଣ କରବ ? ସେନା ଓ ରାଜକୋଷ ଶ୍ରୀରାମ ନେଇ ପାରବ ନାହିଁ !''

ରାଜା ଆଉ ଧୈର୍ଯ୍ୟ ଧାରଣ କର ପାରଲେ ନାହିଁ । ସେ ସିଂହ ସଦୃଶ ଗର୍ଜି ଉଠି କହିଲେ—''ପାପିନୀ, ତୋତେ ଶତଧିକ୍‌କାର ! ତୋର ଅପକୀର୍ତ୍ତି ଜଗତରେ ସବଦା ବ୍ୟାପିଯିବ । ତୁ ମୋର ପ୍ରାଣାଧିକ ପୁତ୍ର ଓ ବଧୂକୁ ମୋ'ଠାରୁ ଛଡ଼ାଇ ନେଇ ମୋତେ ହା·····ହୁତାଶମୟ ଜୀବନ ବଞ୍ଚାଇବାକୁ ବାଧ୍ୟ କରୁଛୁ·····।''

ଶ୍ରୀରାମଚନ୍ଦ୍ର ପିତାଙ୍କୁ ବାଧା ଦେଇ କହିଲେ—''ପିତା, ବନରେ ସେନା ଓ ରାଜକୋଷର ଆବଶ୍ୟକତା କଅଣ ? ମୁଁ ସେଠାରେ ମୁନିବ୍ରତ ଧାରଣ କର ପିତୃସତ୍ୟ ରକ୍ଷା କରବ । ସେନା, ଧନଭଣ୍ଡାର ଆଦି ସମସ୍ତ ବସ୍ତୁ ମୁଁ ମୋର ସ୍ନେହର

ଭାଇ ଭରତ ପାଇଁ ତ୍ୟାଗ କରି ସାରିଛି । ଆପଣ ଆଉ ସେ ବିଷୟରେ ବାଦାନୁବାଦ କରନ୍ତୁ ନାହିଁ !'' ସେ ମାତା କୈକେୟୀଙ୍କୁ ଚାହିଁ କହିଲେ-''ମାଆ, ମୋତେ ବଲ୍‌କଳ ପ୍ରଦାନ କରନ୍ତୁ । ମୁଁ ମୋର ରାଜବେଶ ଏହିଠାରେ ପାଲଟି ଦେଇ ଚାଲିଯିବି !''

ସୂତ ମହର୍ଷି କହିଲେ—''ହେ ଶୌନକ ! କୈକେୟୀ ଶ୍ରୀରାମଙ୍କ ଅନୁରୋଧ ପୂର୍ଣ୍ଣ ବାକ୍ୟ ଶୁଣିବା ମାତ୍ରେ ଭିତରକୁ ପଶିଯାଇ ବଲ୍‌କଳ ଆଣି ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ହାତରେ ଧରାଇ ଦେଲେ । ଖୁବ୍ ସମ୍ଭବତଃ ସେ ଏଥିପାଇଁ ଆଗରୁ ପ୍ରସ୍ତୁତ ହୋଇ ରହିଥିଲେ ଏବଂ ତା'ର ମନ୍ଥରା ଦାସୀ ମନ୍ଥରା ବଲ୍‌କଳ ଆୟୋଜନ କରି ଆଗରୁ ରଖିଥିଲା ।

ଶ୍ରୀରାମ ସମସ୍ତଙ୍କ ସମ୍ମୁଖରେ ରାଜବେଶ ପାଲଟି ଦେଇ ବଲ୍‌କଳ ଧାରଣ କଲେ ଏବଂ ଲକ୍ଷ୍ମଣ ମଧ୍ୟ ଶ୍ରୀରାମଙ୍କୁ ଅନୁସରଣ କରି ବଲ୍‌କଳ ପିନ୍ଧି ପକାଇଲେ । ଏ' ଦୃଶ୍ୟ ଦେଖି ଅନ୍ତଃପୁରବାସିନୀ ରାଣୀମାନେ କପାଳରେ କର ମାରି ଉଚ୍ଚସ୍ୱରରେ ରୋଦନ କଲେ ।

''ହେ ମୁନିଗଣ, ଶ୍ରୀରାମ ବଲ୍‌କଳ ଧାରଣ କରିବା ମାତ୍ରେ ସାକ୍ଷାତ୍ ମୁନିକୁମାର ପରି ଦେଖା ଗଲେ । ସୀତା କିନ୍ତୁ ବଲ୍‌କଳ ବସ୍ତ୍ରଟିକୁ ହାତରେ ଧରି ନୀରବରେ ଛିଡ଼ା ହୋଇ ରହିଲେ । ସେ କିପରି ଏହା ଧାରଣ କରିବେ ଆଦୌ ବୁଝି ପାରିଲେ ନାହିଁ । ସେ ସଙ୍କୋଚର ସହିତ ଶ୍ରୀରାମଙ୍କୁ କହିଲେ—''ଆର୍ଯ୍ୟ, ମୁଁ ଅରଣ୍ୟକ ମୁନିପତ୍ନୀଙ୍କ ପରି ବଲ୍‌କଳ ପିନ୍ଧି ଜାଣି ନାହିଁ ।''

ସୀତାଙ୍କର ଏପରି ସରଳ ବାକ୍ୟ ଶୁଣି, ଶ୍ରୀରାମ ମନେ ମନେ ଗଭୀର ଆଘାତ ପାଇଥିଲେ ମଧ୍ୟ ସୀତାଙ୍କ ହାତରୁ ବଲ୍‌କଳ ଦୁଇଖଣ୍ଡି ନେଇ, ଖଣ୍ଡିଏ ତାଙ୍କ ଶାଢ଼ୀ ଉପରେ ଘୋଡ଼ାଇ ଦେଇ, ଅନ୍ୟ ଖଣ୍ଡିକ କାନ୍ଧରେ ପକାଇଦେଲେ । ଏ' ପର୍ଯ୍ୟନ୍ତ ଗୁରୁ ବଶିଷ୍ଠ ନୀରବରେ ସବୁ କିଛି ଶୁଣୁଥିଲେ । ସେ ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ । ସେ କୈକେୟୀଙ୍କ ଅଶିଷ୍ଟତାରେ ଅଧୀର ହୋଇ କହିଲେ— ''କଳଙ୍କିନି, ତୁ ତୋ'ର ସୀମା ଅତିକ୍ରମ କରି ସାରିଲୁଣି ! କୁଳର ମାନ ମର୍ଯ୍ୟାଦାକୁ ତଳିତଳାନ୍ତ କରିବା ପରେ ଆଉ କ'ଣ ଅଧିକ କରିବାକୁ ଚାହୁଁଛୁ ? ଶ୍ରୀରାମ ବନକୁ ଯାଆନ୍ତୁ ବୋଲି ତୋ' ବର ଉଦ୍ଦିଷ୍ଟ ହୋଇଥିବା ବେଳେ ତୁ ସୀତାଙ୍କୁ ବଲ୍‌କଳ ଦେଲୁ କାହିଁକି ? ଶୁଣ କଳଙ୍କିନି, ମନେ ରଖ, ମୁଁ ତୋର ମନୋରଥ କେବେ ହେଲେ ପୂରଣ କରାଇ ଦେବି ନାହିଁ ! ଏହି ମୁହୂର୍ତ୍ତରେ ମୋ କ୍ଷମତା ବଳରେ ମୁଁ ସୀତା ଦେବୀଙ୍କୁ ରାଜ ସିଂହାସନରେ ବସାଇ, ଶ୍ରୀରାମ ବନରୁ ଫେରି ଆସିବା ପର୍ଯ୍ୟନ୍ତ

ତାଙ୍କର ହାତରେ ରାଜଦଣ୍ଡ ଧାରଣ କରାଇ ଶାସନ ପରିଚାଳନା କରିବ । ମୁଁ ଦେଖିବି - ତୁ କେଉଁ ନ୍ୟାୟ ବା ଅଧିକାର ବଳରେ ମୋତେ ବିରୋଧ କରିବୁ !"

ମହର୍ଷି ବଶିଷ୍ଠଙ୍କ କ୍ରୋଧ ପୂର୍ଣ୍ଣ ବଚନ ଶୁଣିବା ମାତ୍ରେ ସମସ୍ତେ ସନ୍ତୋଷ ପ୍ରକାଶ କଲେ । କିନ୍ତୁ ଶ୍ରୀରାମଚନ୍ଦ୍ର ବଡ଼ ଅଡୁଆରେ ପଡ଼ିଗଲେ । ସେ ମୁଁହ ଖୋଲି କିଛି କହି ପାରିଲେ ନାହିଁ ସତ, କିନ୍ତୁ ସେ ଯଥାଶୀଘ୍ର ସେଠାରୁ ଚାଲିଯିବାକୁ ଚାହୁଁ ଥିଲେ । ଏହି ସମୟରେ ରାଜା ସୁମନ୍ତଙ୍କୁ କହିଲେ—"ସୁମନ୍ତ, ମୋ' ରଥ ସଜାଇ ନେଇ ଆସ । ସେହି ରଥରେ ବସାଇ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କୁ ନଗର ବାହାରକୁ ନେଇଯାଅ ।" ସେ ମଧ୍ୟ ଉତ୍ତମ ବସ୍ତ୍ର ତଥା ସ୍ୱର୍ଣ୍ଣଭୂଷଣାଦି ଅଣାଇ ସୀତାଙ୍କ ହାତରେ ଅର୍ପଣ କଲେ । ସୀତା ଆଦୌ ଆପତ୍ତି ନ କରି ସେଗୁଡ଼ିକ ଶ୍ୱଶୁରଙ୍କଠାରୁ ଗ୍ରହଣ କଲେ । ତା' ପରେ ରାଜା ଦେହ ରେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ।

ସୁମନ୍ତ ରଥ ସଜାଇ ଆଣିବା ମାତ୍ରେ ଲକ୍ଷ୍ମଣ ସେଥିରେ ଧନୁଶର, ତଥା ଆବଶ୍ୟକ ଅସ୍ତ୍ରଶସ୍ତ୍ର ସଜାଇ ରଖିଲେ । ତା'ପରେ ଜାନକୀଙ୍କ ହାତ ଧରି ଶ୍ରୀରାମ ରଥ ଉପରକୁ ଉଠିଗଲେ । ଲକ୍ଷ୍ମଣ ତାଙ୍କ ପଛେ ପଛେ ଯାଇ ଶ୍ରୀରାମଙ୍କ ପଛ ଆଡ଼େ ବସି ପଡ଼ିଲେ । ସୁମନ୍ତ ରଥ ଚଳାଇବା ଲାଗି ଆରମ୍ଭ କଲା ମାତ୍ରେ ଅଯୋଧ୍ୟାର ନରନାରୀ ବ୍ୟାକୁଳ କଣ୍ଠରେ ଚିତ୍କାର କରି କହିଲେ—"ମନ୍ତ୍ରୀବର, ଟିକିଏ ଅପେକ୍ଷା କରନ୍ତୁ ! ଆମେ ଆମର ସ୍ନେହର ଶ୍ରୀରାମଙ୍କୁ ଥରେ ଆଖି ପୂରାଇ ଦେଖି ନେଉ !"

ଏହି କୋଳାହଳ ମଧ୍ୟରେ ଦଶରଥଙ୍କ ଚେତା ଫେରି ଆସିଲା । ସେ ଉଠିପଡ଼ି ଅସ୍ତବ୍ୟସ୍ତ ହୋଇ ଧାଇଁଯାଇ କହିଲେ—"ସୁମନ୍ତ ଟିକିଏ ଅପେକ୍ଷା କର । ମୁଁ ମୋ' ଶ୍ରୀରାମକୁ ଶେଷଥର ପାଇଁ ମନବୋଧ କରି ଦେଖି ନିଏ ।"

ମହାରାଜ ଦଶରଥ କୌଣସି ପ୍ରକାର ରାଜ ସମ୍ଭ୍ରମ ନମାନି ଖାଲି ପାଦରେ ସିଂହଦ୍ୱାର ଆଡ଼କୁ ଧାଇଁ ଗଲେ । ରାଜା ସିଂହଦ୍ୱାରରେ ରୋଦନ କରୁଥିବା ଅସଂଖ୍ୟ ଜନତାଙ୍କୁ ଦେଖି ପୁଣି ସେହିଠାରେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ସେବକମାନେ ତାଙ୍କୁ ଘେରିଯାଇ ଆଶ୍ୱସ୍ତ କରିବାକୁ ଲାଗିଲେ । ଶ୍ରୀରାମଙ୍କ ଆଦେଶ ଅନୁସାରେ ସୁମନ୍ତ ଶୀଘ୍ର ରଥ ବାହି ଆଗେଇ ଚାଲିଲେ । କିନ୍ତୁ ଅଯୋଧ୍ୟାର ପ୍ରଜାମାନେ ଘେରିଯାଇ ରଥର ଗତି ଅବରୋଧ କରି ଦେଲେ ।

ଏତିକି ବେଳେ ଦଶରଥଙ୍କର ମୂର୍ଚ୍ଛା ଭଙ୍ଗ ହୋଇଗଲା । ସେ ରାଜମାର୍ଗରେ "ରାମ, ଲକ୍ଷ୍ମଣ, ସୀତା" ବୋଲି ଉଚ୍ଚ ସ୍ୱରରେ ରୋଦନ କରି ଧାଇଁବାକୁ ଲାଗିଲେ । ରାଜ ସେବକମାନେ ମହାରାଜଙ୍କୁ କୌଣସିମତେ ଧରି ରଖିଲେ । କିନ୍ତୁ ଦଶରଥ

ଅଗ୍ଲୁଳ ସ୍ୱରରେ ଡାକ ସୁମନ୍ତ୍ରଙ୍କୁ ରଥ ରୋକିବା ଲାଗି ଅନୁରୋଧ କଲେ । ଏହା ଦେଖି ଶ୍ରୀରାମ କହିଲେ—"ସୁମନ୍ତ୍ର, ଆପଣ ଶୀଘ୍ର ରଥ ବାହି ନେଇ ଚାଲନ୍ତୁ !"

ଶ୍ରୀରାମଙ୍କ ଆଦେଶ ଶୁଣି ପ୍ରତିବାଦ କରି ସୁମନ୍ତ୍ର କହିଲେ—"କୁମାର, ମୋର ଉପାୟ କ'ଣ ? ପଛରୁ ସ୍ୱୟଂ ମହାରାଜ ରଥ ଅଟକାଇବା ଲାଗି ଆଦେଶ ଦେଉଛନ୍ତି । ଅଯୋଧ୍ୟାର ପ୍ରଜାମାନେ ରଥକୁ ଘେରି ଶୋକାକୁଳ ନେତ୍ରରେ ଛିଡ଼ା ହୋଇଛନ୍ତି । ସେଥିରେ ପୁଣି ରଥଟିକୁ ଆଗେଇ ନେବାପାଇଁ ତୁମେ ବାରମ୍ବାର ଆଦେଶ ଦେଉଛ । ମୋର ଉପାୟ କ'ଣ ? ଯଦି ମହାରାଜ ମୋତେ ପଚାରିବେ, ତୁମେ କାହିଁକି ମୋ' ଆଦେଶ ପାଳନ କଲ ନାହିଁ, ମୁଁ କ'ଣ ଉତ୍ତର ଦେବି ?"

"ଆପଣ ଏଠାକାର କରୁଣ ଦୃଶ୍ୟ ଦେଖୁ ନାହାନ୍ତି ? ଏ' ମର୍ମନ୍ତୁଦ ଦୃଶ୍ୟ ଆଉ ଅଧିକ ସମୟ ଦେଖି ହେବ ନାହିଁ । ମହାରାଜ ଯଦି ପଚାରିବେ—ତେବେ କୌଣସିମତେ ତାଙ୍କୁ ବୁଝାଇ ଦେବେ ।"

ସୁମନ୍ତ୍ର ଉପାୟହୀନ ହୋଇ ଶ୍ରୀରାମଙ୍କ ଆଦେଶାନୁସାରେ ଚଞ୍ଚଳ ଗତିରେ ରଥ ଚଳାଇବାକୁ ଲାଗିଲେ । ଅଯୋଧ୍ୟାର ନରନାରୀମାନେ ରଥର ପଛେ ପଛେ ଜୀବନ ବାଜିରେ ଧାଇଁବାକୁ ଲାଗିଲେ ।

ଦଶରଥ ଲକ୍ଷ୍ୟ କଲେ ରାଜମାର୍ଗ ପାର ହୋଇ ରଥ ବିଜୁଳି ବେଗରେ ଆଗେଇ ଚାଲିଛି । ସେ ସେହି ଆଡ଼କୁ ଏକ ଲକ୍ଷରେ ଚାହିଁରହି ପୁଣି ମୂର୍ଚ୍ଛିତ ହୋଇଗଲେ । ସେବକମାନଙ୍କ ଉପଚାରରେ ତାଙ୍କର ଚେତନା ଫେରି ଆସିବା ମାତ୍ରେ ସେ ଆଦେଶ ଦେଲେ—"ମୋତେ କୌଶଲ୍ୟାଙ୍କ ବାସଭବନକୁ ନେଇ ଯାଅ ।"

ସେବକମାନେ ମହାରାଜ ଦଶରଥଙ୍କୁ କୌଶଲ୍ୟାଙ୍କ ବାସଭବନକୁ ନେଇଗଲେ । ସେଠାରେ ଶଯ୍ୟା ଉପରେ ଶୟନ କରି କହିଲେ—"ରାଣି ! ତୁମେ ମୋ' ପାଖରେ ଅଛ ? ମୁଁ ଆଦୌ କିଛି ଦେଖିପାରୁ ନାହିଁ । ମୋର ଦୃଷ୍ଟି ଶ୍ରୀରାମଙ୍କ ପଛରେ ଆଗେଇ ଯାଉଛି । ମୁଁ କେବଳ ମୋ' ଶ୍ରୀରାମର ରଥକୁ ଦେଖି ପାରୁଛି !"

ମହାରାଣୀ କୌଶଲ୍ୟା ଦଶରଥଙ୍କ ପିଠିରେ ହାତ ବୁଲାଇ ଆଣି ଶୋକାକୁଳ କଣ୍ଠରେ କହିଲେ—"ମହାରାଜ, ଦୈବର ଲେଖନ କେ କରିବ ଆନ ? ଯାହା ହେବାର ହୋଇ ସାରିଲାଣି । ଆପଣ ଶୀଘ୍ର ଭରତକୁ ଡକାଇ ଆଣି ରାଜ୍ୟ ଅର୍ପଣ କରି ଦିଅନ୍ତୁ ! ଆପଣଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ରାମ ସୀତା ଓ ଲକ୍ଷ୍ମଣ ବନକୁ ଚାଲିଗଲେଣି । ଆଉ ବିଳମ୍ବ କାହିଁକି ?"

କୌଶଲ୍ୟାଙ୍କ ମୁଖରୁ ରୁକ୍ଷଫଟା ବାଣୀ ଶୁଣି ଦଶରଥ ମୁଣ୍ଡରେ ହାତମାରି ବିକଳରେ ରୋଦନ କରିବାକୁ ଲାଗିଲେ ।

## ଛପ୍ପୟ

"ବିନା ବସ୍ତ୍ର ଧେନୁ ସରସ ମାତା ରଥ ଘେରେଧା ।
ସେଓ୍ୱତ ଲଖି ନର ନାରୀ ରାମ ମୁଖ ରଥମେଂ ଫେରେଧା ।।
ବହରେ ବାଲ ବଖେର ରାମ କହି ରୋଓ୍ୱେ ଜନନୀ ।
ବହେ ନୟନ ଜଲଧାର ଭଇ ଗିଲୀ ସବ ଧରନୀ ।।
ରାମ କହାଁ ? ଲକ୍ଷ୍ମଣ କାହାଁ ? ବଡ଼ ଭାଗୀ ସୀୟା କହାଁ ?
ମୈଂ ହତ୍ଭାଗଉଁ ସଙ୍ଗ ମଁହ ଜ.ଇଁ ଲାଲ ମେରେ ଜହାଁ ।।"



# ରାମବିରହୀ ଭରତ

ଉପଗୀୟମାନ ଚରିତଃ ଶତଧୃତ୍ୟାଦିଭିର୍ମୁଦା ।
ଗୋମୂତ୍ରଯାବକଂ ଶ୍ରୁତ୍ୱା ଭ୍ରାତରଂ ବଲ୍‌କଲାମ୍ବରମ୍ ।
ମହାକାରୁଣିକୋଽତପ୍ୟଜ୍ଜଟିଲଂ ସ୍ଥଣ୍ଡିଲେଶୟମ୍ ॥

(ଶ୍ରୀ ଭା ୯ସ୍କନ୍ଧ, ୧୦ଅ, ୩୪, ୩୫ ଶ୍ଳୋକ)

## ଛପ୍‌ପୟ

"ରାମ ଗଏଉ ବନ ନୃପତି ତୁରତ ସୁରଲୋକ ସିଧାରେ ।
ଗୁରୁ ବୁଲଓ୍ୱାଏଉ ଭରତ ବୃତ ସୁନି ଭଏଉ ଦୁଖାରେ ॥
ପିତୁକେ କରି ସବ କରମ ମନ ଓ୍ୱନ ଚଲେ ରାମ ବନ ।
ରଟତ ରାମ ରଜ ଚରଣ ମାଁ ହିଁ ତନୁ ଛବି ମହିଁ ଲୟମନ ।
ଚିତ୍ରକୂଟ ପେଖି ଲଖନ ସିୟ, ରାମ ଭରତ ଲଖି ପଗ ପରେ ।
ହେଁ ଅଧୀର ରୋଏଉ ଭରତ, ନୟନ ନୀର ସବ କେ ଭରେ ।"

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍, ଯାହାଙ୍କର ଚରିତ ବ୍ରହ୍ମାଦି ଦେବଗଣ ପ୍ରସନ୍ନତାର ସହିତ ଗାନ କରୁଛନ୍ତି, ସେହି ମହା କରୁଣାମୟ ଶ୍ରୀରାମ ଯେତେବେଳେ ଶୁଣିଲେ ଯେ ତାଙ୍କର ପ୍ରିୟ ଭାଇ ଭରତ ଗୋମୂତ୍ରରେ ପ୍ରସ୍ତୁତ ପିଠା ଖାଇ, ବଲ୍‌କଲ ବସ୍ତ୍ର ପିନ୍ଧି, ଭୂମିରେ ଶୟନ କରି ସମୟ ଅତି ବାହିତ କରୁଛନ୍ତି, ସେ ଅତ୍ୟନ୍ତ ଦୁଃଖିତ ହେଲେ ।

ଶ୍ରୀରାମ ହେଉଛନ୍ତି ଆଦର୍ଶ, ସୀତା ମର୍ଯ୍ୟାଦାର ପ୍ରତୀକ, ଲକ୍ଷ୍ମଣ ଆଦର୍ଶର ମୂର୍ତ୍ତିମାନ୍ ସ୍ୱରୂପ ଏବଂ ଭରତ ତାହାକୁ ନିଜ ଜୀବନରେ ଚରିତାର୍ଥ କରି ଦେଖାଇଛନ୍ତି । ଶ୍ରୀରାମ ହେଉଛନ୍ତି ଶରୀର, ଦଶରଥ ପ୍ରାଣ ରୂପରେ ସେଥିରେ ସଞ୍ଚାର କରୁ ଅଛନ୍ତି ।

ସୀତା ତାଙ୍କର ଶୁଶ୍ରୂଷା । ଭରତ ହେଉଛନ୍ତି—ପ୍ରେମ ସ୍ୱରୂପ । ଲକ୍ଷ୍ମଣ ଓଜର ପ୍ରତୀକ, କୌଶଲ୍ୟା ଏ ସବୁର ଜନ୍ମଦାତ୍ରୀ ଏବଂ ଶତ୍ରୁଘ୍ନ ହେଉଛନ୍ତି—ଅନୁରାଗ । ଧନୁ ଓ ଶର ହାତର ଆୟୁଧ ଏବଂ ରାକ୍ଷସମାନେ ମୃଗୟାର ପଶୁ ତୁଲ୍ୟ ବିବେଚିତ ହୁଅନ୍ତି । ବାନର ଓ ଭଲ୍ଲୁକ ମାନେ ଶରୀରର ଅନ୍ୟାନ୍ୟ ଅଙ୍ଗ ଓ ଉପାଙ୍ଗ ରୂପେ ଚିହ୍ନିତ ହୁଅନ୍ତି । ପ୍ରେମ ବ୍ୟତୀରେକେ ଶରୀରର ଉପାଦେୟତା ପ୍ରାପ୍ତ ନାହିଁ ବୋଲି କୁହାଯାଇଥାଏ । ଶ୍ରୀରାମଙ୍କ ଚରିତରେ ପ୍ରେମର ସ୍ଥାନ ମୁଖ୍ୟ ଏବଂ ଭରତ ତାହାକୁ ଚରିତାର୍ଥ କରିଛନ୍ତି । ଈଶ୍ୱରଙ୍କର ସଜୀବ ମୂର୍ତ୍ତିର ସନ୍ଦର୍ଶନ କେବଳ ଭରତଙ୍କ ଚରିତରୁ ହିଁ ସମ୍ଭବ ହୋଇଥାଏ ।

ସୂତ ମହର୍ଷି କହିଲେ—"ହେ ମୁନିଗଣ, ଶ୍ରୀରାମ ରଥରେ ବସି ବନ ଅଭିମୁଖେ ଯାଉଥିବା ସମୟରେ ବୃଦ୍ଧ ବ୍ରାହ୍ମଣମାନେ ଧାଇଁ ଧାଇଁ ତାଙ୍କ ପଛେ ପଛେ ବନକୁ ଯାଇଥିଲେ । ଶ୍ରୀରାମ କିଛିଦୂର ଅଗ୍ରସର ହେବା ପରେ ରଥରୁ ଓହ୍ଲାଇ ପଡ଼ି ସେମାନଙ୍କୁ ଫେରି ଯିବା ଲାଗି ବିନୀତ ଭାବରେ ବୁଝାଇଲେ । ସେମାନେ ପ୍ରତ୍ୟୁତ୍ତର ଦେଇ କହିଲେ—"ହେ ଶ୍ରୀରାମ, ଆପଣ ଗୋ-ବ୍ରାହ୍ମଣଙ୍କ ସଂରକ୍ଷକ ଏବଂ ଆପଣ ସର୍ବଦା ଆମର ମନସ୍କାମନା ପୂରଣ କରିଛନ୍ତି । ତେଣୁ ଶ୍ରୀରାମଙ୍କ ବିନା ଆମ ଜୀବନରେ ସୁଖ ନାହିଁ । ତେଣୁ ହେ ଶ୍ରୀରାମ, ଆପଣ ଆମକୁ ପରିତ୍ୟାଗ କରି ଯାଆନ୍ତୁ ନାହିଁ । ଯଦି ପିତାଙ୍କୁ କହୁଁ ଥାଆନ୍ତି, ତେବେ ଆମେ ମଧ୍ୟ ଆପଣଙ୍କ ସହିତ ବନକୁ ଯିବୁ ଏବଂ ଆପଣଙ୍କ ସହିତ ଆଲୋଚନା କରି କନ୍ଦମୂଳ ଫଳ ଭକ୍ଷଣ ପୂର୍ବକ ଚିର ଶାନ୍ତି ଅନୁଭବ କରିବୁ । ଆମେମାନେ କେବେ ହେଲେ ଆପଣଙ୍କ ଜୀବନର ଭାର ହେବୁ ନାହିଁ । ଆମର ଆଉ କିଛି ଅଭିଳାଷ ନାହିଁ କେବଳ ଆମେମାନେ ଆପଣଙ୍କ ସାନ୍ନିଧ ଓ ଦର୍ଶନ କାମନା କରୁଛୁଁ ।"

ଏହା ଶୁଣି ଶ୍ରୀରାମ ମନେ ମନେ ଅତ୍ୟନ୍ତ ଦୁଃଖିତ ହେଲେ । ବ୍ରାହ୍ମଣମାନେ ନିଜ ସାଥିରେ ସମସ୍ତ ଅଗ୍ନିହୋତ୍ର ସାମଗ୍ରୀମାନ ନେଇ ଯାଇଥିଲେ । ସେମାନଙ୍କ ପଛେ ପଛେ ଅଯୋଧ୍ୟାର ଅସଂଖ୍ୟ ନାଗରିକ ମଧ୍ୟ ଶ୍ରୀରାମଙ୍କ ସହିତ ବନକୁ ଯିବା ଲାଗି ପ୍ରସ୍ତୁତ ହୋଇ ଚାଲିଥିଲେ । ସେମାନେ ଯାଇ ତମସା ନଦୀ କୂଳରେ ଉପସ୍ଥିତ ହୋଇଗଲେ । ଶ୍ରୀରାମ ଆଉ ଆଗକୁ ଅଗ୍ରସର ନ ହୋଇ ସେହିଠାରେ ରାତି ବିତାଇବାକୁ ଇଚ୍ଛା କଲେ ।

ସମସ୍ତେ ତମସା ନଦୀ କୂଳରେ ରାତ୍ରିଯାପନ କଲେ । ଦୂରପଥ ଚାଲି ଚାଲି ପ୍ରଜାମାନେ କ୍ଳାନ୍ତ ହୋଇ ପଡ଼ିଥିଲେ । ସେମାନେ ଗାଢ଼ ନିଦ୍ରାରେ ଶୋଇ ପଡ଼ିବା ମାତ୍ରେ ଶ୍ରୀରାମ ଲକ୍ଷ୍ମଣ ଓ ସୀତାଙ୍କ ସହିତ ରଥରେ ବସି ସମସ୍ତଙ୍କ ଅଜ୍ଞାତ ସାରରେ ସେଠାରୁ ବନକୁ ଚାଲିଗଲେ ।

ଶ୍ରୀରାମ ସେଠାରୁ ଯାଇ ଶୃଙ୍ଗବେର ପୁରରେ ନିଷାଦପତି ଗୁହକ ଶବରଙ୍କଠାରେ ଆତିଥ୍ୟ ଗ୍ରହଣ କଲେ । ଗୁହକ ଶ୍ରୀରାମଙ୍କୁ ତାଙ୍କ ରାଜ୍ୟରେ ଚଉଦ ବରଷ ସମସ୍ତ ଅତିବାହିତ କରିବା ପାଇଁ ସାଗ୍ରହ ଅନୁରୋଧ କଲେ । କିନ୍ତୁ ଶ୍ରୀରାମ ନିଜ ପ୍ରିୟବନ୍ଧୁ ଶବର ରାଜଙ୍କ ଅନୁରୋଧ ରକ୍ଷା ନ କରି ସେ ସୁମନ୍ତ୍ରଙ୍କୁ ଗଙ୍ଗା କୂଳରୁ ଫେରାଇ ଦେଇ ଚାଲି ଚାଲି ପ୍ରୟାଗ କ୍ଷେତ୍ରର ଭରଦ୍ୱାଜଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଶ୍ରୀରାମ ଭରଦ୍ୱାଜଙ୍କ ଆଶ୍ରମରେ ଗୋଟିଏ ରାତି ଯାପନ କରି ସେଠାରୁ ଚିତ୍ର କୂଟକୁ ଚାଲିଗଲେ ଏବଂ ସେଠାରେ ପର୍ଣ୍ଣକୁଟୀର କରି ଭାଇ ଓ ଭାରିଜାଙ୍କ ସହିତ କାଳଯାପନ କଲେ ।

ସୁମନ୍ତ୍ର ରଥ ନେଇ ଫେରି ଆସିବାର ଦେଖି, ଦଶରଥ ବିକଳ ହୋଇ ପଡ଼ିଲେ । ସେ ଶ୍ରୀରାମଙ୍କ ବିରହେ ଶୋକରେ ଅଧୀର ହୋଇ ନିଜର ଭୌତିକ ଶରୀରକୁ ପରିତ୍ୟାଗ କରି ଅନନ୍ତ ପଥର ଯାତ୍ରୀ ହୋଇଗଲେ । ତାପରେ ବଶିଷ୍ଠଙ୍କ ଆଦେଶ ଅନୁସାରେ ଦଶରଥଙ୍କ ମୃତ ଶରୀରକୁ ତେଲ ପାତ୍ରରେ ରଖାଇ ପାତ୍ର ମନ୍ତ୍ରୀମାନେ ଭରତ ଶତ୍ରୁଘ୍ନଙ୍କୁ ଅଣାଇବା ପାଇଁ କେକୟ ଦେଶକୁ ରଥ ପ୍ରେରଣ କଲେ । ଭରତ ଆସିବା ମାତ୍ରେ ଅଯୋଧ୍ୟାର ଶ୍ରୀହୀନ ଅବସ୍ଥା ଲକ୍ଷ୍ୟ କରି ମନେ ମନେ ବିଚଳିତ ହୋଇ ଉଠିଲେ । ସେ ସମସ୍ତଙ୍କ ମଳିନ ମୁଖକୁ ଚାହିଁ ମନେ ମନେ ଅତ୍ୟନ୍ତ ଦୁଃଖିତ ହୋଇ ମାତା କୈକେୟୀଙ୍କ ବାସ ଭବନରେ ଉପସ୍ଥିତ ହେଲେ ।

ଭରତଙ୍କୁ ଦେଖିବାମାତ୍ରେ କୈକେୟୀ ଆନନ୍ଦିତା ହୋଇ ତାଙ୍କୁ ପାଖେଇକି ଆଣି କୋଳରେ ବସାଇଲେ । ସେ ଭରତଙ୍କ ମନୋଭାବ ଆଦୌ ଜାଣି ନ ପାରି, ପ୍ରଥମେ ନିଜ ବାପା, ଭାଇ ତଥା ପରିବାରର ଅନ୍ୟମାନଙ୍କ କୁଶଳ ସମ୍ବାଦ ପଚାରି ବସିଲେ । ପରିଶେଷରେ ସେ କହିଲେ—"ବତ୍ସ ! ମୁଁ ତୋ'ପାଇଁ ଅଯୋଧ୍ୟାର ରାଜ-ସିଂହାସନ ନିଷ୍କଣ୍ଟକ କରାଇ ଦେଇଛି । ତୁ ରାଜସିଂହାସନରେ ସୁଖରେ ପ୍ରଜାପାଳନ କର ।"

ପିତାଙ୍କ ମରଣ, ଶ୍ରୀରାମଙ୍କ ବନଗମନ, ସୀତା ଓ ଲକ୍ଷ୍ମଣଙ୍କ ଅନୁଗମନ ସମ୍ବନ୍ଧରେ ଶୁଣିବା ମାତ୍ରେ ଭରତ ମୂର୍ଚ୍ଛିତ ହୋଇ ଗଲେ । ତାଙ୍କ ମୂର୍ଚ୍ଛାଭଙ୍ଗ ହେବା ପରେ, ସେ କୈକେୟୀଙ୍କ କାର୍ଯ୍ୟକୁ ନିନ୍ଦାକରି ଅନେକ ବିରକ୍ତ ହେଲେ । ଶତ୍ରୁଘ୍ନ ମନ୍ଥରାକୁ ଖୁବ୍ ମାଡ଼ ଦେଇ ପ୍ରତିଶୋଧ ନେଲେ । ତା'ପରେ ଭରତ ମାତା କୌଶଲ୍ୟାଙ୍କ ନିକଟକୁ ଯାଇ ଅନେକ ଶପଥ ପକାଇ ନିଜର ନିର୍ଦ୍ଦୋଷତା ସମ୍ବନ୍ଧରେ କାନ୍ଦି କାନ୍ଦି ନିବେଦନ କଲେ । ଭରତଙ୍କ ବିକଳ ଦେଖି ମାତା କୌଶଲ୍ୟା ତାଙ୍କୁ ସ୍ନେହରେ ଆଲିଙ୍ଗନ କରି କହିଲେ—"ବତ୍ସ ଭରତ ! ତୁ ରାମ ବିଷୟରେ ଏହି

ଷଡ଼ଯନ୍ତ୍ରରେ ଲିପ୍ତ ଅଛୁ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନାହିଁ । ମୁଁ ଭଲ ଭାବରେ ଜାଣେ, ତୁ ରାମର ଏକମାତ୍ର ହିତୈଷୀ । ସେ ବନକୁ ଯିବା ବେଳେ ସମସ୍ତଙ୍କୁ କହୁଥିଲା—"ମୋର ପ୍ରିୟତମ ଭାଇ ଭରତ ରାଜସିଂହାସନରେ ବସିବ, ଏହାଠାରୁ ଅଧିକ ଆନନ୍ଦ କ'ଣ ହୋଇପାରେ ? ତୁମେମାନେ ଭରତର ମନ ନେଇ କାର୍ଯ୍ୟ କରିବ । ତୁ ଆଦୌ ସନ୍ଦେହ କରନା ଯେ, ଶ୍ରୀରାମ ତୋ' ପ୍ରତି ଅସନ୍ତୁଷ୍ଟ ଏବଂ ମୋ' ମନରେ ତୋ'ପ୍ରତି ଆଦୌ ଖରାପ ଧାରଣା ନାହିଁ । ଆମେ ତୋ' ଉପରେ ଏକମାତ୍ର ଭରସା କରୁଛୁ ।"

ଭରତ କାନ୍ଦି କାନ୍ଦି ଉତ୍ତର ଦେଲେ—"ମାଆ, ତୁମେ ମୋତେ ଏପରି ନିଷ୍ଠୁର ଆଦେଶ ଦିଅ ନାହିଁ । ରାଜ୍ୟର ଏକମାତ୍ର ଅଧିକାରୀ ହେଉଛନ୍ତି—ଶ୍ରୀରାମ । ଆମେମାନେ ତାଙ୍କର ଭୃତ୍ୟ ଓ ସେବକ ! ସ୍ୱାମୀଙ୍କ ସିଂହାସନ ଉପରେ ସେବକମାନେ ବସିବେ କିପରି ? ମାଆ, କାକ କେବେହେଲେ ହଂସର ଅଧିକାର ନେଇ ପାରିବ ନାହିଁ । ଶ୍ରୀରାମ ଏ' ଅଯୋଧ୍ୟାର ସିଂହାସନରେ ଅଧିଷ୍ଠିତ ହେବେ । ତାଙ୍କ ବ୍ୟତୀତ ଏ' ରାଜସିଂହାସନରେ ବସିବାର ଅଧିକାର କାହାରି ନାହିଁ ।"

କୌଶଲ୍ୟା ଭରତଙ୍କୁ ବୁଝାଇ କହିଲେ—"ବତ୍ସ ! ରାମ ବନକୁ ଚାଲି ଗଲେଣି । ମହାରାଜ ଆମ ସମସ୍ତଙ୍କୁ ଅନାଥ କରି ସ୍ୱର୍ଗ ପୁରର ଯାତ୍ରୀ ହୋଇଛନ୍ତି । ଲକ୍ଷ୍ମଣ ମଧ୍ୟ ଶ୍ରୀରାମଙ୍କ ସହିତ ଚାଲି ଯାଇଛି । ଏପରି ଅବସ୍ଥାରେ ତୁ ଏପରି ବାତୁଳ ହେଲେ ଚଳିବ କିପରି ? ଶ୍ରୀରାମ ଫେରିବା ପର୍ଯ୍ୟନ୍ତ ତୁ ରାଜ୍ୟର ମର୍ଯ୍ୟାଦା ରକ୍ଷାକରି ପ୍ରଜାମାନଙ୍କୁ ପାଳନ କର ! ସେ ଆସିଲେ, ତୁ ତାଙ୍କୁ ସିଂହାସନ ଫେରାଇ ଦେବୁ !"

ଭରତ ଦୁଃଖରେ ଅଧୀର ହୋଇ କହିଲେ –"ମାଆ, ଏହା କଦାପି ହୋଇ ପାରିବ ନାହିଁ । ମୁଁ ସିଂହାସନ ଆଡ଼କୁ ଭୁଲ୍‌ରେ ସୁଦ୍ଧା ଥରେମାତ୍ର ଚାହିଁବି ନାହିଁ । ମୁଁ ଶ୍ରୀରାମଙ୍କ ପଛେ ପଛେ ବନକୁ ଯାଇ ତାଙ୍କୁ ଫେରାଇ ଆଣି ରାଜସିଂହାସନରେ ବସାଇବି ।"

ମାତା କୌଶଲ୍ୟା ବେଶ୍ ବୁଝି ପାରିଲେ—ଭରତ କୌଣସିମତେ କଥା ମାନିବ ନାହିଁ । ସେ ଶ୍ରୀରାମଙ୍କୁ ଫେରାଇ ଆଣିବା ଲାଗି ନିଶ୍ଚୟ ବନକୁ ଗମନ କରିବ । ତେଣୁ ସେ ଆଉ କିଛି ନ କହି ନୀରବ ହେଲେ । ଭରତ ଗୁରୁ ବଶିଷ୍ଠଙ୍କ ନିର୍ଦ୍ଦେଶ ଅନୁସାରେ ପିତାଙ୍କ ଶୁଦ୍ଧିକ୍ରିୟା ଆଦି ସମାପ୍ତ କରି, ତ୍ରୟୋଦଶ ଦିନ ଗୁରୁ, ପୁରଜନ ଓ ସୈନ୍ୟ ସାମନ୍ତଙ୍କୁ ନେଇ ପାଦରେ ଚାଲି ଚାଲି ଶ୍ରୀରାମଙ୍କ ଅନ୍ୱେଷଣ ଲାଗି ବାହାରି ପଡ଼ିଲେ । ସେ ମୁଖରେ ରାମନାମ, ହୃଦୟରେ ରାମପ୍ରେମ ତଥା କର୍ଣ୍ଣରେ ଶ୍ରୀରାମଙ୍କ ମନୋହର କୀର୍ତ୍ତି ଶ୍ରବଣ କରି, ଏକାଗ୍ରତାର ସହିତ ବନଗମନ କଲେ । ସେ ପ୍ରତ୍ୟେକ

ସ୍ଥଳରେ ଶ୍ରୀରାମଙ୍କ ବସସ୍ଥରେ ଖବର ନେଇ ଚିତ୍ରକୂଟ ଠାକରେ ଉପସ୍ଥିତ ହେଲେ । ଭରତଙ୍କ ଆଗମନରେ ଲକ୍ଷ୍ମଣଙ୍କ ମନରେ ନାନାପ୍ରକାର ସନ୍ଦେହ ଜାତ ହେଲା । କିନ୍ତୁ ଲକ୍ଷ୍ମଣଙ୍କ ମନରୁ ସନ୍ଦେହ ନିରାକରଣ କରାଇ ଶ୍ରୀରାମ କହିଲେ—"ଭାଇ ଭରତ ମନରେ ଯଦି ରାଜ୍ୟ ପ୍ରତି ଲୋଭ ଓ ମୋ' ପ୍ରତି ବୈରଭାବ ସୃଷ୍ଟି ହୁଏ, ତେବେ ଏ' ଧରା ରସାତଳକୁ ଚାଲିଯିବ । ଭରତ ପଦ୍ମପତ୍ର ପରି ସମ୍ପୂର୍ଣ୍ଣ ନିର୍ଲିପ୍ତ । ସେ ସାଂସାରିକ ବାତାବରଣ ମଧ୍ୟରେ ରହିଥିଲେ ମଧ୍ୟ ସଂସାରର ସାଧାରଣ ବାତାବରଣଠାରୁ ସମ୍ପୂର୍ଣ୍ଣ ପୃଥକ । ଭରତ ପରି ଗୋଟିଏ ଅମୂଲ୍ୟ ରତ୍ନ ଏ' ସଂସାର ମଧ୍ୟରେ ଆଉ ମିଳିବ ନାହିଁ । ଭରତଙ୍କୁ କେବେ ହେଲେ ଲୋଭ ଗ୍ରାସ କରି ନ ପାରେ ! ମୁଁ ବେଶ୍ ଭଲ ଭାବରେ ଜାଣି ପାରୁଛି—ସେ ମୋତେ ମାରିବାକୁ ଆସୁନାହିଁ ବରଂ ମୋର ମନ ପରିବର୍ତ୍ତନ କରାଇ ଅଯୋଧ୍ୟାକୁ ଫେରାଇ ନେବା ପାଇଁ ଆସୁଛି । କେବଳ ଅଯୋଧ୍ୟାର ସିଂହାସନ କାହିଁକି, ବିଶ୍ୱବ୍ରହ୍ମାଣ୍ଡର ଅଧିକାର ମିଳିଲେ ମଧ୍ୟ ଭରତ ସେ ଆଡ଼କୁ ଭୁଲରେ ସୁଦ୍ଧା ଲୋଲୁପ ଦୃଷ୍ଟିରେ ଚାହିଁବ ନାହିଁ ।"

ଭରତଙ୍କ ପ୍ରତି ଶ୍ରୀରାମଙ୍କ ମନର ଧାରଣା ଲକ୍ଷ୍ୟ କରି ଲକ୍ଷ୍ମଣ ମନେ ମନେ ଲଜ୍ଜିତ ହେଲେ । ଏହି ସମୟରେ ଚକ୍ଷୁରୁ ଅବାରିତ ଗତିରେ ଲୁହ ଝରାଇ ଭରତ ସେହି ଆଡକୁ ଆଗେଇ ଆସିଲେ । ସେ ପ୍ରଥମେ ଲକ୍ଷ୍ମଣଙ୍କୁ ଦେଖି ଆନନ୍ଦରେ କୁଣ୍ଢାଇ ପକାଇ ଅନେକ ରୋଦନ କଲେ । ରାମ ଦୂରରୁ ଏହା ଲକ୍ଷ୍ୟ କରି ଦୁଇହସ୍ତ ପ୍ରସାରଣ ପୂର୍ବକ ଭରତ ଆଡକୁ ଆଗେଇ ଗଲେ । ଭରତ ଶ୍ରୀରାମଙ୍କୁ ଦେଖି ପାରି ପାଗଳଙ୍କ ପରି ଧାଇଁ ଆସି ତାଙ୍କ ପାଦତଳେ ଲୋଟିଗଲେ । ଶ୍ରୀରାମ ଭରତଙ୍କୁ ତଳୁ ଉଠାଇ ସ୍ନେହରେ ତାଙ୍କୁ ଆଲିଙ୍ଗନ କରି ତାଙ୍କ ନେତ୍ରରୁ ଲୋତକ ପୋଛି ଦେଲେ ।

"ହେ ମୁନିଗଣ" ! ସୂତ ମହର୍ଷି କହିଲେ—"ଶ୍ରୀରାମ ଓ ଭରତଙ୍କ ମିଳନକୁ କେଉଁ କବି ଭାଷାରେ ବର୍ଣ୍ଣି ପାରିବ ? ସେଭଳି ଆନନ୍ଦ ଜନକ ଦୃଶ୍ୟର ବର୍ଣ୍ଣନା ସ୍ୱୟଂ ସରସ୍ୱତୀ ମଧ୍ୟ ସଙ୍କୋଚ ବୋଧ କରିବେ ।"

ଶ୍ରୀରାମଙ୍କୁ ଆଲିଙ୍ଗନ କରି ଭରତ ଶୋକରେ ମୂହ୍ୟମାନ ହୋଇ ଉଠିଲେ । ତାଙ୍କ ଚକ୍ଷୁରୁ ଲୋତକ ଧାର ବହି ଶ୍ରୀରାମଙ୍କ ସର୍ବାଙ୍ଗକୁ ସିକ୍ତ କରି ଦେଲା । ଶ୍ରୀରାମ ତାଙ୍କୁ ନିଜ ଶରୀରରୁ ପୃଥକ୍ କରିବା ମାତ୍ରେ ଭରତ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଶ୍ରୀରାମ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ଭରତଙ୍କୁ ସଚେତ କରାଇଲେ । ତା'ପରେ ଶ୍ରୀରାମ ଭରତଙ୍କ ଶିରରେ ହାତ ବୁଲାଇ କହିଲେ—"ଭରତ, ତୁ ମୁନିମାନଙ୍କ ପରି ଜଟା ଓ ବଲ୍କଲ ଧାରଣ କରିଛୁ କାହିଁକି ? ତୁ ବୃଦ୍ଧ ପିତାଙ୍କୁ ତ୍ୟାଗ କରି ଆସିଲୁ କିପରି ? ସେ ବର୍ତ୍ତମାନ ସୁସ୍ଥ ଅଛନ୍ତି ତ ? ମୋର ବିଶ୍ୱାସ—ସେ ଆଦୌ ସୁସ୍ଥ ନାହାନ୍ତି !

ନହେଲେ ସେ ତୋତେ କେବେହେଲେ ବନକୁ ଛାଡ଼ି ଦେଇ ନଥା'ନ୍ତେ ! ତୁମେ ବରବର କାନ୍ଦୁଛ କାହିଁକି ? ତୁମ ଚକ୍ଷୁର ଲୋତକ ଦେଖି ମୋ' ମନ ଶଙ୍କାକୁଳ ହୋଇଯାଉଛି । ତୁମେ ମୋତେ ଶୀଘ୍ର ପିତାଙ୍କର କୁଶଳ ବାର୍ତ୍ତା ଶୁଣାଅ !"

ପୌରାଣିକ ସୂତ କହିଲେ—"ହେ ଶୌନକ ! ଶ୍ରୀରାମଙ୍କ ପ୍ରଶ୍ନ ଶୁଣି ଭରତ ଆହୁରି ଅଧିର ହୋଇ କ୍ରନ୍ଦନ କରିବାକୁ ଲାଗିଲେ ! ତାଙ୍କ କ୍ରନ୍ଦନ ଦେଖି ଶ୍ରୀରାମ ଅତ୍ୟନ୍ତ ବିଚଳିତ ହୋଇଯାଇ ପଚାରିଲେ—"ଭରତ, ତୋ'ର କ୍ରନ୍ଦନ ଦେଖି ମୋର ମନ ଅସ୍ଥିର ହୋଇ ଉଠୁଛି । ସତେ କ'ଣ ଆଉ ଆମର ପୂଜ୍ୟପିତା ଇହଧାମରେ ନାହାନ୍ତି ? ସେ ଆମକୁ ଅନାଥ କରି କ'ଣ ସ୍ୱର୍ଗଧାମକୁ ଚାଲିଗଲେଣି ? ସେ ନିଶ୍ଚୟ ମୋର ବନଗମନରେ ବ୍ୟଥିତ ହୋଇ ଇହଲୀଳା ସାଙ୍ଗ କରିଛନ୍ତି ! ତୁ ନୀରବ ନରହି ମୋତେ ପିତାଙ୍କ ସମ୍ବନ୍ଧରେ ଶୀଘ୍ର ସମ୍ବାଦ ଦେ .... ।"

ଭରତ ମୁହଁରୁ ପଦଟିଏ ହେଲେ କିଛି କଥା ବାହାର ନ କରି, କେବଳ କାନ୍ଦକାନ୍ଦ ମୁଣ୍ଡଟି ହଲାଇ ଦେଲେ । ସେଥିରୁ ଶ୍ରୀରାମ ବେଶ୍ ଧାରଣା କରି ପାରିଲେ ଯେ, ପିତା ଦଶରଥ ଆଉ ଇହଜଗତରେ ନାହାନ୍ତି । ତହୁଁ ହା··· ପିତା, ହା··· ମହାରାଜ ····· ! କହି ତଳେ ଗଡ଼ିବାକୁ ଲାଗିଲେ । ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ମଧ୍ୟ ଶ୍ରୀରାମଙ୍କ ପାଦତଳେ ପଡ଼ି ରୋଦନ କରିବାକୁ ଲାଗିଲେ । ସେମାନଙ୍କ ରୋଦନରେ ବନଭୂମି ମୁଖରିତ ହୋଇ ଉଠିଲା । ବୃକ୍ଷ ଲତା ଗହଳର ପଶୁ ପକ୍ଷୀମାନେ ମଧ୍ୟ ନିସ୍ତବ୍ଧ ହୋଇଗଲେ ।

ଭରତ କିଛି ସମୟ ପରେ ଧୈର୍ଯ୍ୟଧାରଣ କରି କହିଲେ—"ଭାଇ, ମୋ' ମାତା ଯେଉଁ ନୀଚତା ପ୍ରଦର୍ଶନ କଲେ, ସେଥିପାଇଁ ମୁଁ ଲଜ୍ଜିତ, ଅନୁତପ୍ତ ଓ ମର୍ମାହତ । ସେ ଲୋଭର ବଶବର୍ତ୍ତୀ ହୋଇ ଯେଉଁ ରାଜ୍ୟ ଓ ସିଂହାସନ ପାଇଁ ଏତେ ବଡ଼ ନୀଚ କର୍ମ କଲେ, ତା'ର କୁଫଳ କେବଳ ସେ ନିଜେ ଭୋଗ କଲେ ନାହିଁ । ବରଂ ତାଙ୍କ ପାପରୁ ସମଗ୍ର ଅଯୋଧ୍ୟା ହତଶ୍ରୀ ହୋଇଗଲା । ତାଙ୍କୁ ସିଂହାସନ ପରିବର୍ତ୍ତେ ମିଳିଲା—ବୈଧବ୍ୟ, ଅପକୀର୍ତ୍ତି ଓ ତୀବ୍ରମାନସିକ ଯନ୍ତ୍ରଣା । ହେ ରାଘବ, ଆପଣ ମୋ' ଦୋଷ କ୍ଷମା କରି ଅଯୋଧ୍ୟାକୁ ଲେଉଟି ଚାଲନ୍ତୁ । ପିତା ଆପଣଙ୍କ ନାମ ଆକୁଳ କଣ୍ଠରେ ଉଚ୍ଚାରଣ କରି କରି ପ୍ରାଣ ତ୍ୟାଗ କରିଛନ୍ତି । ଅଯୋଧ୍ୟାର ପ୍ରଜାକୁଳ ଆପଣଙ୍କ ବିରହରେ ଅନାଥ ହୋଇ ପଡ଼ିଛନ୍ତି । ମୁଁ ପାତ୍ର, ମନ୍ତ୍ରୀ, ମାତା, ପୁରଜନ, ବ୍ରାହ୍ମଣ, ସୂତ ଓ ମାଗଧଙ୍କ ସହିତ ଆପଣଙ୍କୁ ଅଭିଷିକ୍ତ କରି ମୁଁ ଅଯୋଧ୍ୟାକୁ ଫେରାଇ ନେବା ପାଇଁ ଆସିଛି । ଆପଣ ମୋ' ପ୍ରତି କେବଳ ନୁହେଁ, ସମଗ୍ର ଅଯୋଧ୍ୟା ବାସୀଙ୍କ ପ୍ରତି ଅନୁଗ୍ରହ କରି ବନରୁ ଲେଉଟି ଚାଲନ୍ତୁ । ଏତିକି କହି ଭରତ ବାଳକଙ୍କ ପରି ରୋଦନ କରିବାକୁ ଲାଗିଲେ ।

ଶ୍ରୀରାମ କାନ୍ଦି କାନ୍ଦି କହିଲେ—"ଭରତ, ଅଯୋଧ୍ୟାକୁ ମୁଁ ଆଉ କେଉଁ ମୁହଁରେ ଫେରିବି ? କାହା ପାଇଁ ଫେରିବି ? ମୁଁ ଭାବିଥିଲି—ପିତାଙ୍କ ସତ୍ୟ ରକ୍ଷା ପରେ ମୁଁ ଅଯୋଧ୍ୟା ଫେରିଯାଇ ତାଙ୍କ ଚରଣ ସେବା କରି ତାଙ୍କୁ ଶେଷ ଜୀବନରେ ସୁଖ ପ୍ରଦାନ କରିବି ! ମୁଁ କେଡ଼େ ହତଭାଗ୍ୟ ଭରତ ? ମୋର ପାଇଁ ପିତା ପ୍ରାଣତ୍ୟାଗ କଲେ । ମୁଁ ତାଙ୍କର ଜ୍ୟେଷ୍ଠ ପୁତ୍ର ହୋଇ ମଧ୍ୟ ତାଙ୍କ ଶ୍ରାଦ୍ଧକ୍ରିୟା କରି ପାରିଲି ନାହିଁ । ତୁ ଭାଗ୍ୟବାନ୍ ଭରତ ! ତୋର ହାତରୁ ପିତା ପିଣ୍ଡ ଗ୍ରହଣ କଲେ । ମୁଁ ପିଣ୍ଡ ଦେବାର ପ୍ରକୃତ ଅଧିକାରୀ ହୋଇ ମଧ୍ୟ ସେଥିଲାଗି ଭାଜନ ହେଲି ନାହିଁ । ଯେଉଁ ସୌଭାଗ୍ୟର ଅଧିକାରୀ ହୋଇ ପାରିଲୁ, ସେ ସୌଭାଗ୍ୟ ମୋର ହେଲା ନାହିଁ ।

ସୀତା ଶ୍ୱଶୁରଙ୍କ ବିୟୋଗ ବାର୍ତ୍ତା ଶୁଣି ବିକଳରେ ରୋଦନ କରିବାକୁ ଲାଗିଲେ । ଶେଷରେ ଶ୍ରୀରାମ ସୀତା, ଲକ୍ଷ୍ମଣ, ଭରତ, ଓ ଶତ୍ରୁଘ୍ନଙ୍କ ସହିତ ମନ୍ଦାକିନୀ ନଦୀତୀରକୁ ଯାଇ, ପିତାଙ୍କ ଉଦ୍ଦେଶ୍ୟରେ ତର୍ପଣ କରି, ପିଣ୍ଡ ସ୍ୱରୂପ ଫଳମୂଳ ଅର୍ପଣ କଲେ ।

ମୁନି ବଶିଷ୍ଠ କୌଶଲ୍ୟା ଓ ସୁମିତ୍ରାଙ୍କ ସହିତ ମନ୍ଦାକିନୀ ତୀରକୁ ଗଲେ । କୌଶଲ୍ୟା ସେଠାରେ ଶ୍ରୀରାମ ଆଦି ଭାଇ ଓ ସୀତାଙ୍କୁ ଅରକ୍ଷ ଅବସ୍ଥାରେ ଦେଖି ବିକଳରେ ରୋଦନ କରିବାକୁ ଲାଗିଲେ । ସେ ଶ୍ରୀରାମଙ୍କ ରାଜସୁଖ ତଥା ବନର ମହା ଦୁଃଖ ସ୍ମରଣ କରି ସୁମିତ୍ରା କହିଲେ—"ଭଉଣି, ଲକ୍ଷ୍ମଣ ପାଇଁ ମୋ' ଶ୍ରମର ଅନେକ ଦୁଃଖ ଲାଘବ ହୋଇ ଯାଉଛି । ସେ ଭାଇ ଭାଉଜଙ୍କ ମନ ଜାଣି ନିଷ୍ଠାପୂର୍ଣ୍ଣ ସେବା କରୁଛି । ନଇଲେ ମୋ' ନେଡ଼ିପିଲାଳୀ ଆହୁରି ଅନେକ ଦୁଃଖ ପାଉଥାନ୍ତା !

ଶ୍ରୀରାମ ସେଠାରୁ ଆସି ମାତାମାନଙ୍କ ଚରଣ ବନ୍ଦନା କଲେ । ସେ ପ୍ରଥମେ କୈକେୟୀଙ୍କୁ ପ୍ରଣାମ କରିବା ପରେ, କୌଶଲ୍ୟା ଓ ସୁମିତ୍ରାଙ୍କୁ ପ୍ରଣାମ କଲେ । କୌଶଲ୍ୟା ଓ ସୁମିତ୍ରା ଶ୍ରୀରାମଙ୍କ ତପସ୍ୱୀବେଶ ଦେଖି ବିକଳରେ ରୋଦନ କରିବାକୁ ଲାଗିଲେ । ସୀତା ଆଗେଇ ଯାଇ ଶାଶୁମାନଙ୍କ ଚରଣ ବନ୍ଦନା କଲେ । କୌଶଲ୍ୟା ସୀତାଙ୍କୁ ଆଲିଙ୍ଗନ କରି ବୁକୁଫଟା ରୋଦନରେ ସମସ୍ତଙ୍କୁ ଦ୍ରବୀଭୂତ କରାଇ ଦେଲେ ଜାନକୀଙ୍କ ଦଶା ଦେଖି କୈକେୟୀ ସମେତ ରାଣୀମାନେ ରୋଦନ କରିବାକୁ ଲାଗିଲେ ।

ସେତିକି ବେଳେ ପଛରେ ଆସୁଥିବା ଅଯୋଧ୍ୟା ନଗରବାସୀଗଣ ଆସି ପହଞ୍ଚିଗଲେ । ଶ୍ରୀରାମ ସମସ୍ତଙ୍କୁ ସତ୍କାର କରି ଫଳମୂଳ ଭୋଜନ ପ୍ରଦାନ ପୂର୍ବକ ତୃପ୍ତ କରାଇଲେ ।

ସମସ୍ତେ ଶ୍ରୀରାମଙ୍କ ପର୍ଣ୍ଣ କୁଡ଼ିଆ ଆଗରେ ତାଳପତ୍ର ବିଛାଇ ବସିଗଲେ । ଶ୍ରୀରାମ ବଶିଷ୍ଠଙ୍କ ଲାଗି ଖଣ୍ଡିଏ କୁଶାସନ ପକାଇ ଦେଲେ । ସମସ୍ତେ ଆସନ ଗ୍ରହଣ କରି ନୀରବରେ ବସି ରହିଲେ । ଭରତ ଲଜ୍ଜା, ଦୁଃଖ ଓ ଅନୁତାପରେ ସଢ଼ି ଯାଇ, ମୁହଁ ତଳକୁ କରି ବସି ରହିଥିଲେ । ଏହି ସମୟରେ କୁଳଗୁରୁ ବଶିଷ୍ଠ ମୌନ ଭଙ୍ଗ କରି କହିଲେ—"ଭରତ, ତୁମେ ସଙ୍କୋଚ ତ୍ୟାଗ କରି ତୁମର ଅଭିପ୍ରାୟ ଶ୍ରୀରାମଙ୍କୁ କହୁନାହଁ କାହିଁକି ?"

ଭରତ ହାତଯୋଡ଼ି ଉଠି ପଡ଼ିଲେ । ସେତେବେଳେ ତାଙ୍କର ଶରୀର ଥର ଥର ହୋଇ କମ୍ପୁଥିଲା ଏବଂ ଆଖିରୁ ଲୁହଧାର ଗଡ଼ି ପଡ଼ୁଥିଲା । ସେ ଗଦ୍‌ଗଦ୍ ସ୍ୱରରେ କହିଲେ—"ଗୁରୁଦେବ, ମୁଁ ସଂସାରରେ ମୁହଁ ଦେଖାଇବାର ଯୋଗ୍ୟ ନୁହେଁ । ମୁଁ ପାପୀ ! କଳଙ୍କ···!! ନୀଚ···!!! ତା ହୋଇ ନଥିଲେ ଆଜି ମୋତେ ଏପରି ଦୀନହୀନ ଅବସ୍ଥାରେ ଛିଡ଼ା ହେବାକୁ ପଡ଼ି ନଥା'ନ୍ତା ! ମୁଁ ସ୍ୱାମୀଘାତିନୀ କୈକେୟୀଙ୍କ ପୁତ୍ର !! ତାଙ୍କର କୁମର୍ମ ଫଳରେ ମୁଁ ଆଜି ମୋର ପ୍ରିୟତମ ଭାଇଙ୍କ-ଠାରେ ଅପରାଧୀ ହୋଇଛି !!! ତାଙ୍କର ଅପକର୍ମ ଫଳରେ ଅଯୋଧ୍ୟା ଶ୍ମଶାନରେ ପରିଣତ ହୋଇଗଲା । ସୀତାଙ୍କ ପରି ସୁକୁମାରୀ ରାଜକୁମାରୀ ବନଚାରିଣୀ ହୋଇଗଲେ । ଅଯୋଧ୍ୟାର ରାଜକୁମାର ତପସ୍ୱୀ ବେଶରେ ବନରେ ଖାଲି ପାଦରେ ବୁଲି ବୁଲି ଅନାଥଙ୍କ ପରି ଫଳମୂଳ ଖାଇ ଜୀବନ ଧାରଣ କରୁଛନ୍ତି । କେବଳ ସେତିକି ନୁହେଁ, ମୋ' ମାଆଙ୍କର ସର୍ବଗ୍ରାସୀ ତୃଷ୍ଣା ନିଜ ସ୍ୱାମୀଙ୍କୁ ମଧ୍ୟ କଷ୍ଟ ଦେଇ···।"

ଗର୍ଜି ଉଠି ରଘୁନାଥ କହିଲେ—"ଭରତ···! ମୋର ଆଦରଣୀୟା ମାଆ କୈକେୟୀଙ୍କ ସମ୍ବନ୍ଧରେ ଏପରି ଅପଶବ୍ଦ ପ୍ରୟୋଗ କରିବାର କୌଣସି ଅଧିକାର ତୋର ନାହିଁ । ତୁ ଯାହା କିଛି କହିବାକୁ ଚାହୁଁଛୁ, ନିଜ ବିଷୟରେ କହିପାରୁ !!"

ଆଖିରୁ ଧାରଶ୍ରାବଣର ଲୋତକ ଝରାଇ ଭରତ କହିଲେ—"ପ୍ରଭୋ···! ମୋର ସମସ୍ତ ଅଧିକାରରୁ ମୋତେ ବଞ୍ଚିତ କରାଯାଇ ବଳପୂର୍ବକ ମୋ ବେକରେ ଅନଧିକାରକୁ ଲଦି ଦିଆଯାଇଛି । ସାରା ଜୀବନ ଆପଣଙ୍କ ପାଦତଳେ ବସି ସେବା କରିବାର ଅଧିକାରକୁ ମୋ'ଠାରୁ ଛଡ଼ାଇ ନିଆଯାଇ ରାଜସିଂହାସନକୁ ମୋର ସମ୍ପୂର୍ଣ୍ଣ ଅନିଚ୍ଛା ସତ୍ତ୍ୱେ ମୋ ମୁଣ୍ଡରେ ଅଜାଡ଼ି ଦିଆଯାଇଛି । କିନ୍ତୁ ସମଗ୍ର ବିଶ୍ୱବାସୀ ଜାଣୁଛନ୍ତି—ମୋର ସମ୍ମତିରେ ଏ କାଣ୍ଡ ଘଟିଛି ! ହେ ରଘୁନନ୍ଦନ, ଆପଣ ଘଟଘଟବାସୀ ଅନ୍ତର୍ଯ୍ୟାମୀ । ମୁଁ ମୋ ହୃଦୟର କୌଣସି ଭାବନାକୁ ଗୋପନ ରଖିନାହିଁ । ମୁଁ କାହାକୁ ଦୋଷ ଦେବି ? ହେଉଛି ମୋର ଦୋଷ ! ମୋ ଭାଗ୍ୟର ଦୋଷ !! ମୋ' ପୂର୍ବ ଜନ୍ମ ପାପର ଦୋଷ !!!

"ଶ୍ରୀରାମ ! ମୋର ପ୍ରିୟତମ ଭାଇ !! ଅଯୋଧ୍ୟାର ଅଧିପତି !! ଆପଣ ମୋ' ପ୍ରତି କୈକେୟୀଙ୍କ ଗର୍ଭରୁ ଜାତ ଏହି କୁପୁତ୍ରଟା ପ୍ରତି ଦୟା କରି ଅଯୋଧ୍ୟାକୁ ଫେରି ଚାଲନ୍ତୁ ! ମୁଁ ଆପଣଙ୍କ ଶ୍ରୀଚରଣ ତଳେ ଏତିକି ଭିକ୍ଷା କରୁଛି । ଆପଣ କରୁଣାକର; ଆପଣ କୃପାସାଗର, ଆପଣ ଦୀନବନ୍ଧୁ ! ଦୟାକରି ମୋ' କାନରେ କରୁଣ ଭିକ୍ଷା ଅଜାଡ଼ି ଦିଅନ୍ତୁ ! ରାଘବ ! ଆପଣ ମୋତେ କେବେହେଲେ ନିରାଶ କରି ନାହାନ୍ତି । କଦାପି ମୋ ମୁଖରେ ଦୁଃଖର କାଳିମା ବୋଳି ନାହାନ୍ତି । ମୋତେ ଜିତାଇବାକୁ ଯାଇ ଆପଣ ଖେଳରେ ଜାଣି ଜାଣି ହାରିଛନ୍ତି ! ନିଜର ଶରକୁ ଲକ୍ଷ୍ୟଭ୍ରଷ୍ଟ କରାଇ ମୋତେ ଲକ୍ଷ୍ୟଭେଦ ଲାଗି ପ୍ରଶଂସା କରିଛନ୍ତି । ମୋତେ ଆଗେ ଖୁଆଇ ଆପଣ ପରେ ଖାଇଛନ୍ତି ! ଆପଣ ମୋତେ ସଂଯମ, ଧୈର୍ଯ୍ୟ ତଥା ସହନଶୀଳତା ସମ୍ବନ୍ଧରେ ଶିକ୍ଷା ଦେଇଛନ୍ତି । ହେ ରଘୁପୁଙ୍ଗବ, ଆପଣଙ୍କ ବ୍ୟତୀତ ଏ ସଂସାରରେ ମୋର କେହି ସାହାଯ୍ୟକାରୀ ନାହାନ୍ତି । ଏଥର ମୋତେ ନିରାଶ କରନ୍ତୁ ନାହିଁ ! ଏତିକି ମାତ୍ର ମୋର ଅଳି । ମୋର ଏହି ଶ୍ରେଷ୍ଠ ମାଗୁଣିଟି ରକ୍ଷା କରି, ଆପଣ ମୋ ସହିତ ଅଯୋଧ୍ୟାକୁ ଫେରି ଚାଲନ୍ତୁ ! ମୋତେ ପାଦସେବାର ଅବସର ପ୍ରଦାନ କରି ମୋ' ଜୀବନକୁ ଧନ୍ୟ କରନ୍ତୁ ।"

ଶ୍ରୀରାମ ଭରତଙ୍କର ଅନୁନୟପୂର୍ଣ୍ଣ ବଚନ ଶୁଣିବା ପରେ କିଛି ଉତ୍ତର ନଦେଇ ଗୁରୁଦେବଙ୍କ ଆଡ଼କୁ ଚାହିଁ ରହିଲେ । ବଶିଷ୍ଠ କହିଲେ—"ଶ୍ରୀରାମ, ତୁମେ ଭରତଙ୍କ ଅନୁରୋଧକୁ ବିବେକର ସହିତ ବିଚାର କର ! ସେ ଯାହା କହୁଛନ୍ତି— ତାହା କେବଳ ତାଙ୍କ ହୃଦୟର ବାଣୀ ନୁହେଁ, ତାହା ସମଗ୍ର ଅଯୋଧ୍ୟାବାସୀଙ୍କର ଅନ୍ତରର ବାଣୀ । ସେ ବିଶେଷ କିଛି କହି ନାହାନ୍ତି, କେବଳ ଅଯୋଧ୍ୟାର ନରନାରୀଙ୍କ ମନୋଭାବକୁ ନିଜ ଭାଷାରେ ବ୍ୟକ୍ତ କରିଛନ୍ତି । ହେଉ ଆଜି ସନ୍ଧ୍ୟା ହୋଇ ଗଲାଣି । ଏ ଆଲୋଚନା ଏତିକିରେ ଆଜି ଶେଷ ହେଉ ! କାଲି ପୁଣି ଏ ସମ୍ବନ୍ଧରେ ବିଚାର କରାଯିବ ।"

ସେଦିନ ସମସ୍ତେ ସଭାରୁ ଉଠି ମନ୍ଦାକିନୀ ତଟକୁ ଯାଇ ସନ୍ଧ୍ୟା ବନ୍ଦନାଦି ଶେଷ କରିଦେଲେ । ସାରାରାତି ଭରତ ଶୋଇ ପାରିଲେ ନାହିଁ । ସେ ଅନିଦ୍ରା ରହି କେଉଁ ଉପାୟରେ ଶ୍ରୀରାମଙ୍କୁ ଅଯୋଧ୍ୟା ଫେରାଇ ନିଆଯାଇ ପାରିବ, ସେ ବିଷୟରେ ଗମ୍ଭୀର ଅନୁଧ୍ୟାନ କରିବାକୁ ଲାଗିଲେ ।

ପରଦିନ ପ୍ରଭାତରୁ ସମସ୍ତେ ନିତ୍ୟକର୍ମ ଶେଷ କରି ପୁଣି ଏକତ୍ର ସମ୍ମିଳିତ ହେଲେ । ଗୁରୁଦେବଙ୍କ ଇଙ୍ଗିତରେ ପୁଣି ଭରତ ଆରମ୍ଭ କଲେ—"ଲୋକମାନେ ଭାବି ପାରନ୍ତି, ମୁଁ ବାରମ୍ବାର ଗୋଟିଏ କଥାକୁ ଦୋହରାଇ ଦୋହରାଇ କାହିଁକି କହୁଛି ? ଯେପରି ଆଘାତପ୍ରାପ୍ତ ବ୍ୟକ୍ତି ବ୍ୟଥା ଉପଶମ ହେବା ପର୍ଯ୍ୟନ୍ତ ଆର୍ତ୍ତଚିତ୍କାର

କହୁଥାଏ: ଠିକ୍ ସେହିପରି ଶ୍ରୀରାମଚନ୍ଦ୍ର ଅଯୋଧ୍ୟାକୁ ଫେରିବା ପର୍ଯ୍ୟନ୍ତ ମୁଁ ଏହିପରି ଭାବରେ ବୃକ୍ଷତଳେ ରାତି ଯାପନ କରି ଚାଲିଥିବି । ଶ୍ରୀରାମଙ୍କ ବିନା ମୁଁ ଅଯୋଧ୍ୟାକୁ ଲେଉଟି ଯିବି ନାହିଁ !''

ଏଥର ଶ୍ରୀରାମ ମୁହଁ ଖୋଲିଲେ—''ଭରତ, ତୁ ଭାବୁକତାର ବଶବର୍ତ୍ତୀ ହୋଇ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହୋଇ ଯାଉଛୁ ।''

ଭରତ ସଙ୍ଗେ ସଙ୍ଗେ ଦୃଢ଼ସ୍ୱରରେ ପ୍ରତିବାଦ କରିବା ଢଙ୍ଗରେ କହିଲେ—''ହେ ମହାରାଜ, ମୁଁ ମୋର କର୍ତ୍ତବ୍ୟର ଅନୁରୋଧରେ ଆଜି ଜଙ୍ଗଲରେ ଏପରି ରୋଦନ କରୁଛି । କାରଣ, ରାଜ୍ୟ ଶାସନ ଚଳାଇବା ମୋର କର୍ତ୍ତବ୍ୟ ନୁହେଁ । ଆପଣଙ୍କ ପାଦସେବା ହିଁ ମୋର ଏକମାତ୍ର ଧ୍ୟେୟ । ତେଣୁ ମୋର ଏକମାତ୍ର ଅନୁରୋଧ, ଆପଣ ନିଜ କର୍ତ୍ତବ୍ୟ ନିଜେ ହାତକୁ ନେଇ, ମୋତେ ମୋର କର୍ତ୍ତବ୍ୟ କରିବାର ସୁଯୋଗ ଦିଅନ୍ତୁ !''

ଶ୍ରୀରାମ ଭରତଙ୍କ ଅକାଟ୍ୟ ଯୁକ୍ତିର ସମୁଚିତ ଉତ୍ତର ଦେବାକୁ ଯାଇ କହିଲେ—''ଭରତ, ତୋ ଯୁକ୍ତିର ସାରବତ୍ତା ମୁଁ ଅନୁଭବ କରୁଛି । କିନ୍ତୁ ତୁ ଆର୍ଯ୍ୟ ପରମ୍ପରାକୁ ଭୁଲି ଯାଉଛୁ । ଆମ ପରମ୍ପରା ହେଉଛି—ବଡ଼ମାନେ ଯେଉଁ ଆଦେଶ ଦେବେ, ତାହାକୁ ସାନମାନେ ବିନା ବିଚାରରେ ପାଳନ କରିବା । ପୁତ୍ରମାନଙ୍କୁ ଯେକୌଣସି ପ୍ରକାର ଆଜ୍ଞା ଦେବା ପିତାଙ୍କର ଅଧିକାର ରହିଛି । ସେହି ଅଧିକାର ବଳରେ ଆମ ପିତା ତୋତେ ରାଜସିଂହାସନରେ ବସାଇ ମୋତେ ବନବାସକୁ ପଠାଇଛନ୍ତି । ତେଣୁ ସ୍ୱଧର୍ମ ପାଳନ ପୂର୍ବକ ତୁ ପ୍ରଜା ପାଳନ କର । ମୁଁ ଚଉଦ ବର୍ଷ ବନରେ ମୁନିବେଶ ଧାରଣ କରି ଭ୍ରମଣ କରିବି । ଏହାହିଁ ହେଉଛି—କର୍ତ୍ତବ୍ୟ ପାଳନ ।''

ଭରତ କାନ୍ଦି କାନ୍ଦି ଉତ୍ତର ଦେଲେ—''ଭାଇ, ପିତା ସ୍ୱେଚ୍ଛାରେ ଆପଣଙ୍କୁ ବନବାସ ଦେଇ ନାହାନ୍ତି ! ଏହା ମୋ ମାଆଙ୍କର କୁଟିଳତା ଓ ସ୍ୱେଚ୍ଛାଚାରିତା ଫଳରେ ସମ୍ଭବ ହୋଇଛି । ସେ ସେହି ଲଜ୍ଜାରେ ଜର୍ଜ୍ଜରିତା ହୋଇ ଏବେ ଅନୁତାପ କରୁଛନ୍ତି । ତେଣୁ ସେ ମଧ୍ୟ ଆପଣଙ୍କୁ ଫେରାଇ ନେବା ପାଇଁ ଆମ ସାଥିରେ ବନକୁ ଧାଇଁ ଆସିଛନ୍ତି । କିନ୍ତୁ ଲଜ୍ଜା ଓ ଅନୁତାପାନଳରେ ଦଗ୍ଧ ହୋଇ ସେ କିଛି କହି ପାରୁ ନାହାନ୍ତି ।''

''ଭରତ…!'' ମୁଁ ପୁଣି ଥରେ ତୋତେ ଚେତାଇ ଦେଉଛି— ''ତୁ ମାଆ କୈକେୟୀଙ୍କ ମୁଣ୍ଡରେ ସବୁତକ ଦୋଷ ଲଦାଇ ଦେ'ନା ! ଯେଉଁ ସର୍ବଂସହା ମାତା

କୈକେୟୀ ମୋତେ ତୋ'ଠାରୁ ଅଧିକ ସ୍ନେହ କରୁଥିଲେ, ସେ ମୋତ ବନବାସ ଲାଗି ପଠାଇ ନପାରନ୍ତି । ଏଥିରେ ଦେବକୃତ ମାୟା ରହିଛି ! ଭାଗ୍ୟର ବିଡ଼ମ୍ବନା କାର୍ଯ୍ୟ କରୁଛି ! ଭବିତବ୍ୟକୁ କେହି ଟାଳି ପାରେ ନାହିଁ ଭାଇ ! ଏହାହିଁ ଘଟିବାର ଥିଲା । ଯାହା ହେବାର ଥିଲା, ତାହା ଘଟିଯାଇଛି । ଆଉ ସେ ପ୍ରସଙ୍ଗ ଉଠାଇ ପିତାଙ୍କ ଆତ୍ମାକୁ କଷ୍ଟ ଦେବା ତୋ ପକ୍ଷରେ ଉଚିତ ହେବ ନାହିଁ । ତେଣୁ ପିତାଙ୍କ ଆଦେଶରେ ତୁ ସ୍ୱତନ୍ତ୍ର, ମୁଁ ମଧ୍ୟ ସ୍ୱତନ୍ତ୍ର । ସେହି ସ୍ୱତନ୍ତ୍ରତା ବଳରେ ତୁ ଅଯୋଧ୍ୟାର ସିଂହାସନରେ ବସି ପ୍ରଜା ପାଳନ କର ! ମୁଁ ବନବାସ ଜୀବନ ଭୋଗ କରିବା ପରେ ଚଉଦ ବର୍ଷ ଅତୀତ ହୋଇଗଲେ ପୁଣି ଅଯୋଧ୍ୟାକୁ ଫେରିବି !"

ଭରତ କହିଲେ—"ଆପଣ ଠିକ୍ କହୁଛନ୍ତି । ଯେଉଁ ଆଦେଶ ବଳରେ ମୁଁ ରାଜ୍ୟର ଅଧିକାରୀ ହେବାର ସ୍ୱତନ୍ତ୍ରତା ଅର୍ଜନ କରିଛି, ତାହାରି ବଳରେ ମୁଁ ସେହି ସିଂହାସନକୁ ଆପଣଙ୍କ ଶ୍ରୀଚରଣରେ ଦାନ ଦେବାର ଅଧିକାର ମଧ୍ୟ ପାଇଛି । ଆପଣ ମୋ ଅର୍ଘ୍ୟ ଗ୍ରହଣ କରନ୍ତୁ ।"

ଏହା ଶୁଣି ଶ୍ରୀରାମ ହସି ହସି କହିଲେ—"ମୁଁ ରାଜସିଂହାସନ ପାଇଁ ଯୋଗ୍ୟ ନୁହେଁ । ମୁଁ ତୋ ଦାନ ଗ୍ରହଣ କରିବି କିପରି ? ଜଣେ ସର୍ବସ୍ୱ ତ୍ୟାଗୀ ସନ୍ନ୍ୟାସୀକୁ ଯଦି କେହି ଜଣେ ସ୍ତ୍ରୀ ଦାନ କରେ, ତେବେ ସେ କ'ଣ ତାହା ଆଗ୍ରହର ସହିତ ଗ୍ରହଣ କରି ପାରିବେ ? ମୁଁ ପିତାଙ୍କ ଆଗରେ ପ୍ରତିଜ୍ଞା କରିଛି—ଚଉଦ ବର୍ଷ ବନରେ ବିଚରଣ କରିବି । ସେହି ଅବଧି ଶେଷ ହେବା ପୂର୍ବରୁ ମୁଁ କିପରି ରାଜ-ସିଂହାସନରେ ବସି ପାରିବି ? ବାଣୀ ଓ କର୍ମଙ୍କ ମନୋଭାବ ମଧ୍ୟରେ ସମାନତା ରହିବା ଉଚିତ ।"

"ଆପଣ ସମୁଚିତ କଥା କହୁଛନ୍ତି ! ଆପଣ ଯେଉଁ ପ୍ରତିଜ୍ଞା ବଳରେ ଚଉଦ ବର୍ଷ ବନବାସ କରିବା ଲାଗି ଧାଇଁ ଆସିଛନ୍ତି; ମୁଁ ସେହି ପ୍ରତିଜ୍ଞାକୁ ଆପଣଙ୍କ ବଦଳରେ ପାଳନ କରିବା ଲାଗି ପ୍ରସ୍ତୁତ ଅଛି । କେବଳ ଚଉଦ ବର୍ଷ କାହିଁକି, ମୁଁ ଯାବଜ୍ଜୀବନ ବନରେ ରହି ମୁନି-ବ୍ରତ ପାଳନ କରିବା ଲାଗି ପ୍ରସ୍ତୁତ ଅଛି । ଆପଣ ଅଯୋଧ୍ୟାକୁ ଫେରିଯାଇ ଦୁଃଖିତ ପ୍ରଜାମାନଙ୍କ ଦୁଃଖ ଦୂର କରନ୍ତୁ ! ଦୟା ପ୍ରଦର୍ଶନଠାରୁ ଅଧିକ ଧର୍ମ କିଛି ହୋଇନପାରେ ନାହିଁ । ଦୟା ହେଉଛି—ଧର୍ମର ମୂଳ । ସେହି ମୂଳକୁ ସୁରକ୍ଷା କରିବା ପାଇଁ ଆପଣ ଆମପ୍ରତି ଅନୁଗ୍ରହ କରନ୍ତୁ । ଆପଣ ମୂଳକୁ ଛାଡ଼ି ଦେଇ ଶାଖା ଓ ପତ୍ରରେ ଜଳ ଦେଲେ ବୃକ୍ଷ ବଞ୍ଚିରହିବ କିପରି ? ଆପଣଙ୍କ ବିନା ମାଆମାନେ ଅନ୍ନଜଳ ଗ୍ରହଣ କରୁ ନାହାନ୍ତି, ପ୍ରଜାକୁଳ ହା ହା କାର କରୁଛନ୍ତି ! ତେଣୁ ଆପଣ ଏ ଦାସର ଅନୁରୋଧ ରକ୍ଷାକରି ଅଯୋଧ୍ୟାକୁ ଫେରି ଚାଲନ୍ତୁ !"

"ଭରତ !" ଗମ୍ଭୀର ହୋଇ କହିଲେ ରଘୁନାଥ—"ଧର୍ମ କାର୍ଯ୍ୟରେ ଛଳ କପଟ ସ୍ଥାନ ନାହିଁ । ଧର୍ମକୁ ଆଖିଠାରି ମାରି ଏପରି ଛଳନା ମୁଁ କେବେହେଲେ କରି ପାରିବି ନାହିଁ । ମୋ'ପାଇଁ ବନବାସ ଉଦ୍ଦିଷ୍ଟ । ତାହା ତୁ ମୁଣ୍ଡପାତି ସହ୍ୟ କରିବୁ କିପରି ? ବନବାସର ଅବଧି ଶେଷ ହେବା ପୂର୍ବରୁ ଅଯୋଧ୍ୟାକୁ ଫେରିଗଲେ, ଆମର ସତ୍ୟସନ୍ଧ ପିତାଙ୍କ ପ୍ରତି ଅପମାନ ତଥା ତାଚ୍ଛଲ୍ୟ ପ୍ରଦର୍ଶନ ହେବ । ତେଣୁ ତୁ ମୋତେ ବାଧ କରନା !"

ଭରତ ପୁଣି ଥରେ ଦୃଢ଼ତାର ସହିତ କହିଲେ—"ରଘୁ କୁଳତିଳକ, ଆପଣଙ୍କୁ ସାଙ୍ଗରେ ନ ନେଇ ମୁଁ ଅଯୋଧ୍ୟାକୁ ଫେରିଯିବି ନାହିଁ । ଯଦି ଏହା ଆପଣ ସ୍ୱୀକାର ନ କରନ୍ତି, ତେବେ ମୁଁ ମଧ୍ୟ ଆପଣଙ୍କ ପାଦତଳେ କୁଶାସନରେ ଆଖିବୁଜି, ବିନା ଅନ୍ନଜଳରେ ପଡ଼ି ରହିବି । ଆପଣ ଅନୁଗ୍ରହ କଲେ ମୁଁ ଆଖି ଖୋଲିବି, ଅନ୍ୟଥା ଚିରଦିନ ଲାଗି ମୋ' ଚକ୍ଷୁ ବନ୍ଦ ହୋଇଯିବ !" ଏତକ କହି ଭରତ ଶ୍ରୀରାମଙ୍କ ପାଦ ଦୁଇଟିକୁ ଧରି ସେହିଠାରେ ଭୂମିରେ ଶୋଇ ପଡ଼ିଲେ ।

ଭରତର କାର୍ଯ୍ୟରେ ମାଆମାନେ ଏକାବେଳେକେ ହର୍ଷ ଓ ଶୋକ ପ୍ରକାଶ କଲେ । ଭରତର ଭ୍ରାତୃଭକ୍ତିରେ ସେମାନେ ଆନନ୍ଦିତା ହୋଇଥିଲେ ହେଁ, ତା'ର ଦୃଢ଼ ପ୍ରତିଜ୍ଞା ଅର୍ଥାତ୍ ଅନଶନ ପୂର୍ବକ ପ୍ରାଣ ବିସର୍ଜନ ରୂପକ ଦୃଢ଼ତାରେ ସେମାନଙ୍କ ହୃଦୟ ଦୁଃଖରେ ଅଭିଭୂତ ହୋଇଗଲା । ଶ୍ରୀରାମ ଏପରି ଏକ ଧର୍ମସଙ୍କଟରେ ପଡ଼ି ଶେଷରେ ଭରତଙ୍କୁ ତଳୁ ଉଠାଇ ଆଣି କୋଳରେ ଶୁଆଇ ଦେଇ, ତାଙ୍କ ମୁଣ୍ଡରେ ହାତ ବୁଲାଉ ବୁଲାଉ କହିଲେ —"ତୁ ଏପରି ଅଝଟିଆ ହେଲେ ମୋର ଉପାୟ କ'ଣ ? ବ୍ରାହ୍ମଣମାନେ ଅନ୍ୟାୟ ଆଚରଣ କାରୀ ରାଜା ବିରୁଦ୍ଧରେ ଅନଶନ କରି ପ୍ରାଣ ବିସର୍ଜନ କିମ୍ବା କାର୍ଯ୍ୟ ସାଧନ କରିଥା'ନ୍ତି । କ୍ଷତ୍ରିୟମାନେ ଅନ୍ୟାୟ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରନ୍ତି । ତୁ କ୍ଷତ୍ରିୟର ସନ୍ତାନ ! ବ୍ରାହ୍ମଣମାନଙ୍କ ପରି 'ପ୍ରାୟୋପବେଶ' (ଅନଶନ କରି ପ୍ରାଣତ୍ୟାଗ କରିବା) ତୋ' ପକ୍ଷରେ ଉଚିତ ହେବ ନାହିଁ । ବରଂ ତୁ ଯଦି ଭାବୁଛୁ— ମୁଁ ଅନ୍ୟାୟ କରୁଛି, ତେବେ ଅସ୍ତ୍ର ଧାରଣ କରି ମୋତେ ହତ୍ୟା କରିପାରୁ !"

ଏହା ଶୁଣିବା ମାତ୍ରେ ଭରତ ତଳୁ ଉଠିପଡ଼ି କହିଲେ—"ଭାଇ, ମୁଁ ଆପଣଙ୍କୁ ଯେ କୌଣସିମତେ ମନାଇ ଅଯୋଧ୍ୟାକୁ ଫେରାଇ ନେବା ଲାଗି ଆସିଛି । ଆପଣ ମୋତେ ଯେଉଁ ପ୍ରତିଜ୍ଞା କରାଇବେ, ସେଥିଲାଗି ମୁଁ ପ୍ରସ୍ତୁତ ଅଛି, ଆପଣ ଫେରି ଚାଲନ୍ତୁ ! ଆପଣଙ୍କ ବିନା ମୁଁ ଜୀବନ ଧାରଣ କରି ପାରିବି ନାହିଁ । ଏହା ମୋର ଶେଷ ଅନୁରୋଧ !"

ଭରତଙ୍କର ଅନୁପମ ଭ୍ରାତୃଭକ୍ତି ଦେଖି ଗୁରୁଦେବ, ମାତାମାନେ ତଥା ଅଯୋଧ୍ୟାର ପ୍ରଜାବୃନ୍ଦଙ୍କ ଚକ୍ଷୁ ଛଳ ଛଳ ହୋଇଗଲା । ଲକ୍ଷ୍ମଣ ଓ ଶତ୍ରୁଘ୍ନ ମଧ୍ୟ

କହିକହି ହୋଇ କାନ୍ଦି ଉଠିଲେ । ଶ୍ରୀରାମ ହଠାତ୍ ସମାଧାନର ଗୋଟିଏ ସୂତ୍ର ବାହାର କରି କହିଲେ—"ଠିକ୍ ଅଛି ! ତୁ ରାଜସିଂହାସନରେ ବସିବୁ ନାହିଁ । ମୁଁ ତାହା ଗ୍ରହଣ କରୁଛି । ମୁଁ ରାଜ୍ୟର ଅଧିକାରୀ ବୋଲି ସ୍ୱୀକାର କଲି । ଏଥର ତୁ ଖୁସି ହେଲୁ ତ ? ବର୍ତ୍ତମାନ ଅଯୋଧ୍ୟାର ଅଧିପତି ଭାବରେ ମୁଁ ତୋତେ ଆଦେଶ ଦେଉଛି—ତୁ ରାଜପ୍ରତିନିଧି ଭାବରେ ମୋ' ପକ୍ଷରୁ ଶାସନ ପରିଚାଳନା କର ! ରାଜାଙ୍କ ଅନୁପସ୍ଥିତିରେ ମନ୍ତ୍ରୀ ତଥା ଅନ୍ୟ ଯେ କୌଣସି କ୍ଷମତାପ୍ରାପ୍ତ ପ୍ରତିନିଧି ଶାସନ କ୍ଷମତା ପରିଚାଳନା କରିବାର ପରମ୍ପରା ଆର୍ଯ୍ୟ ସମାଜରେ ରହିଛି ! ଚଉଦ ବର୍ଷ ପରେ ଆସି ମୁଁ ପୁଣି ମୋ' କ୍ଷମତାର ଅଧିକାରୀ ହୋଇଯିବି ! ଏହା ଫଳରେ ତୋର ଇଚ୍ଛା ପୂରଣ ହୋଇ ଯିବ ଏବଂ ପିତାଙ୍କ ପ୍ରତିଜ୍ଞା ମଧ୍ୟ ପାଳିତ ହେବ । ଆମେମାନେ ମିଳିମିଶି ଏପରି କାମ କରିବା, ଯାହାଫଳରେ ଆମ ପିତାଙ୍କ କୀର୍ତ୍ତି ବିଶ୍ୱବ୍ୟାପି ଖେଳିଯିବ । ଆମର କାର୍ଯ୍ୟ ପ୍ରତି କେହି କେବେହେଲେ ନାକ ଟେକିବାର ସୁଯୋଗ ପାଇବେ ନାହିଁ । ଦେଖ ଭରତ, ଭୋଗ ଅପେକ୍ଷା ତ୍ୟାଗର ମହତ୍ତ୍ୱ ଅଧିକ । ଅଯୋଧ୍ୟା ରାଜ୍ୟ ମୋର; କିନ୍ତୁ ମୁଁ ବନକୁ ନଯାଇ ଯଦି ରାଜ୍ୟ ଲୋଭରେ ଏଠାରୁ ଫେରିଯିବି ତେବେ ପିତା ମିଥ୍ୟାବାଦୀ ହେବେ ଏବଂ ତାଙ୍କ ସୁନାମରେ କଳଙ୍କ ରହିବ ।

"ଭରତ, ଯେଉଁ ବ୍ୟକ୍ତି ଅନ୍ୟକୁ ସମ୍ମାନ ଦେଇ ନ ଜାଣେ, ସେ ଆଦୌ ସମ୍ମାନନୀୟ ବ୍ୟକ୍ତି ନୁହେଁ ! ଆମେ ଯଦି ପରସ୍ପରକୁ ସ୍ନେହ ବନ୍ଧନରେ ବାନ୍ଧି ପାରିବା, ତା' ହେଲେ ରଘୁକୁଳର ସମ୍ମାନ ବୃଦ୍ଧି ପାଇବ । କିନ୍ତୁ କେବଳ ନିକଟରେ ରହିଲେ ଯେ, ଆମେ ପରସ୍ପରକୁ ସ୍ନେହ କରୁଥାଉଁ ବୋଲି ପ୍ରମାଣିତ ହେବ, ତା' ନୁହେଁ । ସ୍ନେହ ଓ ଶ୍ରଦ୍ଧାର ତୁଳା ଦଣ୍ଡରେ ଦୂର ବା ନିକଟର କୌଣସି ମହତ୍ତ୍ୱ ନାହିଁ । କାରଣ ସ୍ନେହର ସମ୍ପର୍କ ଶରୀର ସହିତ ଆଦୌ ନାହିଁ । ହୃଦୟ ସହିତ ସ୍ନେହ ବା ପ୍ରେମର ଅତୁଟ ସମ୍ପର୍କ ରହିଛି । ତୋର ମୋ' ପ୍ରତି ଯେଉଁ ସ୍ନେହ ଓ ଶ୍ରଦ୍ଧା ରହିଛି, ମୁଁ ତାହାକୁ ଅନୁଭବ କରିଥିଲି । କିନ୍ତୁ ଆଜି ସମଗ୍ର ଅଯୋଧ୍ୟା ବାସୀଙ୍କ ଆଗରେ ତାହା ପ୍ରମାଣିତ ହୋଇଗଲା ।

"ତୁ ମୋ' କଥା ଉପରେ ଭରସା ରଖ ଭରତ ! ମୁଁ ଚଉଦ ବର୍ଷ ପରେ ଅଯୋଧ୍ୟା ଫେରି ଆସି ରାଜ ସିଂହାସନରେ ଅଭିଷିକ୍ତ ହେବି । ସେ ପର୍ଯ୍ୟନ୍ତ ମୋ' ସମ୍ପତ୍ତି ତୋର ଦାୟିତ୍ୱରେ ରହିଲା । ଆଉ ଚିନ୍ତା କ'ଣ ?"

ଭରତ ଶ୍ରୀରାମଙ୍କ ଉପଦେଶରେ ସନ୍ତୁଷ୍ଟ ହୋଇ କହିଲେ—"ଭାଇ, ମୁଁ ଆପଣଙ୍କ ଆଜ୍ଞା ମୁଣ୍ଡପାତି ମାନି ନେଉଛି । କିନ୍ତୁ ଚଉଦବର୍ଷ ପୁରିଯିବାର ଠିକ୍ ପରଦିନ ଯଦି ଆପଣ ଅଯୋଧ୍ୟା ଫେରି ନ ଆସନ୍ତି, ତେବେ ମୁଁ ଜଳନ୍ତା ଅଗ୍ନିରେ

ଝାସ ଦେଇ ଆତ୍ମହତ୍ୟା କରି ଦେବ । ସେତେବେଳେ ଆପଣ ମୋତେ ଦୋଷ ଦେବେ ନାହିଁ ।”

ଶ୍ରୀରାମଚନ୍ଦ୍ର ସମ୍ମତି ସୂଚକ ଇଙ୍ଗିତ ଦିଅନ୍ତେ, ଭରତ ସୁବର୍ଣ୍ଣ ନିର୍ମିତ ପାଦୁକା ବାହାର କରି ଶ୍ରୀରାମଙ୍କ ପାଦତଳେ ଥୋଇ ଦେଇ କହିଲେ—“ଆପଣ ଏହି ପାଦୁକାକୁ ପିନ୍ଧି ଦିଅନ୍ତୁ । ମୁଁ ତାକୁ ନେଇ ଯାଇ ସିଂହାସନ ଉପରେ ଥୋଇ, ରାଜ ପ୍ରତିନିଧି ଭାବରେ ଶାସନ କାର୍ଯ୍ୟ ପରିଚାଳନା କରିବି । ଆପଣ ଫେରି ଆସିବା ପର୍ଯ୍ୟନ୍ତ ମୁଁ ନନ୍ଦି ଗ୍ରାମରେ ରହି ଶାସନକାର୍ଯ୍ୟ ପାଦୁକାର ପ୍ରତିନିଧି ଭାବରେ ଚଳାଉଥିବି ଏବଂ ମୁଁ ମଧ୍ୟ ଆପଣଙ୍କ ପରି ତପସ୍ୱୀ ବେଶରେ କାଳ ଅତିବାହିତ କରିବି !”

ଶ୍ରୀରାମ ପାଦୁକାକୁ ପିନ୍ଧିଦେଇ ଭରତ ହାତରେ ଅର୍ପଣ କଲେ । ଭରତ ରାମଙ୍କଠାରୁ ଅନୁମତି ନେଇ ସୈନ୍ୟ ସାମନ୍ତ, ଗୁରୁଦେବ ଓ ମାତାମାନଙ୍କ ସହିତ ଅଯୋଧ୍ୟାକୁ ଫେରି ଆସିଲେ ଏବଂ ନନ୍ଦିଗ୍ରାମରେ ପାଦୁକାକୁ ସିଂହାସନ ଉପରେ ଥୋଇ ସଭକ୍ତିରେ ପୂଜା କରିବାକୁ ଲାଗିଲେ ।”

ମହର୍ଷି ସୂତ କହିଲେ—“ହେ ମୁନିଗଣ ! ଭରତ ସେହି ଦିନଠାରୁ ନିଜକୁ ଶ୍ରୀରାମ ପ୍ରେମରେ ନିମଜ୍ଜିତ କରାଇ ସର୍ବତ୍ର ରାମମୟ ଦର୍ଶନ କଲେ । ଶୟନ ସପନ, ଜାଗରଣ ତଥା ସୁଷୁପ୍ତିରେ ସେ ନିଜେ ‘ରାମମୟ’ ହୋଇ ଉଠିଲେ ।

“ଚିତ୍ରକୂଟରେ ଥିବା ସମୟରେ ଶ୍ରୀରାମ ଭରତଙ୍କ ଦିନଚର୍ଯ୍ୟା ସମ୍ବନ୍ଧରେ ଶୁଣି, ଦୁଃଖମୟ ବନବାସ ଜୀବନରେ ମୋହମଗ୍ନ ହୋଇ ଉଠିଲେ ।

“ଶ୍ରୀରାମଚନ୍ଦ୍ର କିଛି ଦିନରେ ଚିତ୍ରକୂଟର ମୁନିମାନଙ୍କଠାରୁ ଅନୁମତି ନେଇ ସେଠାରୁ ଦଣ୍ଡକାରଣ୍ୟକୁ ଚାଲିଯାଇ ପ୍ରଥମେ ପୁରାଣ ମୁନି ଦମ୍ପତି ଅତ୍ରି ଓ ଅନସୂୟାଙ୍କ ଆଶ୍ରମରେ ପଦାର୍ପଣ କଲେ ।

## ଛପ୍ପୟ

“ପ୍ରୀତକାରେ ଲଘୁବନ୍ଧୁ ଧରମ ଅରୁ ନୀତ ସିଖାଇ ।
ପିବୁ ଗୌରବ କୀ ବାତ ବିବଶତା ରାମ ବତାଇ ।।
ଭରତ ମରମ ସବୁ ସମୁଝି ଦଣ୍ଡବତ ପଗ ପର କୀହ୍ନୀଂ ।
ରାମ ରଜାୟସୁ ପାଇ ପାଦୁକା ପ୍ରଭୁକୀ ଲୀହ୍ନୀଂ ।।
ନିବସୈ ନନ୍ଦୀଗ୍ରାମ ମହଁ ଛାଲ ବସନ ଅତି ଛୀନ ତନ ।
ରାମ ରଟହିଁ ଜପ ବ୍ରତ କରହିଁ ରମ ଚରଣ ମହଁ ଲୀନ ମନ ।।”



# ବନବିହାରୀ ଶ୍ରୀରାମ

ରକ୍ଷଃ ସ୍ୱସୁର୍ବ୍ୟକୃତରୂପମଶୁଦ୍ଧବୁଦ୍ଧେ—
ସ୍ତସ୍ୟାଃ ଖରତ୍ରିଶିର ଦୂଷଣ ମୁଖ୍ୟବନ୍ଧୂନ୍ ।
ଜଘ୍ନେ ଚତୁର୍ଦ୍ଦଶ ସହସ୍ର ମପାରଣୀୟ
କୋଦଣ୍ଡପାଣିରଟମାନ ଉବାସ କୃଚ୍ଛ୍ରମ୍ ॥

(ଶ୍ରୀ-ଭାଗ ୯, ସ୍କ ୧୦, ଅ ୯ ଶ୍ଳୋ)

## ଛପ୍ପୟ

"ଚିତ୍ରକୂଟ ତେଜିଂ ଚଲେ ରାମ ଇତ ଦଣ୍ଡକବନ ମହଁ ।
ନିରଖି ରାମ ସିୟ ଲଖନ ହୋହିଁ ମୁନି ପ୍ରମୁଦିତ ମନମହଁ ॥
ଅତ୍ରି ଅଗସ୍ତ୍ୟ ସୁତୀକ୍ଷ୍ଣ ଆଦି ମୁନି ପାବନ କୀନ୍ହେ ।
ଭଏ କୃତାରଥ ସବହିଁ ସ୍ୱୟଂ ହରି ଦରଶନ ଦୀନ୍ହେ ॥
ବସହିଁ ରାମ ସିୟ ସଗ ମହଁ ପଞ୍ଚବଟୀ ମହଁ କରି କୁଟୀ ।
ରାମ ରୂପ ଫଂସେ ଭଇ ଜହଁ ରାବଣ ଭଗିନୀ ନକ କଟୀ ॥"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ପରୀକ୍ଷିତ, ଦଣ୍ଡକାରଣ୍ୟରେ ଶ୍ରୀରାମଚନ୍ଦ୍ର ହସ୍ତରେ ଦୁର୍ଜୟ ଧନୁ ଧାରଣ କରି, ଅତ୍ୟନ୍ତ କଠିନ ଜୀବନ ଯାପନ କରିବାକୁ ଲାଗିଲେ । ସେ ସେଠାରେ ରାବଣର ଭଉଣୀ ଦୁଃଶୀଳା ସୂର୍ପଣଖାକୁ ବିକୃତ ରୂପ କରାଇଥିଲେ । ଶ୍ରୀରାମ ଏକାକୀ ଖର ଦୂଷଣ, ତ୍ରିଶିର ଓ ତାଙ୍କର ଚଉଦ ସହସ୍ର ସୈନ୍ୟ ଦଳଙ୍କୁ ସଂହାର କରିଥିଲେ ।

ଏହି ସଂସାର ଆକର୍ଷଣ ବଳରେ ହିଁ ତିଷ୍ଠି ରହିଛି । ଆକର୍ଷଣ ନଥିଲେ ଏ ସଂସାରର ଅସ୍ତିତ୍ୱ ରହନ୍ତା ନାହିଁ । ସୂର୍ଯ୍ୟ, ପୃଥ୍ୱୀ, ଚନ୍ଦ୍ର, ଉପଗ୍ରହମାନେ ପରସ୍ପରର

ଆକର୍ଷଣରେ ହିଁ ତିଷ୍ଠି ରହିଛନ୍ତି । ନୋହିଲେ ଘଡ଼ିକ ମଧ୍ୟରେ ପ୍ରଳୟ ହୋଇ ଯାଆନ୍ତା । ଶୁଣାଯାଏ—ପୂର୍ବରୁ ସୋମନାଥ ଦେବ ଶୂନ୍ୟରେ ଝୁଲି ରହିଥିଲେ । ତାଙ୍କର ଗୃହପଟେ ଚୁମ୍ବକୀୟ ଶକ୍ତି ରହିଥିଲା । ପରସ୍ପର ଚୁମ୍ବକୀୟ ଶକ୍ତିର ଆକର୍ଷଣରେ ମଧ୍ୟବର୍ତ୍ତୀ ବିଗ୍ରହ ଝୁଲି ରହିଥିଲା । ଠିକ ସେହିପରି ସାଂସାରିକ ଜୀବନରେ ମଧ୍ୟ ଆକର୍ଷଣ ରହିଛି । ତନ୍ମଧ୍ୟରେ କେତେକ ସୁନ୍ଦର ପଦାର୍ଥ ଆମମାନଙ୍କ ମନକୁ ଆକର୍ଷିତ କରିଥାଏ ।

ଭଗବାନ ଯେତେ ସ୍ୱରୂପ ଧାରଣ କରି ଅବତାର ଗ୍ରହଣ କରିଥାଆନ୍ତି, ହୁଏତ ସେ ସବୁ ସମ୍ଭବତଃ ତାଙ୍କ ପରି ଆମ ମନରେ ଏତେ ଆକର୍ଷଣ ନ ଥା'ନ୍ତା ! ସେହି ଅବତାରମାନଙ୍କ ମଧ୍ୟରେ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟରେ ଜଗତ ବଶୀଭୂତ ହୋଇଥିଲା । ଏହି ଦୁଇଗୋଟି ଅବତାରରେ ଭଗବାନ୍ ଏତେ ସୁନ୍ଦର ହୋଇଥିଲେ ଯେ, ସେ ନିଜେ ମଧ୍ୟ ନିଜର ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ଯାଇଥିଲେ । ସେହି ଦୁଇ ଅବତାର ଏତେ ସୁନ୍ଦର ଭାବରେ ଆମ ଆଗରେ ପ୍ରତିଭାତ ହୋଇଥିଲେ ହେଁ ତାହା ଭାଷାରେ ବର୍ଣ୍ଣି ହେବ ନାହିଁ ।

ଶ୍ରୀରାମଙ୍କ ସୌନ୍ଦର୍ଯ୍ୟ ଅବଲୋକନ କରି କେବଳ ମନୁଷ୍ୟ ନୁହଁନ୍ତି, ସମଗ୍ର ପ୍ରାଣୀଜଗତ ଆତ୍ମହରା ହୋଇ ଉଠିଥିଲା । ରାକ୍ଷସମାନଙ୍କ ପରି କଠୋର ହୃଦୟ ବ୍ୟକ୍ତିମାନେ କହୁଥିଲେ—"ଯଦ୍ୟପି 'ଏ' ଆମର ଶତ୍ରୁ ତଥା ଭକ୍ଷ୍ୟ, ତଥାପି ତାଙ୍କୁ ମାରିବା ପାଇଁ ଚିତ୍ତ ବଳୁ ନାହିଁ ।" ସ୍ତ୍ରୀମାନେ ସାଧାରଣତଃ ସୌନ୍ଦର୍ଯ୍ୟ ଆଡ଼କୁ ଅଧିକ ଆକର୍ଷିତା ହୋଇ ଥାଆନ୍ତି । କେତେକ ଅସାଧାରଣ ସତୀ ନାରୀଙ୍କ ବ୍ୟତୀତ, ସ୍ତ୍ରୀମାନେ ଯେକୌଣସି ସୁନ୍ଦର ତଥା ବଳିଷ୍ଠ ପୁରୁଷଙ୍କୁ ଦେଖି ଆତ୍ମବିଭୋର ହୋଇ ଉଠନ୍ତି ।"

ଶ୍ରୀରାମଙ୍କ ସୌନ୍ଦର୍ଯ୍ୟ ଅବଲୋକନ କରି ଲକ୍ଷ ଲକ୍ଷ ବର୍ଷ କଠୋର ତପସ୍ୟାରେ ମଗ୍ନ ଋଷିମାନେ ମଧ୍ୟ ବିମୁଗ୍ଧ ହୋଇ ଯାଇଥିଲେ । ସେମାନେ ତପସ୍ୟା ଓ ସଂଯମର ଗଣ୍ଡି ଭିତରୁ ବାହାରି ଆସି ଶ୍ରୀରାମଙ୍କୁ ଆଲିଙ୍ଗନ କରିବା ଲାଗି ବ୍ୟାକୁଳ ହୋଇ ଉଠିଥିଲେ । ସେମାନଙ୍କ ଅଭିଳାଷ ପୂରଣ କରିବା ପାଇଁ ସ୍ୱୟଂ ପ୍ରଭୁ ଶ୍ରୀରାମ କହିଥିଲେ —"ମୁଁ ଶ୍ରୀକୃଷ୍ଣ ଅବତାରରେ ତୁମମାନଙ୍କ କାମନା ପୂରଣ କରିବି । ତହୁଁ ସାଧୁମାନେ ସାଧ୍ୱୀ ହୋଇ ଗୋପରେ ଜନ୍ମଗ୍ରହଣ କରିଥିଲେ । କଠୋର ମୁନିମାନେ ଯଦି ଏପରି ବିହ୍ୱଳ ହୋଇ ଉଠିଥିଲେ, ତେବେ ଗୋଟିଏ ପତିହୀନା ରାକ୍ଷସୀକୁ ନିନ୍ଦା କରିବା କାହିଁକି ? ସେ ଶ୍ରୀରାମଙ୍କ ଅଲୌକିକ ସାମାନ୍ୟ ରୂପରେ ବିମୋହିତା ହୋଇ ଶେଷକୁ ନିଜର ନାକ କାନ କଟାଇ କୁରୂପା ହୋଇ ଯାଇଥିଲା । ପ୍ରଭୁ ଶ୍ରୀରାମ ରାକ୍ଷସୀ

ଶୂର୍ପଣଖା ପ୍ରଭୃତି ଜନ୍ମାନ୍ତର ହୋଇଥିଲେ ହେଁ ଶ୍ରୀକୃଷ୍ଣ ଅବତାରରେ ତାଙ୍କୁ ହୃଦୟେଶ୍ୱରୀ ରୂପେ ଗ୍ରହଣ କରିଥିଲେ ।

ଶ୍ରୀ ସୂତ ମହର୍ଷି ଶୌନକାଦି ମହର୍ଷିମାନଙ୍କୁ ସମ୍ବୋଧିତ କରି କହିଲେ— "ହେ ମୁନିଗଣ, ଶ୍ରୀରାମ ଭାଇ ଓ ଭାରଯାଙ୍କ ସହିତ ଚିତ୍ରକୂଟରୁ ଚାଲିଯାଇ ଅତ୍ରି ଓ ଅନସୂୟାଙ୍କ ଆଶ୍ରମରେ ପହଞ୍ଚିଲେ । ଅତ୍ରି ଶ୍ରୀରାମଙ୍କୁ ଫଳମୂଳ ଦେଇ ଅଭ୍ୟର୍ଥନା କରିଥିଲେ ଏବଂ ଅନସୂୟା ସତୀ ସୀତାଙ୍କୁ ପତିଧର୍ମ ଓ ନାରୀର କର୍ତ୍ତବ୍ୟ ସମ୍ବନ୍ଧରେ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ତାଙ୍କୁ ଅମଳାନ ବସ୍ତ୍ର ଓ ଆଭୂଷଣ ପ୍ରଦାନ କରିଥିଲେ । ଶ୍ରୀରାମ ସେଠାରେ ସତ୍କୃତ ହୋଇ ବନମାର୍ଗରେ ଆଗେଇ ଚାଲିଲେ । ମାର୍ଗ ମଧ୍ୟରେ ବିରାଧ ରାକ୍ଷସ ଶ୍ରୀରାମ ଲକ୍ଷ୍ମଣଙ୍କୁ କାନ୍ଧରେ ବସାଇ ପଳାଇବାକୁ ଲାଗିଲା । ବିରାଧର ଆଚରଣ ଦେଖି ସୀତା ଦେବୀ କାନ୍ଦି କାନ୍ଦି ଅସମ୍ଭାଳ ହୋଇଗଲେ । ଏହା ଦେଖି ଶ୍ରୀରାମ ହସିଦେଲେ । ସେ ଅସ୍ତ୍ର ବାହାର କରି ବିରାଧର ବାହୁ ଦୁଇଟିକୁ କାଟି ଦେଲେ । ତା'ପରେ ପ୍ରାଣରେ ମାରିଦେଇ ତାଙ୍କୁ ଶାପମୁକ୍ତ କରିଥିଲେ । ସେ ପୂର୍ବଜନ୍ମରେ ତୁମ୍ବୁରୁ ନାମକ ଗନ୍ଧର୍ବ ଥିଲା । କୁବେରଙ୍କ ଅଭିଶାପରେ ସେ ରାକ୍ଷସ ହୋଇ ଯାଇଥିଲା । ସେଠାରୁ ଶ୍ରୀରାମ ଯାଇ ଶରଭଙ୍ଗ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ ।

ଶରଭଙ୍ଗଙ୍କ ଆଶ୍ରମରେ ପୂର୍ବରୁ ଆସି ଦେବରାଜ ଇନ୍ଦ୍ର ଉପସ୍ଥିତ ଥିଲେ । ସେ ଶ୍ରୀରାମଙ୍କୁ ଦେଖିବା ମାତ୍ରେ ସେଠାରୁ ଚାଲି ଯାଇଥିଲେ । ଶରଭଙ୍ଗ ଶ୍ରୀରାମଙ୍କୁ ଅତିଥି ରୂପେ ପାଇ ପରମ ଆନନ୍ଦର ସହିତ ତାଙ୍କୁ ଅଭ୍ୟର୍ଥନା ଜଣାଇଥିଲେ । ସେ ଶ୍ରୀରାମଙ୍କୁ ପୂଜା ଓ ସତ୍କାର କରିବା ପରେ, ଅଗ୍ନିରେ ଝାସ ଦେଇଥିଲେ । ସେଠାରୁ ଶ୍ରୀରାମ ଆଗେଇ ଯାଇ ଦଣ୍ଡକ ବନରେ ପହଞ୍ଚିଲେ ।

ଶ୍ରୀରାମଙ୍କୁ ଦେଖି ସେଠାକାର ମୁନିଋଷିମାନେ ତାଙ୍କୁ ଅଭ୍ୟର୍ଥନା ଜଣାଇବା ସଙ୍ଗେ ସଙ୍ଗେ ରାକ୍ଷସମାନଙ୍କ ଉତ୍ପାତ ସମ୍ବନ୍ଧରେ ଜଣାଇଥିଲେ । ଶ୍ରୀରାମ ମୁନିମାନଙ୍କୁ ଅଭୟ ପ୍ରଦାନ କରି, ରାକ୍ଷସମାନଙ୍କ ମୂଳୋତ୍ପାଟନ କରିବା ନିମିତ୍ତ ପ୍ରତିଜ୍ଞା କରିଥିଲେ । ତା'ପରେ ଶ୍ରୀରାମ ଧର୍ମଭୃତ ନାମକ ଗୋଟିଏ ଋଷିଙ୍କ ଆଶ୍ରମରେ ପହଞ୍ଚି ତାଙ୍କ ଅଭ୍ୟର୍ଥନା ଗ୍ରହଣ କରିଥିଲେ । ଏହିପରି ଭାବରେ ଶ୍ରୀରାମ ଜଣେ ଜଣେ ପ୍ରସିଦ୍ଧ ମୁନିଙ୍କ ଆଶ୍ରମରେ ଦଶ ଦିନେ ଦୁଇଦିନ ବିଶ୍ରାମ ନେଇ ଶେଷରେ ଯାଇ ଅଗସ୍ତିଙ୍କ ଆଶ୍ରମରେ ପହଞ୍ଚିଲେ ।

ମୁନି ଅଗସ୍ତି ଶ୍ରୀରାମଙ୍କ ଆଗମନ ବାର୍ତ୍ତା ପାଇ, ଶିଷ୍ୟମାନଙ୍କ ଗହଣରେ ଆଗେଇ ଯାଇ ଶ୍ରୀରାମଙ୍କୁ ପ୍ରୀତ କରାଇଲେ । ଶ୍ରୀରାମ, ସୀତା ଓ ଲକ୍ଷ୍ମଣଙ୍କ ସହିତ ମୁନିଙ୍କ ପାଦବନ୍ଦନା କରିବା ପରେ ମହର୍ଷି ଅଗସ୍ତି କହିଲେ—"ଶ୍ରୀରାମ, ଆଜି ମୋ'

ତପସ୍ୟାର ଫଳ ମୋତେ ମିଳିଲା । ହେ ରାଘବ, ମୁଁ ଅନେକ ଦିନରୁ ଆପଣଙ୍କ ଦର୍ଶନ ଲାଗି ବ୍ୟାକୁଳ ହେଉଥିଲି ।”

ଶ୍ରୀରାମ ନମ୍ରତାର ସହିତ ଉତ୍ତର ଦେଲେ—“ମୁନିବର, ମୁଁ ମଧ୍ୟ ଆପଣଙ୍କ ଦର୍ଶନ ଲାଗି ଅନେକ ଦିନରୁ ଇଚ୍ଛା କରିଛି । ମୁଁ ଭାବୁଛି—ମୋ’ ବନବାସର ଶେଷଦିନଗୁଡ଼ିକ ମୁଁ ଆପଣଙ୍କ ଶ୍ରୀଚରଣ ତଳେ ବିତାଇ ଦେବି ।”

ଅଗସ୍ତି ଶ୍ରୀରାମଙ୍କୁ ଆଶ୍ୱାସନା ଦେଇ କହିଲେ—“ଶ୍ରୀରାମ, ଏ’ ଆଶ୍ରମ ତୁମର ! ତୁମେ ଏଠାରେ ଆନନ୍ଦରେ ଯେତେଦିନ ଇଚ୍ଛା ସେତେଦିନ ରହିପାର !” ଏହାକହି ମୁନି ଶ୍ରୀରାମଙ୍କୁ ପାଦ୍ୟ, ଅର୍ଘ୍ୟ ଓ ଫଳ ମୂଳ ଦେଇ ସେଠାରେ ରହିବା ଲାଗି ଏକ ସ୍ୱତନ୍ତ୍ର ପର୍ଣ୍ଣକୁଟୀର ଦେଲେ । ତା’ପରେ ସେ ଶ୍ରୀରାମଙ୍କୁ କେତୋଟି ଦିବ୍ୟଅସ୍ତ୍ର ପ୍ରଦାନ କଲେ । ମୁନି ଅଗସ୍ତିଙ୍କଠାରୁ ଦିବ୍ୟାସ୍ତ୍ର ଲାଭ କରି ଶ୍ରୀରାମ କହିଲେ— “ମୁନିବର ! ଆପଣ ମୋତେ ଆପଣଙ୍କ ଆଶ୍ରମର ନିକଟରେ କୌଣସି ଗୋଟିଏ ସ୍ଥାନ ବତାଇ ଦିଅନ୍ତୁ ! ମୁଁ ସେଠାରେ ପର୍ଣ୍ଣକୁଟୀର ନିର୍ମାଣ କରି ସୀତା ଓ ଲକ୍ଷ୍ମଣଙ୍କ ସହିତ ରହିବି । ମୁଁ କ୍ଷତ୍ରିୟ କୁମାର । ଅସୁରମାନଙ୍କ ସହିତ ମୋର ଯୁଦ୍ଧ ହେବ । ସେଥିଲାଗି ଗୋଟିଏ ବିସ୍ତୃତ ସ୍ଥାନ ଆବଶ୍ୟକ । ଏଠାରେ ରହି ଯୁଦ୍ଧ ଆଦି କଲେ, ଆପଣଙ୍କ ଏକାନ୍ତ ବାସ ତଥା ତପସ୍ୟା ଆଦିରେ ବାଧା ଉପୁଜିବ । ତେଣୁ ଆପଣ ମୋତେ ଗୋଟିଏ ସ୍ୱତନ୍ତ୍ର ସ୍ଥାନ ବତାଇ ଦିଅନ୍ତୁ ।”

ଏହାଶୁଣି ଅଗସ୍ତି ହସି ହସି କହିଲେ—“ଶ୍ରୀରାମ, ତୁମର ବିଚାର ବୁଦ୍ଧି ଦେଖି ମୁଁ ଅତ୍ୟନ୍ତ ପ୍ରୀତ ହୋଇଛି । ଏହି ସ୍ଥାନର ଅଦୂରରେ ଗୋଟିଏ ସୁନ୍ଦର ସ୍ଥାନ ରହିଛି । ତୁମେ ସେଠାରେ ରହିପାର ! ସେହି ସ୍ଥାନର ଅତି ନିକଟରେ ରାବଣର ଗୋଟିଏ ଛାଉଣି ରହିଛି । ରାବଣର ଭାଇ ଖର, ଦୂଷଣ ଓ ତ୍ରିଶିରଙ୍କ ସହିତ ସେଠାରେ ଚଉଦ ହଜାର ସୈନ୍ୟ ମଧ୍ୟ ଅଛନ୍ତି । ସେଠାରେ ସେମାନେ ରାବଣର ଭଉଣୀ ସୂର୍ପଣଖାର ସଂରକ୍ଷଣ କରୁଛନ୍ତି ।”

ଶ୍ରୀରାମ ପଚାରିଲେ—“ସେଠାରେ ରାବଣର ଭଉଣୀ ସୂର୍ପଣଖା କାହିଁକି ରହୁଛି ?”

ଏହା ଶୁଣି ଅଗସ୍ତି ପୁଣି ହସି ହସି କହିଲେ—“ରାଘବ ! ମହାମୁନି ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବା, ସୁମାଳୀଙ୍କ ପୁତ୍ରୀ କୈକେସୀ (ନଉକେଶୀ) ସହିତ ବିବାହ କରିଥିଲେ । ସେହି ରାକ୍ଷସୀ ଗର୍ଭରୁ ରାବଣ, କୁମ୍ଭକର୍ଣ୍ଣ, ସୂର୍ପଣଖା ଓ ବିଭୀଷଣ ଜନ୍ମ ଗ୍ରହଣ କରିଥିଲେ । ରାବଣ ନିଜର ବାହୁବଳରେ ଲଙ୍କାପୁରୀରୁ କୁବେରଙ୍କୁ

ବାହାର କରିଦେବା ପରେ ରାକ୍ଷସମାନେ ମିଳିତ ହୋଇ ରାବଣଙ୍କୁ ରାକ୍ଷସ ଅଧିପତି ଭାବରେ ଲଙ୍କାରେ ଅଭିଷିକ୍ତ କରାଇ ଦେଲେ । ରାବଣ ନିଜ ଭଉଣୀ ସୂର୍ପଣଖାର ବିବାହ କାଳକ ଦାନବର ପୁତ୍ର ବିଦ୍ୟୁତ୍ଜିହ୍ୱ ସହିତ କରାଇ ଦେଲା । କିନ୍ତୁ ବିଦ୍ୟୁତ୍ଜିହ୍ୱ କାଳକେୟ ଦାନବ ସହିତ ଯୁଦ୍ଧ କରୁଥିବା ଅବସରରେ ରାବଣ ସହିତ ଶତ୍ରୁତା କଲା । ତହୁଁ ରାବଣ ତାକୁ ମୃତ୍ୟୁଦଣ୍ଡ ଦେଲା । ରାବଣ ଯୁଦ୍ଧପରେ ଲଙ୍କାକୁ ଫେରି ଆସିବା ପରେ, ତା' ଆଗରେ କାନ୍ଦି କାନ୍ଦି ସୂର୍ପଣଖା କହିଲା—"ଭାଇ, ତୁ ମୋତେ ବିଧବା କରାଇ ଦେଲୁ କାହିଁକି ? ମୁଁ ଏବେ କାଳ କାଟିବି କିପରି ?"

ରାବଣ ନିଜର ସାନ ଭଉଣୀଟିକୁ ସ୍ନେହରେ ପାଖରେ ବସାଇ କହିଲା—"ମୁଁ ଯୁଦ୍ଧରେ ଉନ୍ମତ୍ତ ହୋଇ ଯାଇଥିଲି । ସେତେବେଳେ ମୁଁ ହିତାହିତ ଜ୍ଞାନ ହରାଇ ବସିଥିଲି । ତେଣୁ ମୋ ଅଜ୍ଞାତରେ ବିଦ୍ୟୁଜିହ୍ୱ ମୋରି ହାତରେ ପ୍ରାଣ ହରାଇଲା । ବର୍ତ୍ତମାନ ତୁ ସେ କଥା ଭାବି ମୋତେ ଆଉ ଦୁଃଖ ଦେ'ନା । ମୁଁ ତୋତେ ଜନସ୍ଥାନ ଦଣ୍ଡକ ବନରେ ସୁଖ ପୂର୍ବକ ରଖାଇବି ଏବଂ ତୋର ସୁରକ୍ଷା ଲାଗି ଖର, ଦୂଷଣ ଓ ତ୍ରିଶିରଙ୍କୁ ଚଉଦ ହଜାର ସୈନ୍ୟ ସହିତ ସେଠାରେ ରହିବାକୁ ଆଦେଶ ଦେବି । ସେଠାରେ ଗୋଟିଏ ସ୍ୱତନ୍ତ୍ର ରାଜ୍ୟର ଅଧିକାରିଣୀ ଭାବରେ ତୁ ସୁଖରେ ବନବିହାର କରି ରହିବୁ । ସେହିଦିନଠାରୁ ସୂର୍ପଣଖା ସେଠାରେ ରହୁଛି ।"

ଅଗସ୍ତି କିଛି ସମୟ ନୀରବ ରହିବା ପରେ ପୁଣି କହିଲେ —"ରାଘବ, ସେ ସ୍ଥାନରେ ବାସ କରୁଥିବା ମୁନିଋଷିମାନେ ରାକ୍ଷସଙ୍କ ଭୟରେ ଥରହର କମ୍ପୁଛନ୍ତି । ସେଠାରେ ତୁମେ ରହିଲେ, ସେମାନେ ନିର୍ଭୟରେ ରହି ପାରିବେ ଏବଂ ତୁମେ ମଧ୍ୟ ରାକ୍ଷସମାନଙ୍କୁ ବଧ କରିବାର ସୁବର୍ଣ୍ଣ ସୁଯୋଗ ଲାଭ କରିବ । ସେଠାରେ ଗୋଦାବରୀ ନଦୀ ପ୍ରବାହିତ ହେଉଛି ଏବଂ ସେଠାରେ ଏକାଠିଥିବା ପାଞ୍ଚଗୋଟି ବଟବୃକ୍ଷ ଯୋଗୁଁ ସେ ସ୍ଥାନର ନାମ ପଞ୍ଚବଟୀ ହୋଇଛି । ସେ ସ୍ଥାନଟି ମଧ୍ୟ ଅତ୍ୟନ୍ତ ରମଣୀୟ ତଥା ତା'ର ଭୂମି ମଧ୍ୟ ଅତ୍ୟନ୍ତ ଉର୍ବର । ତୁମେ ସେହିଠାରେ କିଛିଦିନ ବିଶ୍ରାମ କର ।"

ଶ୍ରୀରାମ ପଞ୍ଚବଟୀରେ କୁଟୀର ନିର୍ମାଣ କରି ରହିଲେ । ସେଠାରେ ରହୁଥିବା ଗୃଧ୍ରପକ୍ଷୀ ଜଟାୟୁ ସହିତ ତାଙ୍କର ପରିଚୟ ହୋଇଗଲା । ଜଟାୟୁ ଦଶରଥଙ୍କ ମିତ୍ର ଥିବାରୁ, ଶ୍ରୀରାମ ତାକୁ ନିଜର ପିତୃତୁଲ୍ୟ ମନେ କରି ସମ୍ମାନ ପ୍ରଦର୍ଶନ କଲେ । ସେ ମଧ୍ୟ ଆନନ୍ଦରେ ବିହ୍ୱଳ ହୋଇ ଯାଇ କହିଲା—"ମୁଁ ଏହିଠାରେ ରହି ସୀତାଙ୍କୁ ରକ୍ଷା କରିବି ।"

ଲକ୍ଷ୍ମଣଙ୍କ ଚେଷ୍ଟାରେ ସେଠାରେ ଦୁଇଟି ପର୍ଣ୍ଣକୁଟୀର ନିର୍ମିତ ହୋଇଗଲା । ସୀତା ଓ ଲକ୍ଷ୍ମଣ ମିଶି କୁଟୀର ଦୁଇଟିକୁ ସୁନ୍ଦର ଭାବରେ ସଜାଇ ଦେଲେ । ଲକ୍ଷ୍ମଣ

ବିଭିନ୍ନ ଫୁଲଗଛ ଆଣି କୁଟୀରର ଚାରିପାଖରେ ଲଗାଇ ଦେଲେ । ଏହିପରି ଭାବରେ ସେ ସ୍ଥାନର ରମଣୀୟତା ବହୁ ଗୁଣରେ ବୃଦ୍ଧି ପାଇବାକୁ ଲାଗିଲା ।

ସୂତ ମହର୍ଷି କହିଲେ—"ହେ ମୁନିଗଣ, ମନ ପରିବର୍ତ୍ତନ କରିବା ଲାଗି ଏକାନ୍ତ ବାସଠାରୁ ଅଧିକ ଉପଯୋଗୀ ଆଉ କିଛି ନାହିଁ । ଏକାନ୍ତ ବାସ ସମୟରେ ଲୋକେ ପ୍ରକୃତିର ମିତ ହୋଇ ଯାଆନ୍ତି । ସେମାନେ ବୃକ୍ଷ ଓ ଲତାଙ୍କ ସହିତ ମୈତ୍ରୀ ସମ୍ପର୍କ ସ୍ଥାପନ କରି ସୁଖ ଅନୁଭବ କରନ୍ତି । ହେ ଶୌନକ, ପ୍ରକୃତିର ବରଦାନ ବୃକ୍ଷଲତାଙ୍କ ସହିତ ଥରେ ଆତ୍ମୀୟତା ଆସିଗଲେ, ମନୁଷ୍ୟ ସାଂସାରିକ ସୁଖ ସୁବିଧା ତଥା ଧାରିବାରିକ ସ୍ୱାଚ୍ଛନ୍ଦ୍ୟକୁ ସହଜରେ ପାଶୋରି ପକାଏ ।"

"ଲକ୍ଷ୍ମଣ ପଞ୍ଚବଟୀ ପରି ଏକ ସୁରମ୍ୟ ସ୍ଥାନ ପାଇ, ଅଯୋଧ୍ୟାର ସୁଖ ସୁବିଧାକୁ ସମ୍ପୂର୍ଣ୍ଣ ପାଶୋରି ଦେଇ, ସୀତାରାମଙ୍କ ସେବା ଓ ପ୍ରାକୃତିକ ସୌନ୍ଦର୍ଯ୍ୟର ଉପଭୋଗରେ ମାତିଗଲେ । ଲକ୍ଷ୍ମଣ ସେହି ପ୍ରାକୃତିକ ପରିବେଶଟିକୁ ଆହୁରି ରମଣୀୟ କରିବା ଲାଗି ନିଜେ ପ୍ରାତଃକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ପରିଶ୍ରମ କରିବାକୁ ଲାଗିଲେ । ତା'ଫଳରେ ପଞ୍ଚବଟୀର ସୁଷମା ବହୁଗୁଣରେ ବୃଦ୍ଧି ପାଇବାକୁ ଲାଗିଲା ।"

"ସୀତା ଶ୍ରୀରାମଙ୍କ ସହିତ ସେହି ସୁରମ୍ୟ କାନନରେ ବିହାର କରି ପରମ ସୁଖ ଅନୁଭବ କଲେ । ସୀତାଦେବୀ ଆହୁରି ମଧ୍ୟ ସେଠାରେ ବନର ପଶୁପକ୍ଷୀଙ୍କ ସହିତ ସ୍ନେହ ସମ୍ପର୍କ ସ୍ଥାପନ କରିଦେଲେ । ସେ ବନର ହରିଣୀମାନଙ୍କ ସହିତ ଖେଳ ବୁଲି ଅଯୋଧ୍ୟାର ରାଜସୁଖକୁ ଏକାବେଳକେ ପାଶୋରି ପକାଇଲେ । ବେଳେ ବେଳେ ଜାନକୀ ଶ୍ରୀରାମଙ୍କ ସହିତ ହାସ୍ୟବିନୋଦ କରି ବନବାଟିକାରେ ପରିଭ୍ରମଣ କରିବାକୁ ଲାଗିଲେ । ଏହିପରି ଭାବରେ ସୀତା, ରାମ ଓ ଲକ୍ଷ୍ମଣ ପଞ୍ଚବଟୀରେ ବେଶ୍ ଆନନ୍ଦରେ ରହିବାକୁ ଲାଗିଲେ ।"

ଦିନକର ଘଟଣା—ସୀତା ଶ୍ରୀରାମଙ୍କ ପାଖରେ ପ୍ରମୁଦିତା ହୋଇ ବସିଥିଲେ । ଲକ୍ଷ୍ମଣ ପୁଷ୍ପବାଟିକାର ସଂରକ୍ଷଣରେ ଲାଗି ପଡ଼ିଥିଲେ । ଲକ୍ଷ୍ମଣ ଅକଥନୀୟ ପରିଶ୍ରମ କରି ପୁଷ୍ପବାଟିକାଟିକୁ ସୁରମ୍ୟ କରିବାରେ ଆଦୌ ତ୍ରୁଟି କରୁନଥିଲେ । ତାଙ୍କର ଏକମାତ୍ର ଧ୍ୟେୟ ଥିଲା—ଭାଇ ଭାଉଜଙ୍କୁ ଖୁସି କରାଇବା । ତେଣୁ ସେ ଆତ୍ମହରା ହୋଇ ପଞ୍ଚବଟୀର ସୁରମ୍ୟ ସ୍ଥାନଟିକୁ ଆହୁରି ମଞ୍ଜୁ-ମଞ୍ଜୁଳ କରିବାରେ ଲାଗି ପଡ଼ୁଥିଲେ ।

ସେତିକିବେଳେ ରାବଣର ବିଧବା ଭଉଣୀ ନବଯୌବନା ତଥା ସ୍ୱେଚ୍ଛା-ଚାରିଣୀ ଶୂର୍ପଣଖା ବନଭ୍ରମଣରେ ଆସି ସେହିଠାରେ ପହଞ୍ଚିଗଲା । ସେ ନୂତନ ଆଶ୍ରମ

ଓ ତା'ର ମଞ୍ଜୁଳ ପରିବେଶକୁ ଲକ୍ଷ୍ୟ କରି ଅତ୍ୟନ୍ତ କୌତୂହଳୀ ହୋଇ ଉଠିଲା । ତେଣୁ ସେ ସେଠାକାର ସୌନ୍ଦର୍ଯ୍ୟ ଅବଲୋକନ କରିବା ନିମିତ୍ତ ଆଶ୍ରମ ଆଡ଼କୁ ଆଗେଇ ଆସିଲା ।

ଠିକ୍ ସେହି ସମୟରେ ପୁଷ୍ପବାଟିକାରେ ଶ୍ରୀରାମ ଓ ଜାନକୀ ମଧ୍ୟବର୍ତ୍ତୀ ମଣ୍ଡପରେ ବସିଥିଲେ । ସୀତାଦେବୀ ପ୍ରାଣପ୍ରିୟ ଶ୍ରୀରାମଙ୍କ ଆଲିଙ୍ଗନ ପାଶରେ ବନ୍ଧି ଅତ୍ୟନ୍ତ ପୁଲକିତା ହୋଇ ଉଠିଥିଲେ । ଶ୍ରୀରାମ ମଧ୍ୟ ପ୍ରାଣପ୍ରିୟାଙ୍କ ସୁଖଦ ସ୍ପର୍ଶରେ ଆତ୍ମବିଭୋର ହୋଇ ଉଠିଥିଲେ । ପ୍ରଣୟୀ ଓ ପ୍ରଣୟିନୀ ପ୍ରକୃତିର ମନୋରମ କୋଳରେ ବସି ପରସ୍ପରର ସୁଖଦ ସ୍ପର୍ଶରେ ଆତ୍ମହରା ହୋଇ ଉଠିଥିଲେ । ଠିକ୍ ସେତିକିବେଳେ ଶ୍ରୀରାମଙ୍କ ଜଗମୋହନ ସୌନ୍ଦର୍ଯ୍ୟ ରାକ୍ଷସୀ ସୂର୍ପଣଖାର ଦୃଷ୍ଟିଗୋଚର ହେଲା । କାମଗ୍ରସ୍ତଣୀ ସୂର୍ପଣଖା ଶ୍ରୀରାମଙ୍କ ତ୍ରୈଲୋକ୍ୟମୋହନ ରୂପଜାଲରେ ବନ୍ଦିନୀ ହୋଇଗଲା । ସେ କାନନର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଏକାବେଳକେ ପାଶୋରି ପକାଇ ମଞ୍ଜୁଳତାର ସାକାର ପ୍ରତିମା ଶ୍ରୀରାମଙ୍କୁ ଏକଲୟରେ ଚାହିଁ ରହିଲା ।

ରାକ୍ଷସୀ ଜନକନନ୍ଦିନୀଙ୍କ ସୌଭାଗ୍ୟକୁ ଦେଖି ମନେ ମନେ ଈର୍ଷାରେ ଜଳିଗଲା । ସେ ମନେ ମନେ ଭାବିଲା—"ଏହି ଅନବଦ୍ୟ ସୌନ୍ଦର୍ଯ୍ୟକୁ ଜଣେ ମାନବୀ ଭୋଗ କରୁଛି । ଏହାପରି ସୁକୁମାରୀକୁ ମୁଁ ଦାନ୍ତରେ ଚୋବାଇ ଶେଷ କରିଦେବି । ହାୟ·· ଏପରି ସୁନ୍ଦର ପୁରୁଷ ଯଦି ମୋତେ ବାହୁ ପାଶରେ ଛନ୍ଦି ଆଲିଙ୍ଗନ କରିବ, ତେବେ ମୋର ଜୀବନ ଧନ୍ୟ ହୋଇଯିବ ।"

ଏହା ଚିନ୍ତା କରି ସୂର୍ପଣଖା ଅପୂର୍ବ ରୂପ ଧାରଣ କରି ଶ୍ରୀରାମଙ୍କ ଆଗକୁ ଯିବାଲାଗି ଚିନ୍ତା କଲା ।

ମୁନିମାନଙ୍କ ଆଗରେ ସୂତ ମହର୍ଷି କହିଲେ—"ହେ ମୁନିଗଣ, ଏହାରି ନାମ ହେଉଛି—ଭାଗ୍ୟ ! କାମ ଭୋଳରେ ଭାସିଯାଇ ରାକ୍ଷସୀ ପରମ-ପୁରୁଷ ଶ୍ରୀରାମଙ୍କୁ ଭଜିବାକୁ ଲାଗିଲା । ହେ ମୁନିବର, ନ ଜାଣି ନଶୁଣି ଯଦି କେହି ଅଗ୍ନିକୁ ଅଣ୍ଟିରେ ପୁରାଇ ଦେବ, ତେବେ ସେ କ'ଣ ରକ୍ଷା ପାଇପାରିବ ? ନିଶ୍ଚୟ ସେ ଅଗ୍ନିରେ ଜଳିପୋଡ଼ି ଧ୍ୱଂସ ହୋଇଯିବ ନାହିଁକି ?"

ସେହି ଅପୂର୍ବ ସୁନ୍ଦର ରୂପରେ ସୁସଜ୍ଜିତା ହୋଇ ଶ୍ରୀରାମଙ୍କ ଆଗରେ ଉଭା ହେବା ଲାଗି ମନରେ ପାଞ୍ଚିଲା । ସେ କ୍ଷଣକେ ମଧ୍ୟରେ ମାୟା ବଳରେ ଦିବ୍ୟ ଭୂଷଣ ଧାରଣ କରି ଶ୍ରୀରାମଙ୍କ ଆଗରେ ଉଭା ହୋଇଗଲା ।

ଅପୂର୍ବ ସୂର୍ପଣଖାର ମନମୋହିନୀ ବେଶ ଦେଖି ସୀତା ଚମକ୍ରିତା ହୋଇ ଶ୍ରୀରାମଙ୍କ ପାଖରୁ ଘୁଞ୍ଚିଯାଇ ବସିଲେ ଏବଂ ଏକଲୟରେ ସେହି କାମରୂପିଣୀ ଆଡ଼କୁ ଚାହିଁ ରହିଲେ ।

ସୂର୍ପଣଖା କିଛି ଦୂରରେ ଛିଡ଼ା ହୋଇ ଶ୍ରୀରାମଙ୍କ ଆଡ଼କୁ କଟାକ୍ଷପାତ କରି କହିଲା—"ମହାଶୟ, ଆପଣ ତ କୌଣସି ରାଜକୁମାର ପରି ଦିଶୁଛନ୍ତି !"

ଶ୍ରୀରାମ ରାକ୍ଷସୀର କାମରୂପିଣୀ ରୂପ ଦେଖି ମନେ ମନେ ହସି କହିଲେ— ଦେବୀ, ତୁମ ଅନୁମାନ ଅସତ୍ୟ ନୁହେଁ । ମୁଁ ଅଯୋଧ୍ୟାର ଚକ୍ରବର୍ତ୍ତୀ ଦଶରଥଙ୍କ ଜ୍ୟେଷ୍ଠପୁତ୍ର । ମୋ ନାମ ଶ୍ରୀରାମ ଚନ୍ଦ୍ର ।"

ସୂର୍ପଣଖା ମୁହଁ ମୋଡ଼ି ସୀତାଙ୍କ ଆଡ଼କୁ ବକ୍ରିତ ଦୃଷ୍ଟିରେ ଚାହିଁ କହିଲା— "ତୁମ ପାଖରେ ଏଭଳି କୁରୂପା ସ୍ତ୍ରୀଟିଏ କିଏ ବସିଛି ? ତୁମେ ଏଡ଼େବଡ଼ ରାଜ୍ୟର ରାଜକୁମାର, ତୁମକୁ ଗୋଟିଏ ସୁନ୍ଦରୀ ସ୍ତ୍ରୀ ମିଳିଲା ନାହିଁ ?"

ଶ୍ରୀରାମ ଅପୂରୁଣୀର ମନୋଭାବ ବେଶ୍ ବୁଝି ପାରିଲେ । କାମରୂପିଣୀ ସୀତାଙ୍କ ସୌନ୍ଦର୍ଯ୍ୟରେ ମନେ ମନେ ଲଜ୍ଜିତା ହୋଇ ଏପରି ଈର୍ଷାପୂର୍ଣ୍ଣ ବଚନ କହୁଛି ବୋଲି ତାଙ୍କର ବେଶ୍ ଧାରଣା ହୋଇଗଲା । ସେତେବେଳକୁ ସୀତାଙ୍କ ମୁଖମଣ୍ଡଳ କ୍ରୋଧରେ ଲାଲ ପଡ଼ି ଯାଇଥିଲା । ଶ୍ରୀରାମଚନ୍ଦ୍ର ସେ ବହୁରୂପିଣୀ ନାରୀ ସହିତ କଥାବାର୍ତ୍ତା କରନ୍ତୁ ବୋଲି ସେ ଆଦୌ ଚାହୁଁ ନଥିଲେ । କିନ୍ତୁ ଶ୍ରୀରାମ ସୀତାଙ୍କର ମନୋଭାବ ବେଶ୍ ଜାଣିଥିଲେ ହେଁ ହସି ହସି କହିଲେ—"ଦେବି, ସବୁକିଛି ଭାଗ୍ୟର ଖେଳ । ସୁନ୍ଦରୀ ସ୍ତ୍ରୀ, ଆଜ୍ଞାକାରୀ ସେବକ ଏବଂ ମନଲାଖି ଦ୍ରବ୍ୟ ସବୁ କିଛି ସୌଭାଗ୍ୟ ନଥିଲେ ମିଳେ ନାହିଁ ।"

ସୂର୍ପଣଖା କହିଲା—"ନାଃ ··ମୁଁ ଏସବୁ ବିଶ୍ୱାସ କରେ ନାହିଁ । ମନୁଷ୍ୟ ନିଜ ଭାଗ୍ୟକୁ ନିଜେ ନିର୍ମାଣ କରିଥାଏ । ତୁମପରି ସୁନ୍ଦର ପୁରୁଷର ପତ୍ନୀ ହେବାଲାଗି ଏ ନାରୀ ଆଦୌ ଯୋଗ୍ୟା ନୁହେଁ । ତୁମେ ମୋ ପରି ସୁନ୍ଦରୀର ପ୍ରେମିକ ହେବା ଉଚିତ । ପ୍ରକୃତରେ ମୁଁ କ'ଣ ଏହି ନାରୀ ଅପେକ୍ଷା ଅଧିକ ସୁନ୍ଦରୀ ନୁହେଁ କି ?"

ଶ୍ରୀରାମ ମନେ ମନେ କ୍ରୁଦ୍ଧ ହୋଇଥିଲେ ହେଁ ଉପରକୁ ହସି ଦେଇ କହିଲେ—"ଆଉ ଏବେ କ'ଣ କରାଯାଇ ପାରିବ ? ହଁ, ତୁମେ ଅବଶ୍ୟ ଖୁବ୍ ସୁନ୍ଦରୀ । କିନ୍ତୁ ମୁଁ ଥରେ ଯାହାର ହାତ ଧରିଛି, ତାକୁ ଏଡ଼େ ସହଜରେ ଛାଡ଼ି ପାରିବି କିପରି ? ମନେକର, ତୁମ ସ୍ୱାମୀ ଅଯୋଗ୍ୟ ବା ଅକର୍ମା ହୋଇଗଲେ, ତୁମେ କ'ଣ ତାଙ୍କୁ ଏତେ ସହଜରେ ଛାଡ଼ି ଦେଇ ପାରିବ ?"

ଶ୍ରୀରାମଙ୍କ ଉତ୍ତର ଶୁଣି ହସି ହସି ସୂର୍ପଣଖା କହିଲା—"ହଁ, ତୁମେ ସତ କହୁଛ ଯେ, କିନ୍ତୁ ପ୍ରେମ ନିକଟରେ ସେପରି କିଛି ଧରାବନ୍ଧା ନିୟମ ରହିପାରେ ନାହିଁ । ଯାହାକୁ ଯିଏ ଭଲ ପାଇଲା, ତା' ସହିତ ପ୍ରେମ ସମ୍ପର୍କ ରଖିବାରେ ମୋର ଆପତ୍ତି ନାହିଁ । ତୁମ ପରି ସୁନ୍ଦର ପୁରୁଷଙ୍କ ପାଖରେ ମୋ'ପରି ସୁନ୍ଦରୀ ରହିଲେ କେଡ଼େ ଆନନ୍ଦଦାୟକ ହେବ କହିଲ ? କ'ଣ ମୁଁ ସତ କହୁନାହିଁ ?"

"ତୁମେ ଯେତେବେଳେ ନିଜର ସୌନ୍ଦର୍ଯ୍ୟ ବିଷୟରେ ନିଜ ମୁହଁରେ ବଖାଣି ଚାଲିଛ, ସେଥିରେ ତୁମକୁ ଅସୁନ୍ଦରୀ ବୋଲି କହିବାକୁ ସାହସ କରିବ କିଏ ? କିନ୍ତୁ ମୁଁ କ'ଣ କରିବ ? ମୁଁ ଉପାୟ ହୀନ । ମୁଁ ଗୋଟିଏ ନିୟମ କରିଛି— ଗୋଟିଏ ପତ୍ନୀ ବ୍ୟତୀତ ଅନ୍ୟ ପ୍ରତି ଆସକ୍ତ ହେବ ନାହିଁ ।"

ସୂର୍ପଣଖା ଶ୍ରୀରାମଙ୍କ କଥା ଶୁଣି ହସି ହସି କହିଲା—"ଆରେ, ତୁମେ କେଡ଼େ ପ୍ରାଚୀନ ପନ୍ଥୀ କହିଲ ? ମୁଁ ତ ତୁମକୁ ପ୍ରଥମରୁ କହିଛି, ପ୍ରେମ ଆଗରେ ନିୟମ କିଛି ନୁହେଁ । ଏସବୁ ନିୟମ ବ୍ରାହ୍ମଣମାନେ ପେଟ ପାଳିବା ପାଇଁ ତିଆରି କରିଛନ୍ତି । ଏଡ଼େ ସୁନ୍ଦର ଓ ସୁଠାମ ଯୁବକ ହୋଇ ତୁମେ ସେହି ପୁରୁଣା କାଳର ନିୟମକୁ ଜାବୋଡ଼ି ଧରିଛ । ଆନନ୍ଦରେ ଖାଇ, ପିଇ, ସୁନ୍ଦରୀ ସ୍ତ୍ରୀ ଉପଭୋଗ କରିବା ହେଉଛି ଜୀବନର ପ୍ରକୃତ ଆନନ୍ଦ । କଥାରେ ଅଛି—ନୂଆ ପାଇଲେ ପୁରୁଣାକୁ ପଚାରେ କିଏ ? ହଁ... ତୁମର ଏ ସ୍ତ୍ରୀ ଯୁବତୀ ବେଳେ ଠିକିଏ ସୁନ୍ଦରୀ ଥିବ; କିନ୍ତୁ ଏବେ ତ ବୁଢ଼ୀ ହୋଇ ଗଲାଣି । ସ୍ତ୍ରୀ'ଠାରେ ତୁମେ କି ସୁଖ ପାଉଥିବ ଯେ ? ତାକୁ ଛାଡ଼ି ଦେଇ ତୁମେ ମୋ ସହିତ ସୁଖରେ ବିହାର କରି ଜୀବନକୁ ସୁଖମୟ କର; ତୁମକୁ ମୋର ଏତିକି ଉପଦେଶ !"

ଶ୍ରୀରାମ ସୂର୍ପଣଖାର ସାହସ ଦେଖି ମନେ ମନେ କ୍ରୁଦ୍ଧ ହୋଇଗଲେ । ସେ ପ୍ରଥମେ ସୂର୍ପଣଖାକୁ କଟୁ ବଚନ କହିବାକୁ ଇଚ୍ଛା କଲେ ନାହିଁ । ତେଣୁ ସେ ମୁଖମଣ୍ଡଳରେ କୁଟିଳ ହାସ୍ୟରେଖା ଫୁଟାଇ କହିଲେ—"ହେ ଚନ୍ଦ୍ରବଦନୀ, ମୋ' ଭାଗ୍ୟରେ ବୁଢ଼ୀ ମିଳିଥାଉ କିମ୍ବା କୁରୂପା ମିଳିଥାଉ, ସେ ମୋର ପତ୍ନୀ । ତାହାର ସହିତ ମୁଁ ଏତେ ଦିନ ଘରସଂସାର କରି ଆସିଲିଣି, ଆଉ ମଧ୍ୟ ଅବଶିଷ୍ଟ ଜୀବନ ତାକୁଇ ନେଇ କଟାଇ ଦେବି । ତେଣୁ ତୁମର ଏ ବଳବତୀ ଇଚ୍ଛାକୁ ମୁଁ ପୂରଣ କରି ପାରିବି ନାହିଁ । ହଁ... ତୁମେ ଗୋଟିଏ ଉପାୟ କରିପାର । ମୋ ସାନଭାଇ ସେଇ କୁଡ଼ିଆରେ ରହୁଛି । ସେ ଦେଖିବାକୁ ଖୁବ୍ ସୁନ୍ଦର । ତା'ର ସ୍ତ୍ରୀ ନାହିଁ । ସେ ଏକୁଟିଆ ଏ ବନରେ ରହି କଷ୍ଟରେ ଦିନ ବିତାଉଛି । ତୁମେ ତା' ପାଖକୁ ଯାଅ । ସେ ଯଦି ତୁମ ପାଲରେ ପଡ଼ି ଯାଇପାରେ, ତେବେ ତା'ର ଅଭାବ ଦୂର ହେବ ଏବଂ ତୁମ ମନର କାମନାବାସନା ମଧ୍ୟ ପୂରଣ ହୋଇ ପାରିବ ।"

ରାକ୍ଷସୀ ଶ୍ରୀରାମଙ୍କ କଥା ଶୁଣି ମନେ ମନେ ଆନନ୍ଦିତା ହୋଇ ଉଠିଲା । ତେଣୁ ସେ ଶ୍ରୀରାମଙ୍କ ପାଖରୁ ଯାଇ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚିଗଲା । ସେ ଚାଲିଯିବା ପରେ ଜାନକୀ ଛଳ-କୋପ କରି କହିଲେ—"ତୁମେ ତ ବେଶ୍ ଲୋକ ! ତୁମେ ତାକୁ ଲକ୍ଷ୍ମଣଙ୍କ ପାଖକୁ ପଠାଇ ଦେଲ କାହିଁକି ? ଲକ୍ଷ୍ମଣ ଜାଣିଲେ ତୁମକୁ କ'ଣ ଭାବିବେ ? ଯେଉଁଲା ସ୍ତ୍ରୀକୁ କ'ଣ କେହି ବିବାହ କରିପାରେ ? ଯିଏ ନିଜ ମୁହଁରେ ନିଜର ପ୍ରଶଂସା ଗାଇ ହେଉଛି ଏବଂ ମୁହଁରୁ ଲଜ୍ଜା ଛାଡ଼ିଦେଇ ମୁହଁ ଖୋଲି ଅଲଜୁକ କଥାଗୁଡ଼ାକ କହି ଯାଉଛି, ସେ କ'ଣ ଗୋଟାଏ କୁଳଶୀଳା ନାରୀ ବୋଲି ତୁମେ ଭାବୁଛ ? ଯଦିବା ସେ ସେପରି ଲଜ୍ଜାହୀନା ହୋଇ କହିଲା, ତୁମେ କେମିତି ତାକୁ ଜାଣିଶୁଣି ନିଜ ସାନ ଭାଇ ପାଖକୁ ପଠାଇ ଦେଲ ଯେ ?"

ଶ୍ରୀରାମ କହିଲେ—"ଓଃ ··ତୁମେ ତ ବେଶ୍ ଯୁକ୍ତି କରୁଛ ! ମୁଁ ଦେଖୁଛି, ଗୋଟେ ସ୍ତ୍ରୀ ଆଉ ଗୋଟିଏ ସ୍ତ୍ରୀର ଶିରୀ ଦେଖି ପାରେ ନାହିଁ । ସେ ଚାହୁଁଛି କୌଣସି ଜଣେ ସୁନ୍ଦର ପୁରୁଷକୁ ବିବାହ କରି ତା' ସହିତ ଘରସଂସାର କରିବ । ଲକ୍ଷ୍ମଣ ଏଠାରେ ଏକୁଟିଆ ରହୁଛି । ସେ ଯଦି ଏ ସୁନ୍ଦରୀଟିକୁ ସ୍ତ୍ରୀ ରୂପରେ ରଖିବା ଲାଗି ରାଜି ହୋଇଯିବ, ତେବେ ମୁଁ ମନା କରିବି ନାହିଁ । ବରଂ ତୁମେ ଦୁଇ ଜାଆ ସୁଖରେ ରହି ବନବାସ ଦୁଃଖକୁ ସହଜରେ ଭୁଲିଯାଇ ପାରିବ ! ଏଥିରେ ତୁମର ଈର୍ଷା କରିବାର କ'ଣ ଅଛି ?"

ସୀତା ମନେ ମନେ ଲଜ୍ଜିତା ହୋଇ କହିଲେ—"ମୁଁ କ'ଣ ତୁମକୁ କଥାରେ ପାରିବି ନା କ'ଣ ? ହେଉ, ଛାଡ଼ ସେ କଥା···।" ଏହା କହି ଜାନକୀ ସୂର୍ପଣଖା ଓ ଲକ୍ଷ୍ମଣଙ୍କ କଥୋପକଥନକୁ କାନ ଡେରି ରହିଲେ ।

ଲକ୍ଷ୍ମଣ ପୁଷ୍ପବାଟିକା ମଧ୍ୟରେ ଗୋଟିଏ ବଡ଼ ଗାତ ଖୋଳିବାରେ ମନ ଦେଇଥିଲେ । ସେତିକିବେଳେ କାମଚାରିଣୀ ସୂର୍ପଣଖା ସୌନ୍ଦର୍ଯ୍ୟର ଜାଲ ବିଛାଇ ଦେଇ ଲକ୍ଷ୍ମଣଙ୍କ ଆଗରେ ପହଞ୍ଚିଯାଇ କହିଲା—"ତୁମେ କ'ଣ ଶ୍ରୀରାମଙ୍କ ଭାଇ କି?"

ଲକ୍ଷ୍ମଣ କାର୍ଯ୍ୟ ବନ୍ଦ କରିଦେଇ ଆଶ୍ଚର୍ଯ୍ୟ ହୋଇ ସୂର୍ପଣଖା ଆଡ଼କୁ ଚାହିଁ ରହିଲେ । ସେ ବେଶ୍ ବୁଝି ପାରିଲେ ସୁନ୍ଦର ବେଶଭୂଷଣରେ ସଜ୍ଜିତା ହୋଇ ଛିଡ଼ା ହୋଇଥିବା ନାରୀଟି ନିଶ୍ଚୟ କାମଚାରିଣୀ ରାକ୍ଷସୀ । ସେ ମାୟାବଳରେ ଏପରି ବେଶରେ ସଜ୍ଜିତା ହୋଇଛି । ତେଣୁ ସେ ତାକୁ ନିଜର ଅନିଚ୍ଛା ସତ୍ତ୍ୱେ ଉତ୍ତର ଦେଲେ—"ହଁ···ମୋ' ନାଆଁ ଲକ୍ଷ୍ମଣ । କୁହ, କ'ଣ ତୁମେ ଚାହୁଁଛ ?"

ରାକ୍ଷସୀ କାମବାସନାରେ ଏତେ ପ୍ରବଳା ହୋଇ ଯାଇଥିଲା ଯେ, ଲକ୍ଷ୍ମଣଙ୍କ ବିରକ୍ତିମିଶା କଣ୍ଠସ୍ୱର ତାକୁ ସୁମଧୁର ବାଣୀ ପରି ବୋଧ ହେଲା । ସେ ନିଜର

ରକ୍ତିମ ଅଧରରେ ହାସ୍ୟର ଅପୂର୍ବ ଛଟା ଖେଳାଇ ଦେଇ କହିଲା—"ଦେଖ, ତୁମ ଭାଇ ଶ୍ରୀରାମ ମୋତେ ଏଠାକୁ ପଠାଇଲେ । ତାଙ୍କର ଖୁବ୍ ଇଚ୍ଛା, ତୁମେ ମୋ' ସହିତ ବିବାହ କରି ସୁଖରେ ବନବିହାର କର ! ତୁମର ଏ ଦୁଃଖପୂର୍ଣ୍ଣ ଜୀବନ ଦେଖି ମୋ' ମନ କରୁଣାରେ ବିଗଳିତ ହୋଇ ଯାଉଛି । ତୁମ ପରି ସୁନ୍ଦର ଯୁବକ କ'ଣ ମାଟି ଖୋଳି ସମସ୍ତ ଅତିବାହିତ କରେ ? ଆଉ ମଧ୍ୟ ତୁମେ ନିଜେ ବିଚାର କର, ରାମଙ୍କ ପାଖରେ ତାଙ୍କ ସ୍ତ୍ରୀ ଅଛି । ସେ ଦୁହେଁ କେତେ ଆନନ୍ଦରେ କାଳ ବିତାଉଛନ୍ତି । ଆଉ ତୁମ ଭାଗ୍ୟରେ ଅଛି କେବଳ ମାଟି ଖୋଳିବା ! ହଁ···ଆଉ ଗୋଟିଏ କଥା – ପୁରୁଷ ଚାହେଁ କ'ଣ ? ଗୋଟିଏ ସୁନ୍ଦରୀ ସ୍ତ୍ରୀ । ସେ ସ୍ତ୍ରୀକୁ ଖୁସି କରିବା ପାଇଁ ଅସାଧ୍ୟ ସାଧନ କରେ; ଅନେକ ଦୁଷ୍କର କାର୍ଯ୍ୟ କରେ । ସ୍ତ୍ରୀ ପ୍ରତିବଦଳରେ ତା' ସ୍ୱାମୀକୁ ଦେଇଥାଏ —ସ୍ନେହ, ପ୍ରେମ, ଆଲିଙ୍ଗନ, ସେବା ଓ ଶୁଶ୍ରୂଷା । ପତି ଓ ପତ୍ନୀ ଦୁହେଁ ପରସ୍ପରର ପରିପୂରକ ହୋଇ ମନବିନୋଦରେ କାଳ କଟାଇ ନିଅନ୍ତି । କିନ୍ତୁ ମୁଁ ଦେଖୁଛି— ତୁମେ ଅନ୍ୟର ସ୍ତ୍ରୀକୁ ଖୁସି କରିବା ପାଇଁ ଏହି କଠିନ କାମରେ ଲାଗିପଡ଼ିଛ ! ସେ ନାରୀ ଶ୍ରୀରାମଙ୍କୁ ସୁଖ ଦେଇ, ତୁମ ଉପରେ ଶାସନ କରି ଚାଲିଛି । କିନ୍ତୁ ଦେଖ, ତୁମ ଭାଇ ଶ୍ରୀରାମ ଖୁବ୍ ଭଲ ଲୋକ । ସେ ତୁମ ମନର ଅଭାବକୁ ବେଶ୍ ହୃଦୟଙ୍ଗମ କରି ପାରିଛନ୍ତି । ତେଣୁ ସେ ଚାହାନ୍ତି, ତାଙ୍କ ପରି ତୁମେ ମଧ୍ୟ ଗୋଟିଏ ସୁନ୍ଦରୀ ସ୍ତ୍ରୀର ସେବା ଗ୍ରହଣ କର । ଆଉ ଦେଖ, ମୁଁ ମଧ୍ୟ ତୁମକୁ କହି ଦେଉଛି—ମୋ' ପାଖରେ ଐଶ୍ୱର୍ଯ୍ୟର ଅଭାବ ନାହିଁ । ମୋ' ସହିତ ତୁମର ବିବାହ ହୋଇଗଲେ, ମୁଁ ତୁମକୁ ନେଇ ସୁନ୍ଦର, ଅତି ମନୋହର ବନରେ ବିହାର କରିବି । ଯାନ, ବାହନ, ଦାସ, ଦାସୀ ମୋ' ପାଖରେ ଅଭାବ ନାହିଁ । ତୁମର ସୌଭାଗ୍ୟ ଦେଖି ତୁମ ଭାଉଜ ମନେ ମନେ ଜଳିଯିବ । ତୁମେ ଯଦି ଚାହିଁବ, ମୁଁ ତୁମ ଭାଉଜକୁ ତୁମର ଦାସୀପଣେ ଖଟାଇ ପାରିବି !"

ଲକ୍ଷ୍ମଣ ବେଶ୍ ବୁଝି ପାରିଲେ ଯେ, ଭାଇ ତାଙ୍କ ସହିତ ପରିହାସ ଛଳରେ ଏହି କାମଚାରିଣୀକୁ ପଠାଇଛନ୍ତି । ତା' ବ୍ୟତୀତ ସେ ଆହୁରି ମଧ୍ୟ ବେଶ୍ ଜାଣିଗଲେ—ଏ ମାୟାବିନୀର ମନରେ ଅଦମ୍ୟ କାମଲାଳସା ରହିଛି । ତେଣୁ ସେ ପ୍ରଥମେ ତାକୁ କଟୁ କଥା କହି ପ୍ରତ୍ୟାଖ୍ୟାନ କରିବାକୁ ଆଦୌ ଉଚିତ ମନେ କଲେ ନାହିଁ । ବରଂ ସେ ଧୀର ତଥା ଗମ୍ଭୀର ବାଣୀରେ କହିଲେ—"ଦେଖ ସୁନ୍ଦରୀ, ତୁମେ ଠିକ୍ କହୁଛ । ମୋ' ଭାଇ ମୋତେ ଖୁବ୍ ଭଲ ପାଆନ୍ତି । କିନ୍ତୁ ସେ ମୋତେ ମୋ' ମାଆଙ୍କ ପାଖରୁ କିଣି ଆଣିଛନ୍ତି, ତେଣୁ ମୁଁ ଗୋଟିଏ କ୍ରୀତଦାସ । ମୁଁ ଚାହିଁଲେ ମଧ୍ୟ ମୋ ଇଚ୍ଛାନୁସାରେ କୁଆଡ଼େ ଯାଇ ପାରିବି ନାହିଁ । ସେ ମୋର ପ୍ରଭୁ, ମୁଁ ତାଙ୍କର ଦାସ । ମୋ' ସହିତ ବିବାହ କଲେ, ତୁମେ ମଧ୍ୟ କ୍ରୀତଦାସୀ ହୋଇଯିବ ! ମୁଁ ମୋର ପ୍ରତିଶ୍ରୁତି ଅନୁସାରେ ଶ୍ରୀରାମଙ୍କ ସେବା ଛାଡ଼ି କୁଆଡ଼େ ଦଣ୍ଡେ କି ମୁହୂର୍ତ୍ତେ

ଯାଇ ପାରିବ ନାହିଁ । ତୁମ ପରି ସୁନ୍ଦରୀ ତଥା ସୌଭାଗ୍ୟଶାଳିନୀ ନାରୀ କ'ଣ କ୍ରୀତଦାସୀ ହେବାକୁ ପସନ୍ଦ କରିବ ? ତେଣୁ ହେ ସୁନ୍ଦରୀ, ମୋ'ସହିତ ବିବାହ କରିବାର ଆଶା ତୁମେ ମନରୁ ପୋଛି ଦିଅ ! ଶ୍ରୀରାମ ସର୍ବସମର୍ଥ, ରାଜାଧିରାଜ, ବୀର ତଥା ସୁନ୍ଦର ମଧ୍ୟ । ସେ ଚାହିଁଲେ ଗୋଟିଏ କ'ଣ ଶହେ କନ୍ୟା ହଜାରେ ସ୍ତ୍ରୀଙ୍କୁ ବିବାହ କରି ପାରିବେ । ତା'ଫଳରେ ମୁଁ ତୁମର କଣିଷ୍ଠ ସେବକ ହୋଇ ପାରିବି ! ତା'ପରେ ତୁମ ପରି ସୁନ୍ଦରୀଙ୍କୁ କିଏ ଅବା ବିବାହ କରିବାକୁ ନ ଚାହିଁବ ଯେ ?"

ମହର୍ଷି ସୂତ କହିଲେ –"ହେ ମୁନିମାନେ, ଶୂର୍ପଣଖା ପ୍ରକୃତରେ ରାକ୍ଷସୀ । ସେ ଲକ୍ଷ୍ମଣଙ୍କ ପରିହାସକୁ ଆଦୌ ବୁଝି ପାରିଲା ନାହିଁ । ତେଣୁ ସେ ପୁଣି ଶ୍ରୀରାମଙ୍କ ନିକଟକୁ ଫେରିଯାଇ କହିଲା–"ରାଜକୁମାର, ତୁମେ ମୋତେ ବୃଥାଟାରେ ଧାଁ-ଦଉଡ଼ କରାଉଛ । ତୁମେ ମୋତେ ଗ୍ରହଣ କର । କାରଣ, ଲକ୍ଷ୍ମଣ କହୁଛନ୍ତି, ତୁମେ ସବୁ କିଛି କରିପାର !"

ଶ୍ରୀରାମ କହିଲେ—"ସୁନ୍ଦରୀ, ମୋ' ଭାଇ ଅତ୍ୟନ୍ତ ବୁଦ୍ଧିମାନ୍ । ସେ ମୋ ସ୍ତ୍ରୀକୁ ଖୁବ୍ ଡରୁଛି । ସେ ସୀତାଙ୍କ ଭୟରେ ଅନେକ କାମ କରୁଛି । ସେ ମୋ'ଠାରୁ କଠୋର ଆଦେଶ ନ ପାଇଲେ, କିଛି କାମ କରିବ ନାହିଁ । ଏଥର ତୁମେ ଯାଇ ତାକୁ ପୁଣି ଥରେ କୁହ । ସେ ଯଦି ନ ମାନେ, ତେବେ ତାକୁ ମୋ' ପାଖକୁ ଡାକି ଆଣ ।"

ଏହା ଶୁଣି ରାକ୍ଷସୀ ପୁଣି ଲକ୍ଷ୍ମଣଙ୍କ ପାଖକୁ ଧାଇଁଗଲା । ଏହା ଦେଖି ସୀତା ପୁଣି କହିଲେ—"ଆର୍ଯ୍ୟ, ଏ କ'ଣ ତୁମର ଉଚିତ କାମ ? ମୁଁ ଆଦୌ କିଛି ବୁଝି ପାରୁ ନାହିଁ । ତୁମେ ତାକୁ ସଫାସଫା ଫେରାଇ ନ ଦେଇ ବୃଥାଟାରେ କଥାଟାକୁ ବଢ଼ାଇ ଚାଲିଛ । ସେ ବିଚାରୀକୁ ବୃଥାଟାରେ ଠକୁଛ କାହିଁକି ?"

ଏହା ଶୁଣି ଶ୍ରୀରାମଚନ୍ଦ୍ର ହସି ହସି କହିଲେ—"ପ୍ରିୟେ, ଏ ସଂସାରରେ ପ୍ରାଣୀମାନେ ସବୁବେଳେ ବୃଥାଟାରେ ଧାଇଁ ଧାଇଁ ହଇରାଣ ହେଉଛନ୍ତି । ହରିଣୀ ବିଚାରୀ ମରୀଚିକା ପଛରେ ଧାଇଁ ଧାଇଁ ପ୍ରାଣ ହରାଏ । ଲୋକମାନେ ମଧ୍ୟ ସେହିପରି କାମ ଓ ଅର୍ଥ ପଛରେ ଦଉଡ଼ିବାରେ ଲାଗିଛନ୍ତି ! ମୁଁ କୌଣସି ପ୍ରକାର ଲୋଭରେ ବଶୀଭୂତ ନୁହେଁ । ରାକ୍ଷସୀ ନାରୀ କାମନାରେ ବଶୀଭୂତା ହୋଇ ଧାଁ'ଦଉଡ଼ କରୁଛି । ମୁଁ ଚାହେଁ—ଅସୁରମାନଙ୍କୁ ସଂହାର କରିବା । ତେଣୁ ସେହି ଘଟଣାର ସୂତ୍ରପାତ ନ ହେଲେ ଅସୁରମାନେ ମରିବେ କପରି ?"

"ଶୁଭେ, ଏ ନାରୀ ଅତ୍ରାଭାବରେ କାମନାର ବଶୀଭୂତା ହୋଇଛି । ଏହାର ମାଧ୍ୟମରେ ମୋତେ ରାକ୍ଷସମାନେ ଶତ୍ରୁ ବୋଲି ମନେ କରି ମାରିବାକୁ

ଆସିବେ । ସେମାନେ ମୋ ସହିତ ଯୁଦ୍ଧ କରି ପୋକମାଛି ପରି ଅସହାୟ ଭାବରେ ମୃତ୍ୟୁ ମୁଖରେ ପଡ଼ିବେ । ରାବଣ ପରି ଦୁର୍ଦ୍ଦାନ୍ତ ଅସୁର ମଧ୍ୟ ଏହି ଜାଲରେ ଛନ୍ଦି ହୋଇ ମୃତ୍ୟୁବରଣ କରିବ । ତୁମେ ବ୍ୟସ୍ତ ହୁଅନାହିଁ । ମୁଁ ମୁନିମାନଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଛି, ତା'ର ଶୁଭାରମ୍ଭ ହୋଇଗଲା ବୋଲି ମନେକର ।''

ସୀତା ଓ ଶ୍ରୀରାମଙ୍କ ମଧ୍ୟରେ ଆଲୋଚନା ଚାଲିଥିବାବେଳେ ସୂର୍ପଣଖା ଯାଇ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚିଗଲା । ସେ ଲକ୍ଷ୍ମଣଙ୍କୁ ସାଥିରେ ଧରି ପୁଣି ଆସି ଶ୍ରୀରାମଙ୍କ ନିକଟରେ ପହଞ୍ଚିଲା । ତାକୁ ଦେଖି ଶ୍ରୀରାମ ହସି ହସି ପଚାରିଲେ—''କୁହ, ତୁମର ଉଦ୍ଦେଶ୍ୟ ସାଧିତ ହେଲାତ ?''

ସୂର୍ପଣଖା ରାଗରେ ଜଳିଯାଇ କହିଲା—''ମୁଁ ସବୁ କଥା ବେଶ୍ ବୁଝି ପାରିଲିଣି । ଯେପର୍ଯ୍ୟନ୍ତ ଏ ପୋଡ଼ାମୁହିଁ ମୋ' ସତିରୁଣୀ ବଞ୍ଚି ରହିଛି, ସେ ପର୍ଯ୍ୟନ୍ତ ତୁମେ ମୋର ହୋଇ ପାରିବ ନାହିଁ । ତୁମେ ମୋତେ ସାମାନ୍ୟ ଅବଳା ବୋଲି ମନେ କରି ମୋ' ସହିତ ପରିହାସ କରି ଚାଲିଛ । ମୁଁ ଏହି ମୁହୂର୍ତ୍ତରେ ତାକୁ କଞ୍ଚା ଚୋବାଇ ଦେବି । ଆଉ ମଧ୍ୟ ମୋ ସୈନ୍ୟସାମନ୍ତଙ୍କୁ ଡକାଇ ଆଣି ତୁମ ଦୁହିଁଙ୍କ ଗର୍ବ ଚୂର୍ଣ୍ଣ କରିବି । ଜାଣିଛ, ମୁଁ କିଏ ? ମୁଁ ହେଉଛି—ରାବଣର ଭଉଣୀ ସୂର୍ପଣଖା । ମୋରି ସୁରକ୍ଷା ଲାଗି ଏହି ବନର ଅଦୂରରେ ଚଉଦ ହଜାର ରାକ୍ଷସ ସେନା ପ୍ରସ୍ତୁତ ଅଛନ୍ତି । । ସେମାନେ ନରମାଂସ ପାଇଲେ ଆନନ୍ଦରେ ନାଚି ଉଠିବେ । ମୁଁ ପ୍ରେମରେ ବଶୀଭୂତା ହୋଇ ତୁମକୁ ପତିରୂପେ ବରଣ କରିବାକୁ ଚାହୁଁଥିଲି । କିନ୍ତୁ ଏହି କୁରୂପା ନାରୀ ପାଇଁ ମୋ ଆଶାରେ ତୁଷାରପାତ ହେବାକୁ ଯାଉଛି । ଆଗେ ତା'ର ଖବର ନେଇ ସାରିଲେ, ଯାହା କିଛି ହେବ ।'' ଏହା କହି ରାକ୍ଷସୀ ସୂର୍ପଣଖା ତା' ନିଜ ରୂପରେ ଆତ୍ମପ୍ରକାଶ କଲା । ତା'ର ବିକଟାଳ ରୂପ ଦେଖି ସୀତାଦେବୀ ଭୟରେ ଥର ଥର କମ୍ପିବାକୁ ଲାଗିଲେ । ସେ ଆଉ କୌଣସି ଉପାୟ ନପାଇ ଭୟରେ ଶ୍ରୀରାମଙ୍କୁ କୁଣ୍ଢାଇ ପକାଇଲେ । ଏହା ଦେଖି ଶ୍ରୀରାମ ଲକ୍ଷ୍ମଣଙ୍କୁ ଆଦେଶ ଦେଇ କହିଲେ—''ଲକ୍ଷ୍ମଣ, ଏଥର ରାକ୍ଷସୀ ତା'ର ନିଜ ରୂପରେ ଆତ୍ମପ୍ରକାଶ କରିଛି । ଏପର୍ଯ୍ୟନ୍ତ ଆମେ ତା'ର ମାୟାରୂପ ଦେଖୁଥିଲେ । ସୀତା ତା'ର ବିକଟାଳ ରୂପ ଦେଖି ଅତ୍ୟନ୍ତ ଭୟ କରି ଗଲେଣି । ତୁ ଏଥର ରାକ୍ଷସୀକୁ ସମୁଚିତ ଶିକ୍ଷା ଦେଇ ଏଠାରୁ ବିଦାୟ କରିଦେ ! ସ୍ତ୍ରୀ ହତ୍ୟା ଶାସ୍ତ୍ର ବିରୋଧୀ । ତେଣୁ ତୁ ତାକୁ ବିରୂପା କରିଦେ ।''

ଏହା ଶୁଣିବା ମାତ୍ରେ ଲକ୍ଷ୍ମଣ ରାକ୍ଷସୀ ସୂର୍ପଣଖାର ନାକ କାନ କାଟିଦେଇ କହିଲେ—''ଏତିକିରେ ନିବୃତ୍ତ ହୋଇ ପଳାଇବୁ ନା, ଆଉ କିଛି ବିଦାୟ ଦକ୍ଷିଣା ମାଗୁଛୁ ?''

ସୂର୍ପଣଖା ପ୍ରାଣ ବିକଳରେ ମୁହଁରେ ଲୁଗାଦେଇ ସେଠାରୁ ଧାଇଁ ପଳାଇ ଗଲା । ସେ ସିଧା ଯାଇ ଖର ରାକ୍ଷସ ପାଖରେ ପହଞ୍ଚି କହିଲା—"ତୁମେମାନେ କେବଳ ରାବଣର ଧନ ଖାଇ ଏଠାରେ ପଡ଼ି ରହିଛ । ମଦ, ମାଂସ ଖାଇ କେବଳ ଅକର୍ମା ବନିଯାଇଛ । ସ୍ୱା' ମଧ୍ୟରେ ଦୁଇଟା ରାଜକୁମାର ଆସି ପଞ୍ଚବଟୀରେ ଆମକୁ ସାଧ କରିବେ ବୋଲି ଆସ୍ଥାନ ଜମାଇଲେଣି । ଆଜି ସେ ଦୁହେଁ ମୋତେ ଧରି, ମୋ' ନାକ କାନ କାଟିଦେଲେ । ତୁମେମାନେ ଏଇ ମୁହୂର୍ତ୍ତିକେ ଯଦି ସେ ଦୁହିଁଙ୍କୁ ଜୀବନ୍ତ ଧରି ଆଣି ମୋତେ ନ ଦେବ, ତେବେ ମୁଁ ଲଙ୍କାରେ ଆତ୍ମହତ୍ୟା କରିଦେବି । ହଁ, ତାଙ୍କ ସହିତ ଗୋଟିଏ ସୁନ୍ଦରୀ ନାରୀ ମଧ୍ୟ ରହିଛି । ତାକୁ ଧରି ଆଣିଲେ, ମୁଁ ରାବଣ ପାଇଁ ତାକୁ ଲଙ୍କାକୁ ପଠାଇ ଦେବି ।"

ଭଉଣୀ ସୂର୍ପଣଖାକୁ କୌଣସିମତେ ସାନ୍ତ୍ୱନା ବାଣୀ ଶୁଣାଇ ଖର ତାଙ୍କ ଦଳରୁ କେତେଜଣ ବଳବାନ୍ ରାକ୍ଷସଙ୍କୁ ଡକାଇ, ଶୀଘ୍ର ପଞ୍ଚବଟୀରେ ଥିବା ମନୁଷ୍ୟ-ମାନଙ୍କୁ ଧରି ଆଣିବା ଲାଗି ପଠାଇଲେ । ସେମାନେ ଯାଇ ଶ୍ରୀରାମଙ୍କ ଆଶ୍ରମରେ ପହଞ୍ଚି ଗର୍ଜନ ତର୍ଜନ କରିବାକୁ ଲାଗିଲେ । ଶ୍ରୀରାମ ସେମାନଙ୍କୁ ଦେଖି ଆଶ୍ରମରୁ ବାହାରି ଆସିଲେ ଏବଂ ବାଣ ପ୍ରହାର କରି ସେମାନଙ୍କ ମଧ୍ୟରୁ କେତେକଙ୍କୁ ଯମପୁରକୁ ପଠାଇଦେଲେ ।

ରାକ୍ଷସମାନଙ୍କ ନିଧନ ବାର୍ତ୍ତା ପାଇ ସୂର୍ପଣଖା ଉଚ୍ଚସ୍ୱରରେ ରୋଦନ କରି ଖର, ଦୂଷଣ ଓ ତ୍ରିଶିରଙ୍କୁ ଅନେକ ଧିକ୍କାର କଲା । ତହୁଁ ଖରଦୂର କ୍ରୋଧରେ ପ୍ରଜ୍ୱଳିତ ହୋଇଯାଇ ତ୍ରିଶିର ଓ ଦୂଷଣଙ୍କୁ ଡକାଇ ଚଉଦ ସହସ୍ର ସୈନ୍ୟ ଦଳଙ୍କୁ ସଜ୍ଜିତ କରିବା ପାଇଁ ଆଦେଶ ଦେଲା । ଘଡ଼ିକ ମଧ୍ୟରେ ସମସ୍ତ ସେନା ଅସ୍ତ୍ରଶସ୍ତ୍ର ଓ ରଥ ପ୍ରସ୍ତୁତ କରିଦେଲେ । ଖର, ଦୂଷଣ ଓ ତ୍ରିଶିର ମଧ୍ୟ ଦିବ୍ୟାସ୍ତ୍ରମାନଙ୍କରେ ସୁସଜ୍ଜିତ ହୋଇ ପଞ୍ଚବଟୀ ଅଭିମୁଖେ ଯୁଦ୍ଧଯାତ୍ରା କରିଦେଲେ ।

ଶ୍ରୀରାମ ଦୂରରୁ ରାକ୍ଷସମାନଙ୍କ ତର୍ଜ୍ଜନ ଗର୍ଜ୍ଜନ ଶୁଣି ଲକ୍ଷ୍ମଣଙ୍କୁ ଡାକି କହିଲେ—"ଭାଇ, ଅସଲ ଯୁଦ୍ଧର ବେଳ ଆସିଗଲା । ରାବଣର ସୈନ୍ୟମାନେ ଖରଦୂରର ନେତୃତ୍ୱରେ ଆମକୁ ଧରିନେବା ପାଇଁ ଆସୁଛନ୍ତି । ଏହି ଭୟଙ୍କର ଯୁଦ୍ଧ ଦେଖିଲେ ସୀତା ନିଶ୍ଚିତ ମୂର୍ଚ୍ଛିତା ହୋଇଯିବ । ତେଣୁ ତୁ ତାକୁ ନେଇ ନିକଟସ୍ଥ ପର୍ବତର ଗୁମ୍ଫା ମଧ୍ୟକୁ ଚାଲିଯାଅ । ମୁଁ ସଙ୍ଗେ ସଙ୍ଗେ ରାକ୍ଷସମାନଙ୍କ ପାଞ୍ଚି ପୋଛି ଦେଇ ସେମାନଙ୍କୁ ଯମପୁରକୁ ପଠାଇ ଦେଉଛି ।"

ଲକ୍ଷ୍ମଣ ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାକୁ ଚାହୁଁଥିଲେ । କିନ୍ତୁ ଶ୍ରୀରାମଙ୍କ ଆଦେଶ ପାଇବା ପରେ ଆଉ ତାଙ୍କର ପାଟି ଖୋଲିଲା ନାହିଁ । ତେଣୁ ସେ ସୀତାଙ୍କୁ ନେଇ ନିକଟବର୍ତ୍ତୀ ପର୍ବତର ଗୋଟିଏ ଗୁମ୍ଫାକୁ ଚାଲିଗଲେ ।

ଜାନକୀ ଓ ଲକ୍ଷ୍ମଣ ଚାଲିଯିବା ପରେ ଶ୍ରୀରାମ କଟୀକୁ ଭଲଭାବରେ ବାନ୍ଧି ଦେଇ ଧନୁ ଓ ଶରଗୁଡ଼ିକ ସଜାଇ ରଖିଲେ । ତା'ପରେ ସେ ଗୋଟିଏ ଉଚ୍ଚ ଟିକରା ଉପରେ ଛିଡ଼ା ହୋଇ ରାକ୍ଷସମାନଙ୍କ ଆଡ଼କୁ ମୁହଁ କରି ବୀର ଦର୍ପରେ ଛିଡ଼ା ହୋଇଗଲେ ! ତାଙ୍କ ଧନୁରେ ସେ ଗୁଣଦେଇ ସେଥିରେ ଦିବ୍ୟାସ୍ତ୍ର ଖଞ୍ଜି ଅସୁର ସଂହାର ଲାଗି ପ୍ରସ୍ତୁତ ହୋଇଥିଲେ । ସେତେବେଳେ ତାଙ୍କ ଚେହେରା ଠିକ୍ ଗୋଟିଏ ମତ୍ତସିଂହ ପରି ଦେଖା ଯାଉଥିଲା ।

ଦୂରରୁ ରାକ୍ଷସମାନେ ଶ୍ରୀରାମଙ୍କୁ ଦେଖି ପ୍ରକୃତରେ ଆତ୍ମବିସ୍ମୃତ ହୋଇ-ପଡ଼ିଲେ । ଶ୍ରୀରାମଙ୍କର ଭୁବନମନୋହର ରୂପ ଦେଖି ସେମାନେ ଚକିତ ହୋଇ-ଗଲେ । କାରଣ, ସେମାନେ ଜୀବନରେ ଏଭଳି ଭବ୍ୟ ତଥା ସୁଠାମ ଶରୀରଧାରୀ କୌଣସି ମାନବକୁ ଦେଖି ନଥିଲେ । କିନ୍ତୁ ଉପାୟ କ'ଣ ? ସେମାନେ ସେନାପତି ଖରଙ୍କ ଆଦେଶରେ ଶ୍ରୀରାମଙ୍କ ଉପରକୁ ଲକ୍ଷ୍ୟ କରି ଶର ନିକ୍ଷେପ କରିବାକୁ ଲାଗିଲେ । ଶ୍ରୀରାମ ରାକ୍ଷସମାନଙ୍କୁ ଲକ୍ଷ୍ୟ କରି ଦିବ୍ୟାସ୍ତ୍ରମାନ ପ୍ରୟୋଗ କରନ୍ତେ, ସେମାନେ କ୍ଷଣକ ମଧ୍ୟରେ ଭୂତଳଶାୟୀ ହୋଇଗଲେ । ଶ୍ରୀରାମଙ୍କ ଶର ପ୍ରହାରରେ ଅସୁରମାନଙ୍କ ହାତୀ, ଘୋଡ଼ା ଓ ରଥ ଛିନ୍ନଛିନ୍ନ ହୋଇଗଲେ । ବିଚରା ଅସୁରମାନେ ଶ୍ରୀରାମଙ୍କ କମନୀୟ ମୁଖମଣ୍ଡଳକୁ ଚାହିଁ ଶତ ଶତ ସଂଖ୍ୟାରେ ପ୍ରାଣ ବିସର୍ଜନ ପୂର୍ବକ ପୁଣ୍ୟପଥରେ ପଥିକ ହୋଇଗଲେ । ପ୍ରଥମ ସମରରେ ଶ୍ରୀରାମ ବହୁ ସଂଖ୍ୟକ ଅସୁର ସୈନ୍ୟଙ୍କୁ ସଂହାର କରିବା ସଙ୍ଗେ ସଙ୍ଗେ ଦୂଷଣ ନାମକ ବଳବାନ୍ ଅସୁରକୁ ଯମପୁରର ଅତିଥି କରାଇ ଦେଲେ ।

ତା'ପରେ ମହାବୀର ତ୍ରିଶିର ବୀରଦର୍ପରେ ଶ୍ରୀରାମଙ୍କୁ ସଂହାର କରିବା ଇଚ୍ଛାରେ ଆଗକୁ ମାଡ଼ି ଆସିଲା । ସେ ଅନେକ ସମୟ ପର୍ଯ୍ୟନ୍ତ ଶ୍ରୀରାମଙ୍କ ସହିତ ଯୁଦ୍ଧ କରି କରି ଶେଷରେ ଜୀବନ ହରାଇ ବସିଲା । ଏହା ଦେଖି ସେନାପତି ଖରାସୁର କ୍ରୋଧରେ ଅଗ୍ନିଶର୍ମା ହୋଇଗଲା । ସେ ଗୋଟିଏ ବିଚିତ୍ର ରଥରେ ବସି ଶ୍ରୀରାମଙ୍କ ଆଡ଼କୁ ମାଡ଼ି ଆସିଲା । ଶ୍ରୀରାମ ଅସୁରମାନଙ୍କ ସଂହାର ନିମିତ୍ତ ଅବତାର ଗ୍ରହଣ କରିଥିଲେ । ତେଣୁ ସେ ଗୋଟିଏ ଦିବ୍ୟବାଣ ପ୍ରୟୋଗ କରି ଖରର ରଥଟିକୁ ଭାଙ୍ଗି ଚୁରମାର କରିଦେଲେ ।

ନିଜର ବିଚିତ୍ର ରଥଟି ନଷ୍ଟ ହୋଇ ଯିବାର ଦେଖି, ଖରର କ୍ରୋଧ ଦ୍ୱିଗୁଣିତ ହୋଇଗଲା । ସେ ପାଦଗତିରେ ମାଡ଼ି ଆସି ଶ୍ରୀରାମଙ୍କ ଉପରକୁ ଶତସହସ୍ର ଶର ନିକ୍ଷେପ କଲା । ଶ୍ରୀରାମ ଖରାସୁରର ଯୁଦ୍ଧ କୌଶଳ ଦେଖି ବିସ୍ମିତ ହୋଇଗଲେ । ଶେଷରେ ସେ ଗୋଟିଏ ଅମୋଘ ବାଣ ପ୍ରୟୋଗ କରି ଖରକୁ ଧରାଶାୟୀ କରାଇ ଦେଲେ ।

ଖରାସୁରର ନିଧନରେ ଦେବଗଣ ଆକାଶ ମାର୍ଗରେ ନୃତ୍ୟ କରିବାକୁ ଲାଗିଲେ ଏବଂ ଶ୍ରୀରାମଙ୍କ ଶିରରେ ପୁଷ୍ପବୃଷ୍ଟି କଲେ । ଠିକ୍ ସେତିକବେଳେ ଜନସ୍ଥାନରେ ଅଗସ୍ତିଙ୍କ ସମେତ ଋଷି, ମୁନି ଓ ମହର୍ଷି ଦଳ ଦଳ ହୋଇ ଆସି ଶ୍ରୀରାମଙ୍କୁ ଅଭିନନ୍ଦନ ଜଣାଇଲେ ।

ଯୁଦ୍ଧ ଶେଷ ହୋଇ ଯାଇ ଥିବାର ସୂଚନା ପାଇ ଲକ୍ଷ୍ମଣ ପର୍ବତ-କନ୍ଦରାରୁ ସୀତାଙ୍କୁ ନେଇ ପଞ୍ଚବଟୀକୁ ଆସିଗଲେ । ସମ୍ମୁଖରେ ଅସଂଖ୍ୟ ରାକ୍ଷସଙ୍କ ମୃତ ଦେହ ଦେଖି ସୀତା ଉଲ୍ଲସିତା ହୋଇ ଉଠିଲେ । ସେ ଆନନ୍ଦରେ ଅଧୀର ହୋଇଯାଇ, ଶ୍ରୀରାମଙ୍କ ବୀରତ୍ୱର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ସ୍ନେହରେ ପ୍ରଭୁଙ୍କୁ ଗାଢ଼ ଆଲିଙ୍ଗନ କଲେ ।

## ଛପ୍ପୟ

''ଦୂଷଣ, ଖର, ଅରୁ ତ୍ରିଶିର ସମତେଂ ଲଡ଼ବେ ଆୟେ ।
ନିଶିଚର ଚୌଦହ ସହସ ରାମ ଯମସଦନ ପଠାୟେ ॥
ନିଶିଚର କୀଟ ପତଙ୍ଗ ରାମ ଲୌ ମହୁଁ ଜର ଜାୱେଂ ।
ଶୂଲର ସମ ଶର ଜାୟୁଁ ରାମ ଜବ ବାନ ଚଲାୱେଂ ॥
ଯାତୁଧାନ ଜବ ସବ ମରେ ଚଲୀ ଲଙ୍କ କୂଁ ନକକଟୀ ।
ମରହୁଁ ନିଶାଚର ବେଗି, କବ ଲଗୀ ରାମ କୁଁ ଚଟପଟୀ ॥



# ମାୟା ମୃଗ ମାରୀଚ ଓ ଶ୍ରୀରାମ

"ତ୍ୟକ୍ତ୍ୱା ସୁଦୁସ୍ତ୍ୟଜ ସୁରେପ୍‌ସିତ ରାଜ୍ୟଲକ୍ଷ୍ମୀଂ
ଧର୍ମିଷ୍ଠ ଆର୍ଯ୍ୟବଚସା ଯଦଗାଦରଣ୍ୟମ୍ ।
ମାୟାମୃଗଂ ଦୟିତୟେପ୍‌ସିତ ମନ୍ୱଧାବଦ୍
ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍ ।

(ଶ୍ରୀ-ଭାଗ ୧୧, ସ୍କ ୫,ଅ ୩୪ ଶ୍ଲୋ)

## ଛପ୍‌ପୟ

"ରାବଣ କେ ଢିଂଗ ଜାଇ ରୋଇ ବୋଲୀ ନକଟୀ ସୁନ ।
ପଞ୍ଚବଟୀ ମେଂ ରହେଂ ରାମ ଲକ୍ଷ୍ମଣ ବନକେ ମୁନ ॥
ସଙ୍ଗ ସୀୟ ଇକ ସୁନ୍ଦର ନାରୀ ରତ ସମ ସୁକୁମାରୀ ।
ଲଖୀ ମେରୀ ବନେ ଭ୍ରାତ ମନ ମାହିଁ ବିଚାରୀ ॥
ଓନ ସୁନ ମମ ପ୍ରସ୍ତାବ କୁଁ ନାକ କାଟ ମେରୀ ଲଇ ।
ଖର, ଦୂଷନ, ତ୍ରିଶିର ମରେ, ଅପକୀରତ ତେରୀ ଭଇ ॥"

ମୁନିବର କରଭଜନ ନମି ରାଜାଙ୍କୁ କହୁଛନ୍ତି—"ହେ ରାଜନ୍, ଈଶ୍ୱରଙ୍କୁ ହାତ ଯୋଡ଼ି ପ୍ରାର୍ଥନା କରନ୍ତୁ । ଯେଉଁ ମହାପ୍ରଭୁ ନିଜର ଲୀଳାବିସ୍ତାର ଲାଗି ପିତୃସତ୍ୟ ପାଳନ ପୂର୍ବକ ରାଜ୍ୟ, ବୈଭବ ତଥା ସିଂହାସନ ତ୍ୟାଗ କରି ବନକୁ ଯାଇ ଅକଥନୀୟ କଷ୍ଟ ସହିଥିଲେ; ଯେଉଁ ପ୍ରଭୁ ପ୍ରାଣପ୍ରିୟାଙ୍କ ଆନନ୍ଦ ପାଇଁ ମାୟାମୃଗ ପଛରେ ଧାଇଁଥିଲେ, ସେହି ମହାପ୍ରଭୁଙ୍କ ଚରଣାରବିନ୍ଦକୁ ଆପଣ ବନ୍ଦନା କରନ୍ତୁ ।

ଯାହା ଘଟିବାର ଥାଏ, ତାହା କେବେହେଲେ ଅନ୍ୟଥା ହୁଏନାହିଁ । ଯାହା ଘଟିବାର ନଥାଏ, ତାହା ଶତ ଚେଷ୍ଟା କଲେ ମଧ୍ୟ କେବେହେଲେ ସମ୍ଭବ

ହୁଏ ନାହିଁ । ମୃଗ ପ୍ରତିଦିନ ଦେଖେ ମରୁଭୂମିରେ ଜଳନାହିଁ, କିନ୍ତୁ ତା'ର ମୃତ୍ୟୁ ପାଖେଇ ଆସିଲେ ସେ ମରୁଭୂମିର ମରୀଚିକାକୁ ପ୍ରକୃତ ଜଳ ବୋଲି ମନେ କରି ତା'ରି ପଛେ ପଛେ ଧାଇଁବାରେ ଲାଗିପଡ଼େ ।

ମନୁଷ୍ୟ ସବୁ ବିଷୟ ଜାଣି ମଧ୍ୟ ବିଧିର ବିଧାନରେ ବଶୀଭୂତ ହୋଇ ଅସମ୍ଭବକୁ ସମ୍ଭବ ବୋଲି ମନେ କରି ତା'ରି ପଛରେ ଧାଇଁ ଧାଇଁ ଅନ୍ତଃଶ୍ୱାସୀ ହୋଇପଡ଼େ । ଏହାରି ନାମ ହେଉଛି—ଗୁଣମୟୀ ମାୟା । ଏହି ମାୟାକୁ ଜନ-ସମାଜରେ ପ୍ରତ୍ୟକ୍ଷ କରାଇବା ପାଇଁ ପ୍ରଭୁ ମାୟାମୃଗ ପଛରେ ଅମୋଘ ଅସ୍ତ୍ର ଧରି ଧାଇଁଥିଲେ । ପ୍ରକୃତରେ ସେ କ'ଣ କିଛି ଧାଉଁଥିଲେ ? ନାଃ · ପାପୀ ରାକ୍ଷସ ମାରୀଚକୁ ଦୌଡ଼ାଇ ଦୌଡ଼ାଇ ସଂସାର-ସାଗରର ପରପାରକୁ ନେଇ ଯାଉଥିଲେ ।

ସୂତ ମୁନି ଶୌନକାଦିଙ୍କୁ ଉପଦେଶ ଦେଇ କହିଲେ—"ହେ ବ୍ରହ୍ମର୍ଷିଗଣ, ଖରାସୁର ଆଦି ନିଧନ ହେବା ପରେ ଗୁପ୍ତଚର ଅକମ୍ପନ ପ୍ରାଣ ବିକଳରେ ଧାଇଁ ଧାଇଁ ଯାଇ ଲଙ୍କାରେ ପହଞ୍ଚିଗଲା । ରାକ୍ଷସାଧିପ ରାବଣ ତା'ର ଅବସ୍ଥା ଦେଖି ତାକୁ ଜନସ୍ଥାନର କୁଶଳ ସମ୍ବନ୍ଧରେ ବ୍ୟଗ୍ର ଭାବରେ ପ୍ରଶ୍ନ କଲେ । ତହୁଁ ସେ କହିଲା—"ହେ ରାକ୍ଷସାଧିପ, ଜନସ୍ଥାନ ଏବେ ମହାବିପଦଗ୍ରସ୍ତ ହୋଇପଡ଼ିଛି । ଚଉଦ ହଜାର ସୈନ୍ୟଙ୍କ ସହିତ ଖର, ଦୂଷଣ ଓ ତ୍ରିଶିର ମୃତ୍ୟୁ ମୁଖରେ ପଡ଼ିଛନ୍ତି । ମୁଁ କୌଣସି ମତେ ଜୀବନ ପାଇ ଏଠାକୁ ଧାଇଁ ଆସିଛି ।"

ଏହା ଶୁଣିବା ମାତ୍ରେ ମହାପ୍ରତାପୀ ରାବଣ ଗର୍ଜନ ତର୍ଜନ କରି ଜନସ୍ଥାନରେ ଥିବା ରାକ୍ଷସ ଶତ୍ରୁ ସମ୍ପର୍କରେ ନାନା ପ୍ରକାର ସ୍ପର୍ଦ୍ଧାଜନକ ବାଣୀ ପ୍ରକାଶ କଲା । ଏହା ଶୁଣି ଅକମ୍ପନ କହିଲା—"ମହାରାଜ ଆପଣ ଜନସ୍ଥାନର ଶତ୍ରୁଙ୍କୁ ଉପହାସ କରି ଉଡ଼ାଇ ଦିଅନ୍ତୁ ନାହିଁ । ସେ ସାଧାରଣ ଯୋଦ୍ଧା ନୁହେଁ । ସେ ଏକୁଟିଆ ଧନୁଧାରଣ କରି ଆପଣଙ୍କର ସୁଶିକ୍ଷିତ ତଥା ସୁସଜ୍ଜିତ ସେନାନୀ ଓ ସେନା-ମାନଙ୍କୁ ମାତ୍ର କେଇଘଡ଼ି ମଧ୍ୟରେ ଧ୍ୱଂସ କରିଦେଲା । ଯେଉଁ ଖରାସୁର ଜଣେ ପ୍ରଚଣ୍ଡ ବୀର ବୋଲି ଆପଣଙ୍କର ଗର୍ବ ଥିଲା, ତାକୁ ସେ କୁଇ ତିନି ମୁହୂର୍ତ୍ତ ମଧ୍ୟରେ ଯମପୁରକୁ ପଠାଇ ପାରିଲା । ଏ ସମସ୍ତ କଥା ଶୁଣିବା ପରେ ଆପଣ ଶ୍ରୀରାମଙ୍କୁ ଗୋଟିଏ ସାଧାରଣ ଶତ୍ରୁ ବୋଲି ମନେ କରି, ହଠାତ୍ ତା' ସହିତ ଯୁଦ୍ଧ ଲାଗି ପ୍ରସ୍ତୁତ ହୋଇଯିବା ଉଚିତ ହେବ ନାହିଁ । ଆପଣ ମୋତେ କ୍ଷମା କରନ୍ତୁ । ମୁଁ ଯାହା ନିଜ ଆଖିରେ ଦେଖିଛି ତାହାହିଁ ଆପଣଙ୍କ ଆଗରେ ବର୍ଣ୍ଣନା କରୁଛି । ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର ଓ ଯମ ପ୍ରଭୃତି ସହସ୍ର ସହସ୍ର ଦେବଗଣ ମଧ୍ୟ ଯୁଦ୍ଧରେ ରାମକୁ ହରାଇ ପାରିବେ ନାହିଁ । ତେଣୁ ହଠାତ୍ ରାମ ସହିତ ଯୁଦ୍ଧ ନ କରି ବୁଦ୍ଧିବଳରେ

ତାକୁ ହରାଇବା ଉଚିତ ହେବ । ଯଦି ମୋତେ କ୍ଷମା ଦିଆଯାଏ, ତେବେ ମୁଁ ମୋର ପ୍ରସ୍ତାବ ରାକ୍ଷସାଧିପଙ୍କ ଆଗରେ ଉପସ୍ଥାପିତ କରିବି ।”

ରାବଣର ଅନୁମତି କ୍ରମେ ଅକମ୍ପନ କହିଲା—“ଅନ୍ନଦାତା, ଆପଣଙ୍କ ପରି ବିଶ୍ୱବିଜୟୀ ବୀର ଜଣେ ସାମାନ୍ୟ ମାନବ ସହିତ ଯୁଦ୍ଧ କରିବାକୁ ଯିବା, ପ୍ରକୃତରେ ଯୁକ୍ତିଯୁକ୍ତ ତଥା ସମ୍ମାନପ୍ରଦ ହେବ ନାହିଁ । ତେଣୁ ଆପଣ ଗୋଟିଏ ବୁଦ୍ଧିର ଖେଳ ଦେଖାଇ ପାରନ୍ତି ! ଶ୍ରୀରାମର ପତ୍ନୀ ଖୁବ୍ ସୁନ୍ଦରୀ । ତ୍ରିଭୁବନରେ ତା ପରି ସୁନ୍ଦରୀ ଥିବାର ମୁଁ ଦେଖିନାହିଁ । ସେ ନାରୀ ଶ୍ରୀରାମର ଏକାନ୍ତ ଅନୁରାଗିଣୀ । ଶ୍ରୀରାମ ମଧ୍ୟ ତାକୁ ପ୍ରାଣଠାରୁ ଅଧିକ ସ୍ନେହ କରୁଛି । ମୋର ଦୃଢ଼ ଧାରଣା—ଶ୍ରୀରାମ ସେ ସ୍ତ୍ରୀ ବିନା କେବେହେଲେ ବଞ୍ଚି ପାରିବ ନାହିଁ । ଆପଣ ଯଦି କୌଣସି କୌଶଳେ ସୀତାକୁ ଅପହରଣ କରି ଆଣି ପାରନ୍ତି, ତେବେ ଶ୍ରୀରାମ ତାର ବିରହରେ ପ୍ରାଣ ହରାଇ ଦେବ । ମୋ ବିଚାରରେ ଆପଣ ଗୋଟିଏ କାର୍ଯ୍ୟ କଲେ ଆପଣଙ୍କର ଦୁଇଟି ଉଦ୍ଦେଶ୍ୟ ସାଧିତ ହୋଇ ପାରିବ । ଆପଣ ଗୋଟିଏ ତ୍ରୈଲୋକ୍ୟମୋହିନୀ ପତ୍ନୀ ପାଇପାରିବେ ଏବଂ ଆପଣଙ୍କର ଏକ ଶକ୍ତିଶାଳୀ ଶତ୍ରୁ ମଧ୍ୟ ମୃତ୍ୟୁର କରାଳ କବଳରେ ପଡ଼ିବ !”

ବୃଦ୍ଧ ଅକମ୍ପନର ଯୁକ୍ତିକାମୀ ତଥା ଉଦ୍ଧତ ରାବଣର ମନକୁ ବେଶ୍ ପାଇଗଲା । ସେ ମନେ ମନେ ଭାବିଲା—ବେଶ୍ ବୁଦ୍ଧିତ...! ତା’ହେଲେ ଗୋଟିଏ ହରିଣୀର ଲୋଭ ଦେଖାଇ ମୁଁ ରାମକୁ କୁଡ଼ିଆରୁ ଦୂରକୁ ନେଇଯାଇ ସୀତାକୁ ପଞ୍ଚବଟୀରୁ ଅନାୟାସରେ ହରଣ କରି ଆଣିବି । ସୀତା ବିରହରେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିବା ପରେ ମୁଁ ଯେକୌଣସି ମୂହୂର୍ତ୍ତରେ ଶ୍ରୀରାମକୁ ବଧ କରି ପାରିବି । ଏପରି ସୁବର୍ଣ୍ଣ ସୁଯୋଗ ଛାଡ଼ିବାର ନୁହେଁ ।

ସେ ମନେ ମନେ ସମସ୍ତ ଉପାୟ ଘଡ଼ିକ ମଧ୍ୟରେ ସ୍ଥିର କରି ନେଇ ବୃଦ୍ଧ ଅକମ୍ପନକୁ ପୁରସ୍କାର ସହିତ ବିଦାୟ କରିଦେଲା । ତା’ପରେ ସେ ରଥ ଚଢ଼ି ଶୀଘ୍ର ଯାଇ ମାରୀଚ ଆଶ୍ରମରେ ପହଞ୍ଚିଲା । ସେ ଜାଣିଥିଲା—ମାରୀଚ ମାୟା ବଳରେ ମୃଗ ଆଦି ଯେକୌଣସି ପଶୁ ହୋଇପାରେ । ତେଣୁ ସେ ମାରୀଚ ନିକଟରେ ପହଞ୍ଚି ତା’ର ମନୋଭାବ ପ୍ରକାଶ କରିଦେଲା ।

ରାବଣର ଚକ୍ରାନ୍ତପୂର୍ଣ୍ଣ ଧୂର୍ତ୍ତ ବାକ୍ୟ ଶୁଣି ମାରୀଚ ମନେ ମନେ ଭୀତ ହୋଇ ଏପରି ନ କରିବା ଲାଗି ରାବଣକୁ ଅନେକ ପ୍ରକାର ବୁଝାଇଲା । ମାରୀଚର ଯୁକ୍ତି ତଥା ସାହସପୂର୍ଣ୍ଣ ବାଣରେ ସନ୍ତୁଷ୍ଟ ହୋଇ ରାବଣ ଲଙ୍କାକୁ ଫେରିଯାଇ ଅନ୍ୟ କିଛି ଉପାୟ ଚିନ୍ତା କରିବାକୁ ଲାଗିଲା । ସେ ବିଶ୍ରାମ କରୁଥିବା ସମୟରେ ରାକ୍ଷସୀ ସୂର୍ପଣଖା

ମୁହଁରେ ଲୁଗା ଦେଇ ରାବଣର ବିଶ୍ରାମ ଗୃହକୁ ପଶିଯାଇ ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲା । ରାବଣ ତାକୁ ବୁଝାଇ ଶୁଝାଇ ଆଶ୍ୱସ୍ତ କରନ୍ତେ ସେ କ୍ରୋଧରେ ଉନ୍ମତ୍ତ ହୋଇ କହିଲା—"ତୋତେ ଲଜ୍ଜାବୋଧ ହେଉନାହିଁ । ସମଗ୍ର ରାକ୍ଷସ ସଭ୍ୟତା ଓ ସଂସ୍କୃତି ବିପନ୍ନ ହେବାକୁ ବସିଲାଣି, ଅଥଚ ତୁ ଶାନ୍ତିରେ ଖାଇପିଇ ଆରାମ କରୁଛୁ ! ଗୋଟିଏ ସାମାନ୍ୟ ତପସ୍ୱୀ ବାଳକ ତୋର ପ୍ରାଣପ୍ରିୟ ଭାଇ ଖରକୁ ସଂହାର କଲା; ଜନସ୍ଥାନରୁ ରାକ୍ଷସମାନଙ୍କ ଆଧିପତ୍ୟ ଲୋପ କଲା; ଅଥଚ ସେଥିପ୍ରତି ତୁ ତିଳେମାତ୍ର ଦୃଷ୍ଟି ନଦେଇ ବିଳାସରେ ମାତିଛୁ ! ଦେଖିଲୁ, ସେ ଉଦ୍ଧତ ଯୁବକ ମୋତେ କିପରି ଦଣ୍ଡ ଦେଇଛି ?"

ସୂର୍ପଣଖାର ନାକ କାନକୁ ଦୃଷ୍ଟି ଦେଇ କ୍ରୋଧରେ ପ୍ରଜ୍ୱଳିତ ହୋଇଯାଇ ରାବଣ କହିଲା—"ତୋତେ ଏପରି ଦଣ୍ଡ ଦେବାକୁ ସାହସ କଲା କିଏ ?"

ପୁଣି ଥରେ କ୍ରନ୍ଦନର ରୋଳ ଉଠାଇ ସୂର୍ପଣଖା କହିଲା—"ଭାଇ, ଏହା କେବଳ ମୋ ନାକ କାନ କଟିନାହିଁ, କଟିଛି ଲଙ୍କେଶ୍ୱର ରାବଣର । ମୋ' ନାକକାନ ହଜାରେଥର କଟାହେଲେ ସେଥିରେ କିଛି ଯାଏଆସେ ନାହିଁ । କିନ୍ତୁ ରାକ୍ଷସାଧିପତି, ତ୍ରିଭୁବନ ବିଜୟୀ ରାବଣର କୀର୍ତ୍ତି ଧୂଳିସାତ୍ ହୋଇଗଲା, ତାହାହିଁ ମୋର ଦୁଃଖ !"

ଗର୍ଜି ଉଠି ରାବଣ କହିଲା—"ତୁ ଏତେ ଭୂମିକା ପ୍ରସ୍ତୁତ ନ କରି କହ, କିଏ ତୋ ନାକ କାନ ଏପରି ହୀନମାନ କରି କାଟିଛି ?"

ସୂର୍ପଣଖା କହିଲା—"ଆଉ କିଏ କାଟନ୍ତା ? ସେହି ରାମର ସାନଭାଇ ଉଦ୍ଧତ ଲକ୍ଷ୍ମଣ !

ରାବଣ ପ୍ରଶ୍ନ କଲା—"କାଟିବାର କାରଣ କ'ଣ ?"

ରାବଣର ପ୍ରଶ୍ନ ଶୁଣି ପ୍ରଥମେ ଟିକିଏ ଅପ୍ରସ୍ତୁତରେ ପଡ଼ିଗଲା ସୂର୍ପଣା । ସେ କଥାଟିକୁ ବାଗେଇ ନେଇ ରାବଣକୁ ଉତ୍ତେଜିତ କରାଇବା ଉଦ୍ଦେଶ୍ୟରେ କହିଲା— "କାରଣ ଆଉ କ'ଣ ? ନିଆଁ ପାଉଁଶ ! ମୁଁ ବେଶ୍ ଅନୁଭବ କଲି ହୋମ କରିବାକୁ ଗଲେ ହାତ ପୋଡ଼ିଯାଏ । ମୁଁ ସବୁବେଳେ ତୋ'ର ସୁଖ ସୁବିଧା ପାଇଁ ଦୃଷ୍ଟି ଦେଇଥାଏ ।" ଟିକିଏ ରହିଯାଇ କଥାଟିକୁ ବଳେଇ ଚୁଳେଇ ସୂର୍ପଣଖା କହିଲା— "ରାମ ଲକ୍ଷ୍ମଣ ଦୁଇଭାଇ ଦେଖିବାକୁ ଖୁବ୍ ସୁନ୍ଦର । କିନ୍ତୁ ତାଙ୍କଠାରୁ ସହସ୍ରଗୁଣ ସୁନ୍ଦରୀ ହେଉଛି—ଶ୍ରୀରାମର ସ୍ତ୍ରୀ ସୀତା । ସେ ସାଧାରଣ ନାରୀ ନୁହେଁ ! ଚଉଦ ବ୍ରହ୍ମାଣ୍ଡ ମଧ୍ୟରେ ତା'ପରି ସୁନ୍ଦରୀଟିଏ ସୁର, ନାଗ, ଯକ୍ଷ, କିନ୍ନର ଓ ଅସୁର ଘରେ ମଧ୍ୟ ନାହାନ୍ତି । ସେ ହେଉଛି—ସର୍ବାଙ୍ଗ ସୁନ୍ଦରୀ, ବିଶ୍ୱମୋହିନୀ ନାରୀରତ୍ନ !! ତାକୁ ଦେଖିବା ମାତ୍ରେ ମୋର ମନେ ହେଲା—ସେ ବନବାସୀ ତପସ୍ୱିନୀ ପାଖରେ ଏପରି

ରନ୍ତୁ କ'ଣ ଶୋଭାପାଏ । ମୋ ଭାଇର ଅଙ୍କଶାୟିନୀ ସେ ହୋଇ ପାରିଲେ କେବଳ ମୋତେ କାହିଁକି, ସାରା ବିଶ୍ୱକୁ ସୁନ୍ଦର ଦିଶିବ । ମୁଁ ଏହି ଆଶା ନେଇ ପଞ୍ଚବଟୀ ଭିତରକୁ ପଶିଲି । ଭାବିଥିଲି—ଦ'ଭାଇ ନଥିବା ବେଳେ ମୁଁ ସୁବିଧା ଦେଖି ସୀତାଙ୍କୁ ବୁଝାଇ ସୁଝାଇ ଲଙ୍କାକୁ ଘେନି ଆସିବି । ନଇଲେ ବଳପୂର୍ବକ ଅପହରଣ କରି ତୋ' ପାଇଁ ସେ ରତ୍ନଟିକୁ ଘେନି ଆସି ଥାଆନ୍ତି ! ମୋତେ ତାଙ୍କ କୁଡ଼ିଆ ପାଖରେ ଦେଖି ପକାଇ ସେ ଚୋକାଟା, କଥା ନାହିଁ, ବାର୍ତ୍ତା ନାହିଁ, ଧାଇଁଆସି ମୋ ନାକକାନ କାଟି ଦେଲା । ମୋର ଏତକ ମାତ୍ର ଅନୁରୋଧ- ତୁ ସେହି ସୁନ୍ଦରୀ ଶିରୋମଣିକୁ ଆଣି ତୋ' ଅନ୍ତଃପୁରରେ ରଖ । ସେଇଥିରେ ହିଁ ମୋ' ଅପମାନର ପ୍ରତିଶୋଧ ନିଆଗଲା ବୋଲି ମୁଁ ଜାଣିବି !"

ସୂତ ମହର୍ଷି ମୁନିମାନଙ୍କୁ ସମ୍ବୋଧନ କରି କହିଲେ—"ହେ ବ୍ରହ୍ମର୍ଷିଗଣ, ଆପଣମାନେ ଅତ୍ୟନ୍ତ ଭାଗ୍ୟବାନ୍ ! କାରଣ, ନାରୀମାନଙ୍କ ଫାନ୍ଦରେ ପଡ଼ି ଆପଣମାନେ ଧନ୍ଦି ହେଉ ନାହାନ୍ତି । ସ୍ତ୍ରୀମାନେ କେତେ ପ୍ରକାର ଫାଶ ବସାଇ ପୁରୁଷମାନଙ୍କୁ ବଶ କରନ୍ତି, ତାହା ଆପଣମାନେ ଶୂର୍ପଣଖାର କୂଟକପଟ ଉକ୍ତିରୁ ବେଶ୍ ବୁଝି ପାରୁଥିବେ ।

"ଯା ହେଉ, ଶୂର୍ପଣଖା ନିଜର ଛଳନା ବଳରେ ରାବଣକୁ ଉତ୍ତେଜିତ କରାଇ ପାରିଲା । ଶୂର୍ପଣଖାଠାରୁ ସୀତାଙ୍କର ସୌନ୍ଦର୍ଯ୍ୟ ସମ୍ବନ୍ଧରେ ଶୁଣି ରାବଣ ଏପରି କାମାନ୍ଧ ହୋଇଗଲା ଯେ, ମାରୀଚର ଉପଦେଶକୁ ସେ ସମ୍ପୂର୍ଣ୍ଣ ଭୁଲିଗଲା । ସେ ମନେ ମନେ ସୀତାଙ୍କ ଅପହରଣ ଲାଗି ସମ୍ପୂର୍ଣ୍ଣ ଯୋଜନା ପ୍ରସ୍ତୁତ କରିନେଲା । ହେ ମୁନିଗଣ, ଯେଉଁ ରାବଣକୁ ବିଶ୍ୱରେ କେହି ହରାଇପାରି ନଥିଲେ, ସେ ଶୂର୍ପଣଖାର କଥା କହିବାର ଛଟକ ଆଗରେ ସମ୍ପୂର୍ଣ୍ଣ ପରାସ୍ତ ହୋଇଗଲା । ସେ ଆଉ କାଳବିଳମ୍ବ ନକରି ପୁଣି ଯାଇ ମାରୀଚ ଆଶ୍ରମରେ ପହଞ୍ଚିଗଲା ।

ମାରୀଚ ରାବଣର ମୁହଁକୁ ଅନାଇ ଦେଇ ମନେ ମନେ କମ୍ପି ଉଠିଲା । ସେ ବାଧ୍ୟ ହୋଇ ରାବଣକୁ ସ୍ୱାଗତ ଜଣାଇବା ସଙ୍ଗେ ସଙ୍ଗେ ପୁଣିଥରେ ଆସିବାର ଉଦ୍ଦେଶ୍ୟ ସମ୍ପର୍କରେ ପ୍ରଶ୍ନ କରନ୍ତେ ରାକ୍ଷସାଧିପ ଉତ୍ତର ଦେଇ କହିଲା—"ଦେଖ, ମାରୀଚ, ତୁମକୁ ମୋ କାମ କରିବାକୁ ହିଁ ପଡ଼ିବ । ମୁଁ ତୁମର କୌଣସି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ । ତୁମେ ଆଉ ବାକ୍ୟବ୍ୟୟ ନକରି ମୋ' ସାଥିରେ ବାହାରିପଡ଼ !"

ମାରୀଚ ବିନୀତ ଭାବରେ କହିଲା—"ରାକ୍ଷସକୁଳତିଳକ, ମୁଁ ଶ୍ରୀରାମଙ୍କୁ ଅନେକ ଦିନରୁ ଜାଣିଛି । ସେ ଅନାୟାସରେ ମୋ' ମାଆ ଓ ଭାଇଙ୍କୁ ବଧ କରି

ମୋତେ ଶତ ଶତ ଯୋଜନ ଦୂରକୁ ଶର ସାହାଯ୍ୟରେ ଫିଙ୍ଗିଦେଲା । ସେହି ଦିନରୁ ଶ୍ରୀରାମଙ୍କୁ ମୋର ପ୍ରାଣର ଭୟ !!"

ରାବଣ ନିଜର ବାହୁବଳର ବାହାଦୁରୀ ଦେଖାଇ ମାରୀଚକୁ ଅନେକ ବୁଝାଇଲା; କିନ୍ତୁ ମାରୀଚ ଆଦୌ ସେଥିରେ ଏକମତ ନ ହୋଇ ବାରମ୍ବାର ବହୁ ଉଦାହରଣ ସହିତ ଶ୍ରୀରାମଙ୍କ ବଳବୀର୍ଯ୍ୟର ପ୍ରଶଂସା କରିବାକୁ ଲାଗିଲା ।

ଉଦ୍ଧତ, କାମାନ୍ଧ ତଥା ଅବିବେକୀ ରାବଣ ଆଉ ଧୈର୍ଯ୍ୟଧାରଣ କରି ପାରିଲା ନାହିଁ । ସେ ହାତରେ ଖଡ୍ଗ ଧରି ମାରୀଚ ନିକଟକୁ ଝପଟି ଯାଇ କହିଲା—"ଦେଖ ମାରୀଚ, ସିଧା ଆଙ୍ଗୁଳିରେ କେବେହେଲେ ଘିଅ ବାହାରେ ନାହିଁ । ଆଙ୍ଗୁଳିକୁ ଟିକିଏ ବଙ୍କାଇ ଦେଲେ ଘିଅ ପାତ୍ରରୁ ବେଶ୍ ଭଲରେ ବାହାରି ଆସେ । ତୁ ଭଲରେ ଯଦି ନଯାଉ, ତେବେ ଏଇ ତରବାରୀରେ ମୁଁ ତୋର ଗଣ୍ଡିମୁଣ୍ଡ ପୃଥକ୍ କରିଦେବି ।"

ରାବଣର କ୍ରୋଧ ଲକ୍ଷ୍ୟ କରି ମନେ ମନେ ଭାବିଲା ମାରୀଚ—"ଏ ଅଧମର ବୁଦ୍ଧି ବିଣା ହୋଇଗଲାଣି । ଯା' ମୁଣ୍ଡ ଉପରେ କାଳସର୍ପଣ ଉଡ଼ିଲେଣି । ଏ' କେବେହେଲେ ମୋ, ଉପଦେଶ ମାନିବ ନାହିଁ । ହେଉ, ଯଦି ମରିବି, ତେବେ ଏ ପାପୀ ହସ୍ତରେ ମଲେ ଲାଭ କ'ଣ ? ବରଂ ଶ୍ରୀରାମଙ୍କ ଶରଘାତରେ ପ୍ରାଣ ଦେଲେ ଗୋଲୋକଧାମରେ ଠାବ ମିଳିବ !

ରାବଣକୁ ତର ସହିଲା ନାହିଁ । ସେ ଗର୍ଜି ଉଠି କହିଲା—"ମୋ' କଥା ମାନି ଭଲରେ ଚାଲ କହୁଛି, ନଚେତ୍ ବର୍ତ୍ତମାନ ମୁଁ ତୋତେ ଯମପୁରର ଅତିଥି କରାଇଦେବି !"

ରାବଣ ସହିତ ପଞ୍ଚବଟୀକୁ ଯିବାଲାଗି ପ୍ରସ୍ତୁତ ହୋଇ ଯାଇ ମାରୀଚ କହିଲା—"ରାକ୍ଷସରାଜ, ମୁଁ ଆପଣଙ୍କ କଥା ମାନିବାକୁ ବାଧ ହେଉଛି । କାରଣ, ଯମ ଦେବତା ମୋ' ପାଞ୍ଜି ପୋଛି ଦେଇ ସାରିଲାଣି । ମୁଁ ଶ୍ରୀରାମଙ୍କ ଶରରେ ପ୍ରାଣ ହରାଇ ଆପଣଙ୍କ ଆଖି ଆଗରେ ଦିବ୍ୟଧାମର ପଥିକ ହୋଇଯିବି ! ଆପଣ ନିଜ କଲା କର୍ମର ଫଳ ଅବଶ୍ୟ ଭୋଗିବେ···! ହେଉ····· ଚାଲନ୍ତୁ !"

ରାବଣର ପରାମର୍ଶ ଅନୁସାରେ ମାରୀଚ ଗୋଟିଏ ସ୍ୱର୍ଣ୍ଣମୃଗ ସାଜି ପଞ୍ଚବଟୀର ପନ୍ଥକୁଡ଼ିଆ ଆଗରେ ଧାଇଁବାକୁ ଲାଗିଲା । ସୀତାଦେବୀ ହରିଣଟିକୁ ଦେଖି ଅତ୍ୟନ୍ତ ଉଲ୍ଲସିତା ହୋଇ ଉଠିଲେ । ସେ ଶ୍ରୀରାମଙ୍କୁ ଅତ୍ୟନ୍ତ ସ୍ନେହପୂର୍ଣ୍ଣ ବାଣୀରେ କହିଲେ—"ପ୍ରାଣପ୍ରିୟ, ଦେଖିଲଣି—ଏ' କେଡ଼େ ସୁନ୍ଦର ମୃଗଟିଏ ଆମ କୁଡ଼ିଆ ପାଖରେ ଡେଇଁ କୁଦି କେତେ ଖେଳ ଲଗାଇଛି । ତା' ଶରୀରଟି ସୁବର୍ଣ୍ଣ, ଶିଙ୍ଗ ବୈଡୂର୍ଯ୍ୟମଣି

ଏବଂ ଫୁଲଗୁଡ଼ିକ ନୀଳାରେ ଗଠିତ ହୋଇଥିଲା ପରି ମନେ ହେଉଛି । ଏପରି ହରିଣଟିଏ ମୁଁ ପାଇଲେ ଖୁବ୍ ଆନନ୍ଦରେ ତା’ ସହିତ ଖେଳନ୍ତି । ବନବାସ ଶେଷ ହୋଇଯିବା ପରେ ମୁଁ ଏଇ ମୃଗଟିକୁ ନେଇ ଅଯୋଧ୍ୟାକୁ ଯିବି । ସେଠାରେ ଏ’ ମୃଗକୁ ଦେଖିଲେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଯିବେ । ମୁଁ ଏହାକୁ ମୋ’ ଶାଶୁ କୌଶଲ୍ୟା ଦେବୀଙ୍କୁ ଉପହାର ଦେବି ।’ ମାଆ ଏଇଟିକୁ ପାଇଲେ ଖୁବ୍ ଖୁସି ହେବେ । ଯଦି କୌଣସି ମତେ ଏହାକୁ ଜୀବନ୍ତ ଧରି ଆଣି ନପାରି, ତେବେ ତାକୁ ମାରିକରି ଆଣ । ତା’ ଚମଡ଼ା ଛଡ଼ାଇ ମୁଁ ଆସନ ପ୍ରସ୍ତୁତ କରିବି । ଏମିତି ସୁନ୍ଦର ମୃଗଚର୍ମ ମିଳିଲେ, ଆମେ ଦୁହେଁ, ସେଥିରେ ବସି କେତେ ମଜା କରନ୍ତେ । ଶୀଘ୍ର ବାହାରି ପଡ଼.... .. ଯାଅନା...... ।”

ସୀତାଙ୍କର ଆଗ୍ରହ ଓ ଔତ୍ସୁକ୍ୟ ଲକ୍ଷ୍ୟ କରି ଶ୍ରୀରାମ ଧନୁଶର ଧରି ବାହାରି ପଡ଼ିଲେ । ଏହି ସମୟରେ ବୁଦ୍ଧିମାନ୍ ଲକ୍ଷ୍ମଣ ତାଙ୍କ ପଛକୁଡ଼ଆରୁ ବାହାରି ଆସି ବିସ୍ମିତ ହୋଇ କହିଲେ—“ରାଘବ, ଏ’ ମୃଗଟିକୁ ଦେଖି ମୋ’ ମନରେ ନାନା-ପ୍ରକାର ସନ୍ଦେହ ଉଙ୍କି ମାରୁଛି । ଆମେ ଏତେ ଶାସ୍ତ୍ର, ପୁରାଣ ପଢ଼ିଲେ, କେଉଁଠି ହେଲେ ସ୍ୱର୍ଣ୍ଣମୃଗର କାହାଣୀ ପଢ଼ିଛନ୍ତି କି ? ଆମେ ଦୀର୍ଘ ବାରବର୍ଷ କାଳ ଜବଡ଼ ଅରଣ୍ୟ ମଧ୍ୟରେ ବୁଲିଛୁ, କେତେ ପ୍ରକାରର ମୃଗ ଓ ମୃଗୁଣୀ ଦେଖିଛୁ, କିନ୍ତୁ କାହିଁ ଏପରି ଗୋଟିଏ ହେଲେ ହରିଣ ଆମ ଆଖିରେ କେଉଁଠି ହେଲେ ପଡ଼ିନାହିଁ ତ ? ମୋର ମନେ ହେଉଛି—ଏ ମାରୀଚ ରାକ୍ଷସ । ମୁଁ ମୁନିମାନଙ୍କ ପାଖରୁ ଶୁଣିଛି, ସେ ମୃଗ ରୂପରେ ବିଚରଣ କରି ବେଳକାଳ ଉଣ୍ଡି ମୁନିମାନଙ୍କୁ ଅସହାୟ ଅବସ୍ଥାରେ ବଧ କରି ଖାଏ । ସେ ନିଶ୍ଚିତ ଭାବରେ କୌଣସି ମନ୍ଦ ଉଦ୍ଦେଶ୍ୟରେ ସୁବର୍ଣ୍ଣ ମୃଗ ରୂପ ଧାରଣ କରି ଆମକୁ ବିଭ୍ରାନ୍ତ କରିବାକୁ ଆସିଛି । ଆପଣ ଦେବୀଙ୍କ କଥାରେ ପଡ଼ି ଏ’ ମୃଗ ପଛରେ ଧନୁଶର ଧରି ଦୌଡ଼ିବାକୁ ଆଦୌ ଚିନ୍ତା କରନ୍ତୁ ନାହିଁ । ଏ’ କେବଳ ହେଲେ ଗୋଟିଏ ବନ୍ୟ ପ୍ରାଣୀ ନୁହେଁ । ଏ’ ନିଶ୍ଚିତ ଭାବରେ ଗୋଟେ ମାୟାବୀ ରାକ୍ଷସ !”

ଲକ୍ଷ୍ମଣଙ୍କ ପ୍ରତିବାଦ ସୂଚକ ବାକ୍ୟ ଶୁଣି ଶ୍ରୀରାମ କହିଲେ—“ବୈଦେହୀ ଏହି ମୃଗୁଣୀକୁ ପାଇବା ପାଇଁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଛି । ତା’ପାଇଁ ଯଦି ମୁଁ ଏତିକ କାମ କରି ନ ପାରେ, ତେବେ ସେ ଖୁବ୍ ମନଦୁଃଖ କରିବ, ବିଶେଷ କିଛି ଚିନ୍ତା କରିବାର ନାହିଁ । ଯଦି ସେ ରାକ୍ଷସ ହୋଇଥାଏ, ତେବେ ସେ ତା’ର କର୍ମଫଳ ଭୋଗ କରିବ । କୋହିଲେ ସେ ମୃଗ ଚର୍ମଟି ପାଇଲେ ଜାନକୀ ଖୁବ୍ ଖୁସିହେବ । ହଁ, ଦେଖ—ମୁଁ ଏହି ମୃଗକୁ କୌଣସି ମତେ ମାରିବାକୁ ଯାଉଛି, ତୁ ସୀତାଙ୍କୁ ରକ୍ଷା କରିବୁ । ହୁଏତ ମୁଁ ମୃଗଟାକୁ ଜୀବନ୍ତ ଧରି ଆଣି ପାରିବି, ନଇଲେ ମୋ’ ବାଣ

କବଳକୁ ସେ କୌଣସି ମତେ ପ୍ରାଣରକ୍ଷା କରି ପାରିବ ନାହିଁ । ମୋ' ଫେରିବା ପର୍ଯ୍ୟନ୍ତ, ତୁ କେଉଁଆଡ଼େ ନ ଯାଇ ସୀତାଙ୍କ ସୁରକ୍ଷାରେ ନିଯୁକ୍ତ ହୋଇ ଯାଆ ।"

ଏତକ କହି ଶ୍ରୀରାମଚନ୍ଦ୍ର ଧନୁଶର ଧରି ମୃଗ ପଛେ ପଛେ ଧାଇଁବାକୁ ଲାଗିଲେ । ସେ ମନେ ମନେ ଭାବିଲେ—'ବିଚାରି ସୁକୁମାରୀ ରାଜକୁମାରୀ ନିଜ ସୁଖ ଭୋଗକୁ ଜଳାଞ୍ଜଳି ଦେଇ, ମୋ' ସହିତ ବନକୁ ଆସି ମହା କଷ୍ଟଭୋଗ କରୁଥିଲେ ମଧ ହସି ହସି ସବୁ ସହି ଯାଉଛି । ଏବେ କେବେ କୌଣସି ଅଭିଯୋଗ କିମ୍ବା ଅସନ୍ତୋଷ ପ୍ରକାଶ କରି ନାହିଁ । ଯଦି ତା'ର ଏଇ ସାମାନ୍ୟ ଇଚ୍ଛାଟିକୁ ମୁଁ ପୂରଣ ନକରେ, ତେବେ ତା' ପ୍ରାଣରେ ଭୀଷଣ ଆଘାତ ଲାଗିବ ।" ଏହା ଚିନ୍ତାକରି ପ୍ରଭୁ ରାମଚନ୍ଦ୍ର ମାରୀଚକୁ ମୁକ୍ତ ଦେବା ଇଚ୍ଛାରେ ତା' ପଛେ ପଛେ ଧାଇଁବାକୁ ଲାଗିଲେ ।

ମାରୀଚ ତାଡ଼କା ବଧ ଦିନଠାରୁ ଶ୍ରୀରାମଙ୍କୁ ପ୍ରାଣଭୟ କରୁଥିଲା । ତେଣୁ ସେ ପ୍ରତି ମୁହୂର୍ତ୍ତିରେ ଶ୍ରୀରାମଙ୍କ ନାମ ଅଜ୍ଞାତସାରରେ ଜପ କରିବାରେ ଲାଗିଥିଲା । ସେହି ଦୃଷ୍ଟିରୁ ସେ 'ରାମଭକ୍ତ' ପାଲଟି ଯାଇଥିଲା । ପ୍ରଭୁ ଭକ୍ତକୁ ଉଦ୍ଧାର କରିବା କାମନାରେ ତା' ପଛେ ପଛେ ଧାଇଁବାକୁ ଲାଗିଲେ । ଭକ୍ତ ମଧ ଚାହୁଁଥିଲା—କିଛି ବାଟ ପ୍ରଭୁଙ୍କୁ ଦୌଡ଼ାଇବା ପାଇଁ । ତା'ଫଳରେ ସେ ଜୀବନର ଶେଷ ମୁହୂର୍ତ୍ତିରେ କିଛି ସମୟ ପ୍ରଭୁଙ୍କ ନାମ ସ୍ମରଣର ସୁଯୋଗ ପାଇପାରିବ । ସେଇଥିପାଇଁ ପ୍ରଭୁ ଓ ଭକ୍ତଙ୍କ ମଧ୍ୟରେ କିଛି ସମୟ ଧରି ବେଶ୍ ଧାଁ'ଦଉଡ଼ ଲାଗିଲା ।

ସୂତ ମହର୍ଷି ଆଲୋଚନା ପ୍ରସଙ୍ଗରେ କହିଲେ—"ହେ ମୁନିଗଣ, ଶ୍ରୀରାମ ଜାଣିଶୁଣି ସୀତାଙ୍କ ଆଗ୍ରହ ରକ୍ଷା କରିବା ପାଇଁ ଧନୁଶର ଧରି ହରିଣର ପଛେ ପଛେ ଧାଇଁଥିଲେ । କାରଣ ସେ ଚାହୁଁଥିଲେ—ସୀତାଙ୍କ ସହିତ ଏକାନ୍ତ ମିଳନ । ପ୍ରକୃତ ସୀତାଙ୍କୁ ସେ ହୃଦୟର ଅନ୍ତରତମ ପ୍ରଦେଶରେ ଲୁଚାଇ ରଖି ସେ ମାୟା ସୀତାର ଅନୁରୋଧ ରକ୍ଷା ଛଳରେ ଲୀଳା ବିସ୍ତାର କରିଥିଲେ । ସେ ମାୟାମୃଗ ପଛରେ ଧାଇଁବା ଗୋଟିଏ ଉପଲକ୍ଷ୍ୟ ମାତ୍ର । ପ୍ରକୃତରେ ସେ ଭକ୍ତକୁ ଉଦ୍ଧାର କରିବା ଓ ସୀତାଙ୍କୁ ଏକାନ୍ତରେ ହୃଦୟ ମଧ୍ୟରେ ରଖି ତାଙ୍କ ସହିତ ଏକାନ୍ତରେ କ୍ରୀଡ଼ା କରିବା ପାଇଁ ଲୋକ ଦେଖାଣିଆକୁ ବ୍ୟତିବ୍ୟସ୍ତ ହୋଇ ମୃଗ ପଛରେ ଅନୁଧାବନ କରିଥିଲେ ।"

ମାୟାମୃଗ ଶ୍ରୀରାମଙ୍କୁ ଦେଖି କ୍ଷଣକ ମଧ୍ୟରେ କେଉଁଆଡ଼େ ଅଦୃଶ୍ୟ ହୋଇଗଲା । ପୁଣି କିଛିକ୍ଷଣ ପରେ ସେ ନିଜ ସ୍ୱରୂପ ଦେଖାଇ ଧାଇଁବାକୁ ଲାଗିଲା । ମୃଗର ଗତିରୁ ମନେ ହେଉଥିଲା, ସେ ପ୍ରଭୁଙ୍କ ସହିତ ମିଛିମିଛିକା ଖେଳ ଖେଳି ଚାଲିଛି । ସେ ପ୍ରଭୁଙ୍କ ଅନୁଗ୍ରହ ପାଇବା ପାଇଁ ସମସ୍ତ ପ୍ରକାର ଚେଷ୍ଟା କରିବାରେ

ଲାଗିଛୁ । ତେଣୁ ସେ ବଦ୍ୟାନ୍ତ ବେଗରେ ପ୍ରଭୁଙ୍କ ଦୃଷ୍ଟିପଥରୁ ଆଡ଼େଇ ଯାଇ, ପୁଣି ଘଡ଼ିକ ପରେ ତାଙ୍କର ଆଗରେ ଡେଇଁ, କ୍ଷୁବ୍ଧ, ବଡ଼ ବଡ଼ ଆଖିରେ ତାଙ୍କ ଆଡ଼କୁ ଗ୍ୱହିଁ କୃପାଭିକ୍ଷା କରିବା ସଙ୍ଗେ ସଙ୍ଗେ ନିଜର ମୋକ୍ଷପଥକୁ କଣ୍ଟକମୁକ୍ତ କରୁଛି ।

ପ୍ରଭୁ ଓ ଭକ୍ତ ଉଭୟେ ଦୌଡ଼ ଦୌଡ଼ି ଥକି ପଡ଼ିଲେ । ଶେଷରେ ପ୍ରଭୁ ବିଗ୍ୱର କଲେ—ଗ୍ୱଡ଼, ଆଉ ଧାଇଁ ହେବ ନାହିଁ । ଏଥର ଭକ୍ତର ମନୋବାଞ୍ଛା ପୂରଣ କରିବାକୁ ହିଁ ହେବ । ଏହା ଭାବି ପ୍ରଭୁ ନବଦୂର୍ବାଦଳ ପରିଶୋଭିତ ଏକ ପ୍ରାନ୍ତର ଉପରେ ବସିପଡ଼ିଲେ ଏବଂ ମାୟାମୃଗ ମଧ୍ୟ ସେହିଠାରେ, ଟିକିଏ ଆଡ଼ୁଆଳରେ ଛିଡ଼ାହୋଇ ଘାସ ଚରିବାକୁ ଲଗିଲା ।

ଶ୍ରୀ ସୂତ ମହର୍ଷି କହିଲେ—"ହେ ମୁନିଗଣ, ଶ୍ରୀରାମଙ୍କ ଭକ୍ତବତ୍ସଳତାକୁ ଲକ୍ଷ୍ୟ କରନ୍ତୁ ! ନିଜର ଅଜ୍ଞାତସାରରେ ଅର୍ଥାତ୍ କେବଳ ପ୍ରାଣଭୟରେ ଯେଉଁ ରାକ୍ଷସ ମାରୀଚ ତାଙ୍କ ନାମକୁ ପ୍ରତିଦିନ ରଟୁଥିଲା, ତାକୁ ମଧ୍ୟ ସେ ମୋକ୍ଷ ଗତି ଦେବାଲାଗି ବ୍ୟାକୁଳ ହୋଇ ଉଠିଲେ । ପ୍ରଭୁ ତାକୁ ଭକ୍ତ ରୂପେ ଗ୍ରହଣ କରିନେଇ, ନିଜକୁ ସମ୍ପୂର୍ଣ୍ଣ ଭାବରେ ତା'ର ଅଧୀନ କରାଇ ଦେଲେ । ଭକ୍ତବତ୍ସଳ ପ୍ରଭୁଙ୍କଠାରୁ ଏହା ବ୍ୟତୀତ ଆଉ ଅଧିକ ଅନୁଗ୍ରହ କ'ଣ ଆଶା କରାଯାଏ । ଶେଷକୁ ପ୍ରଭୁ ମାରୀଚର ଉଦ୍ଧାର ଲାଗି ପ୍ରସ୍ତୁତ ହୋଇଗଲେ ।

## ଛପ୍ପୟ

"ନିରଖି ବହୁତ ଅପମାନ ରକ୍ତଖୌଲେ ତହୁଁ ତେରୋ ।
ରାବଣ ବୋଲେୟା ବହିନ ! ନିରାଦର ହ୍ୱୈ ଜିହି ମେରୋ ।।
ଛଲ ବଲ ତେଁ ତନି ମାରି ନାରି ଜନକୀ ଲୈ ଆଉଁ ।
ମୃଗ ବନାଇ ମାରୀଚ ତହୁଁ ହୌ ଅବଇ ଜାଉଁ ।।
ତବ ରାବଣ ତେ କନକ କୋ ବନି ମାରୀଚ ମୃଗ ଚଲି ଦୟୋ ।
ପଂଚବଟୀ ଢିଂଗ ଫିରହି ଖଲ, ସୀତାକୋ ବସ୍ତୁ ଭୟୋ ।।"



# ମାରୀଚ ଉଦ୍ଧାର

"ସୀତା କଥା ଶ୍ରବଣଦୀପିତହୃଚ୍ଛୟେନ୍
ସୃଷ୍ଟଂ ବିଲୋକ୍ୟ ନୃପତେ ଦଶକନ୍ଧରେଣ ।
ଜଘ୍ନେଽଦ୍ଭୁତୈଣବପୁଷାଽଽଶ୍ରମତୋଽପକୃଷ୍ଟୋ
ମାରୀଚ ମାଶୁ ବିଶିଖେନ ଯଥା କମୁଗ୍ରଃ ॥

(ଶ୍ରୀ ଭା ୯ସ୍କନ୍ଧ, ୧୦ଅ, ୧୦ଶ୍ଳୋକ)

## ଛପ୍ପୟ

ବୋଲ ପତି ତୈଂ କପଟି ହରିନ ଜିହ୍ନ ଅଦ୍ଭୁତ ପ୍ରିୟତମ ।
ପକରୋ ଜାକୁଁ ଖେଲ କରେୟା କରି ହୈଂ ମିଲ ହମତୁମ ॥
ସୀତା କୁଁ ସୁଖ ଦୈନ ଚଲେ ଶର ଧନୁ ଲୈ ରଘୁବର ।
ଅତି ଉତ୍ସୁକତା ବଢ଼ୀ କନକମୃଗ କୋ ହିତ ହରି ଉର ॥
ଧନୁଧାରୀ ରଘୁନାଥ କୁଁ, ଲଖି ପିଛେ ଝପେୟା ଅସୁର ।
ମାରହୁଁ ନହୁଁ ପକରେୟା ଚହେଂ, ସୋଚହୁଁ ପ୍ରଭୁ ମୃଗ ଅତି ସୁନ୍ଦର ॥

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ପରିକ୍ଷିତ, ସୀତାଙ୍କ ଭୁବନ-ମୋହନ ସୌନ୍ଦର୍ଯ୍ୟର ପ୍ରଶଂସା ଶୁଣି, କାମାତୁର ରାବଣ ମାରୀଚକୁ ମାୟାମୃଗରେ ପରିଣତ କରାଇ ପଞ୍ଚବଟୀକୁ ପଠାଇଲା । ସେ ଶ୍ରୀରାମଙ୍କୁ ପ୍ରଲୁବ୍ଧ କରାଇ ପର୍ଣ୍ଣକୁଟୀର-ଠାରୁ ଦୂରକୁ ନେଇଗଲା । ବୀରଭଦ୍ର ଅଭିମାନୀ ଦକ୍ଷପ୍ରଜାପତିଙ୍କୁ ଯେପରି-

ଏକାଥରକେ ମାତ୍ର ଦେଇଥିଲେ, ଠିକ୍ ସେହିପରି ଶ୍ରୀରାମ ଏକବାଣରେ ମାରୀଚକୁ ବଧ କରିଥିଲେ ।"

ଶ୍ରୀରାମଙ୍କ ପ୍ରତ୍ୟେକ କାର୍ଯ୍ୟ ଜଗତର ଉଦ୍ଧାର ଲାଗି ଅଭିପ୍ରେତ । ତାଙ୍କର ସ୍ନେହ, କ୍ରୋଧ, ସ୍ପର୍ଶ, ଚିନ୍ତନ, ମନନ ତଥା ଆଶ୍ୱାସନ ସକଳ ମୁକ୍ତିପ୍ରଦ । ଶ୍ରୀରାମଙ୍କ କାହାଣୀ ଗଙ୍ଗାତୁଲ୍ୟ ପବିତ୍ର । ସେଥିରେ ଅବଗାହନ କଲେ ପାପରୁ ମୁକ୍ତି ମିଳେ । ତାହା ପାନ କଲେ ସାଂସାରିକ ତୃଷ୍ଣା ଦୂର ହୋଇଯାଏ । ତାହାକୁ ସ୍ପର୍ଶ କଲେ ସୁଖପ୍ରାପ୍ତି ହୁଏ ଏବଂ ଦର୍ଶନରେ ଆନନ୍ଦ ଲାଭ ହୋଇଥାଏ । ଶ୍ରୀରାମଙ୍କ ସହିତ କାମ, କ୍ରୋଧ, ଦ୍ୱେଷ, ଲୋଭ ତଥା ପ୍ରେମରେ ଯାହାଙ୍କର ସମ୍ପର୍କ ସ୍ଥାପିତ ହୁଏ, ତାହାକୁ ମୁକ୍ତି ମିଳିଥାଏ । ଯେଉଁ ଅସୁରମାନେ ଶ୍ରୀରାମଙ୍କ ବାଣର ଆଘାତରେ ଅର୍ଦ୍ଧମୃତ ହୋଇ ମଧ୍ୟ ତାଙ୍କ ନାମକୁ ଉଚ୍ଚାରଣ କରନ୍ତି, ସେମାନଙ୍କ ଜୀବନ ଧନ୍ୟ ! ସେହିପରି ଅନନ୍ତଚିନ୍ମୟ ସୌଭାଗ୍ୟର ଅଧିକାରୀ ହୋଇଥିଲେ—ମାରୀଚ ।

ଶ୍ରୀ ସୂତ ମହର୍ଷି କହୁଛନ୍ତି—"ହେ ମୁନିଗଣ, ମାରୀଚ ମାୟାମୃଗ ହୋଇ ଜାନକୀ ଦେବୀଙ୍କ ପ୍ରାଣପ୍ରିୟ ରାମଙ୍କୁ ଠକାଇବାକୁ ଚାହୁଁଥିଲା । ସେ ତାଙ୍କୁ ଠକିଦେବା ଲାଗି ଲୁଚିଛପି ବଣବୁଦା ମଧ୍ୟରେ ଧାଇଁବାକୁ ଲାଗିଲା । ଏହିପରି ଛଳକପଟ ମଧ୍ୟରେ ଲୀଳାପୁରୁଷ ଶ୍ରୀରାମ ଧନୁଧାରଣ କରି ଆଶ୍ରମଠାରୁ ଅନେକ ଦୂରକୁ ଆଗେଇ ଗଲେ । ଶ୍ରୀରାମ କୌତୁକୁ ଥକାଯାଇ ମାୟାମୃଗକୁ ଲକ୍ଷ୍ୟ କରି ତାଙ୍କର ଅବ୍ୟର୍ଥ ଶର ପ୍ରୟୋଗ କରିଦେଲେ । ଅସୁର ଆଉ ଅଧିକ କାଳ ନିଜକୁ ଗୋପନ କରି ପାରିଲା ନାହିଁ । ସେ ମୃଗରୂପ ତ୍ୟାଗ କରି, ନିଜ ରୂପ ଧାରଣ କରି ବନ ମଧ୍ୟରେ ପଡ଼ିଗଲା । ତା'ପରେ ମାରୀଚ ଉଚ୍ଚସ୍ୱରରେ "ହା - ସୀତେ ! ହା - ଲକ୍ଷ୍ମଣ" ବୋଲି ଅବିକଳ ଶ୍ରୀରାମଙ୍କ କଣ୍ଠସ୍ୱରର ଅନୁକରଣରେ ଡାକ ଛାଡ଼ିଲା । ସେହି ସ୍ୱର ନିର୍ଜନ ବନ ମଧ୍ୟରେ ଗୁଞ୍ଜରିତ ହୋଇ ଉଠିଲା । ସେ ନିଜର ଦୃଷ୍ଟି ଶ୍ରୀରାମଙ୍କ ଶ୍ରୀଚରଣରେ ନିବଦ୍ଧ ରଖି ତାଙ୍କର ଚିନ୍ମୟ ସ୍ୱରୂପକୁ ଧ୍ୟାନ କରି ପ୍ରାଣତ୍ୟାଗ କଲା ।

ଶ୍ରୀରାମ ମାରୀଚକୁ ଦେଖିବା ମାତ୍ରେ ଲକ୍ଷ୍ମଣର ଉପଦେଶକୁ ମନେ ପକାଇଲେ । ସେ ଆହୁରି ମଧ୍ୟ ଭାବିଲେ—"ଏ ରାକ୍ଷସ କୌଣସି ମନ୍ଦ ଉଦ୍ଦେଶ୍ୟରେ ଅବିକଳ ମୋର କଣ୍ଠସ୍ୱରର ଅନୁକରଣରେ ଆର୍ତ୍ତଚିତ୍କାର କରିଛି । ଏ ସ୍ୱର ଶୁଣିଲେ ସୁକୁମାରୀ ସୀତାଙ୍କର ଅବସ୍ଥା କ'ଣ ହେବ ? ସେ ନିଶ୍ଚିତ ଭାବରେ ମୋର ଆର୍ତ୍ତ-ଚିତ୍କାର ଶୁଣି ଭୟରେ ବିହ୍ୱଳିତା ହୋଇଯାଇଥିବ ! ସେ ନିଜର ହିତାହିତ ଜ୍ଞାନ ହରାଇ ମୋର ଅନୁସନ୍ଧାନରେ ଲକ୍ଷ୍ମଣଙ୍କୁ ନିଶ୍ଚୟ ପଠାଇବ । ଯଦି ଲକ୍ଷ୍ମଣ ଭ୍ରାତୃ ସ୍ନେହରେ ସୀତାଙ୍କ ପରି ବିହ୍ୱଳ ହୋଇ ଯାଇ, ପର୍ଣ୍ଣକୁଟୀର ଛାଡ଼ି ବନକୁ ଧାଇଁ ଆସେ, ସୀତାଙ୍କ ଅବସ୍ଥା କ'ଣ ହେବ ?"

ଏଭଳି ଧାରଣା ତାଙ୍କ ମନରେ ଜାତ ହେବା କ୍ଷଣି ଶ୍ରୀରାମ ନିତାନ୍ତ ଉଦାସ ହୋଇଗଲେ ଏବଂ ଯଥାଶୀଘ୍ର ସମ୍ଭବ, ସେ ଆଶ୍ରମ ଆଡ଼କୁ ଧାଇଁବାକୁ ଲାଗିଲେ । ବାଟରେ ସେ ଗୋଟିଏ ସୁନ୍ଦର ମୃଗକୁ ଶିକାର କରି ସାଙ୍ଗରେ ନେଇ ଆଗେଇ ଚାଲିଲେ ।

ଶ୍ରୀରାମଙ୍କ ଆର୍ତ୍ତ ଚିତ୍କାର ଶୁଣିବାମାତ୍ରେ ସୀତା ଦେବୀ ପାଗଳୀ ହୋଇ ଉଠିଲେ । ସେ ବ୍ୟାକୁଳରେ ଲକ୍ଷ୍ମଣଙ୍କୁ ଚାହିଁ କହିଲେ—"ଲକ୍ଷ୍ମଣ, ଶୁଣିଲ ଟିକି ଏ' ଆର୍ତ୍ତଚିତ୍କାର ? ଏହା ତୁମ ଭାଇଙ୍କ କଣ୍ଠସ୍ୱର ବ୍ୟତୀତ ଆଉ କାହାରି ହୋଇ ନ ପାରେ ! ତୁମ ନାମ ଧରି ଚିତ୍କାର କରୁଛନ୍ତି ଏବଂ ମୋ'ନାମ ଧରି କ୍ରନ୍ଦନ କରୁଛନ୍ତି । ତୁମେ ତିଳେମାତ୍ର ବିଳମ୍ବ ନ କରି ଶୀଘ୍ର ଭାଇଙ୍କୁ ସାହାଯ୍ୟ କରିବା ପାଇଁ ଧାଇଁ ଯାଅ ।"

ବୀର ଲକ୍ଷ୍ମଣ ଅତ୍ୟନ୍ତ ନମ୍ରତାର ସହିତ କହିଲେ—"ଦେବି, ତୁମେ ଆଦୌ ଚିନ୍ତା କର ନାହିଁ । ଏହି ବିଶ୍ୱବ୍ରହ୍ମାଣ୍ଡରେ ଶ୍ରୀରାମଙ୍କୁ ଆଘାତ କରିବା ଭଳି କୌଣସି ଶକ୍ତି ନାହିଁ । ସମସ୍ତ ଲୋକପାଳ ଏକତ୍ରିତ ହେଲେ ମଧ୍ୟ ଶ୍ରୀରାମଙ୍କ ସମ୍ମୁଖରେ ତିଷ୍ଠି ପାରିବେ ନାହିଁ !"

ସୀତା ଅତ୍ୟନ୍ତ ଦୁଃଖରେ ମ୍ରିୟମାଣା ହୋଇ ଯାଇ ସମ୍ଭ୍ରମର ସହିତ କହିଲେ—"ପ୍ରଭୁ ଅତ୍ୟନ୍ତ କରୁଣ ସ୍ୱରରେ ତୁମ ନାମ ଧରି ଡାକିଲେ, ଅଥଚ ତୁମେ ଏପରି ଖାମ୍‌ଖିଆଲି ଭାବରେ ମୋତେ ଭୁଲାଇବାକୁ ଚେଷ୍ଟା କରୁଛ ।"

"ଦେବି, ମୁଁ ସେ ଶବ୍ଦ ସ୍ପଷ୍ଟଭାବରେ ଶୁଣି ପାରିଛି । କିନ୍ତୁ ନିଶ୍ଚିତ ଭାବରେ ମୁଁ ଜାଣେ, ତାହା ଶ୍ରୀରାମଙ୍କ କଣ୍ଠସ୍ୱର ଆଦୌ ନୁହେ । ରାକ୍ଷସମାନେ ମାୟାବୀ, ସେମାନେ ସବୁ କିଛି କରି ପାରନ୍ତି !"

ଜାନକୀ କ୍ରୋଧରେ ଅସ୍ଥିର ହୋଇ ଉଠିଲେ । ସେ ଉତ୍ତେଜିତ ସ୍ୱରରେ କହିଲେ—"ତୁମକୁ କେବଳ ସାରାବଣ ମଧ୍ୟରେ କେବଳ ରାକ୍ଷସ ହିଁ ଦେଖା ଯାଉଛନ୍ତି । ତୁମ ଭାଇଙ୍କର ଯଦି କିଛି ଅନିଷ୍ଟ ହୋଇଥାଏ, ତେବେ···?"

ବୀର ଲକ୍ଷ୍ମଣ କହିଲେ—"ଦେବି, ମୁଁ ଦୃଢ଼ ଭାବରେ କହୁଛି—ଶ୍ରୀରାମଙ୍କର କେହି ଅନିଷ୍ଟ କରି ପାରିବେ ନାହିଁ । ତୁମେ ବୃଥାଟାରେ ଆତଙ୍କିତ ହୁଅ ନାହିଁ ।

ସୀତା ଦେବୀ କାନ୍ଦି କାନ୍ଦି କହିଲେ—"ଲକ୍ଷ୍ମଣ, ମୁଁ ତୁମର ଏ' ମନଭୁଲାଣିଆ କଥା ଶୁଣିବାକୁ ଚାହେଁ ନାହିଁ ! ତୁମେ ଶୀଘ୍ର ବନକୁ ଯାଇ ଭାଇଙ୍କୁ ସାହାଯ୍ୟ କରିବା ପାଇଁ ଚେଷ୍ଟା କର !"

ଲକ୍ଷ୍ମଣ ହାତ ଯୋଡ଼ି ବିନୀତ ଭାବରେ କହିଲେ—ମୁଁ ଶ୍ରୀରାମଙ୍କ ଆଜ୍ଞା ଲଙ୍ଘନ କରି ଏଠାରୁ କିପରି ଯିବି ? ମୋତେ ଏଠାରେ ଜଗି ରହିବା ଲାଗି ସେଇ ଆଦେଶ ଦେଇ ଯାଇ ଅଛନ୍ତି । ତେଣୁ ମୁଁ ତୁମକୁ ଅରକ୍ଷିତ ଅବସ୍ଥାରେ ଛାଡ଼ି ଦେଇ ଯାଇ ପାରିବି ନାହିଁ ।"

ଲକ୍ଷ୍ମଣଙ୍କ ଉତ୍ତର ଶୁଣି କ୍ରୋଧରେ ଜଳିଯାଇ ସୀତା ଦେବୀ କହିଲେ— "ଲକ୍ଷ୍ମଣ, ମୋର ମନେ ହେଉଛି, ତୁମର ଉଦ୍ଦେଶ୍ୟ ଆଦୌ ଭଲ ନୁହେଁ । ମୁଁ ଜାଣେ, ପୁରୁଷମାନେ ନିର୍ଜନ ସ୍ଥାନରେ ଯୁବତୀ ନାରୀଙ୍କୁ ଦେଖିଲେ ଚଞ୍ଚଳ ହୋଇ ଉଠନ୍ତି । ସେମାନଙ୍କର ହିତାହିତ ଜ୍ଞାନ ରହେ ନାହିଁ । କାମାତୁର ମଣିଷ ମାତା, ଭଗିନୀ ଓ ଅନ୍ୟାନ୍ୟ ଗୁରୁଜନଙ୍କୁ ମଧ୍ୟ ଅତ୍ୟନ୍ତ କାମ ଚେଷ୍ଟାର ସହିତ ଲକ୍ଷ୍ୟ କରେ । ମୁଁ ଆଜି ତୋ' ବ୍ୟବହାରରେ ଆଶ୍ଚର୍ଯ୍ୟ ହେଉଛି ଲକ୍ଷ୍ମଣ ! ତୁ ଶ୍ରୀରାମଙ୍କ ପାଇଁ ସବୁ କିଛି ତ୍ୟାଗକରି ଆସିଛୁ ବୋଲି ଅଭିମାନ କରୁଥିଲୁ ନା ? କୁଆଡ଼େ ଗଲା—ତୋର ସେ ଅଭିମାନ ? ଶ୍ରୀରାମ ମହାବିପଦରେ ପଡ଼ି ଆର୍ତ୍ତଚିତ୍କାର କରୁଛନ୍ତି, ତୁ ଏଠାରେ ବସି ମୋତେ ଶୁଖିଲା ଉପଦେଶ ଦେବାକୁ ଲାଗିଛୁ ? ମୁଁ ବେଶ୍ ବୁଝି ପାରୁଛି ତୋର ମନୋଭାବ । ତୋ' ମୁହଁରେ ଟିକିଏ ହେଲେ ଚିନ୍ତାର ଲକ୍ଷଣ ଫୁଟିଉଠୁ ନାହିଁ । ତୁ ଯତରେ କ'ଣ ଶ୍ରୀରାମଙ୍କର ଅନିଷ୍ଟ ଚିନ୍ତା କରୁଛୁ ? ଆଜି ଯାଏଁ ତୁ ଯେଉଁ ଦିରୁ ଭକ୍ତିଭାବ ପ୍ରଦର୍ଶନ କରୁଥିଲୁ, ସବୁ କିଛି କ'ଣ କେବଳ ପ୍ରତାରଣା ବୋଲି ମୁଁ ବୁଝିବି ? ମୋର ଦୃଢ଼ ଧାରଣା ହେଉଛି—ତୁ କୈକେୟୀର ଗୁପ୍ତଚର ହୋଇ ଆମ ସାଥିରେ ବନକୁ ଆସିଛୁ ! ମୁଁ ଏବେ ଭଲ ଭାବରେ ବୁଝି ପାରୁଛି—ମୋ' ଉପରେ ତୋର କୁଦୃଷ୍ଟି ବରାବର ରହି ଆସିଛି । ତୁ ଆଜି ସୁଯୋଗ ଉଣ୍ଡି ତୋ'ମନର କଳୁଷିତ ଚେଷ୍ଟାକୁ ଚରିତାର୍ଥ କରିବାକୁ ବସିଛୁ ! ମନେରଖ ପାପିଷ୍ଠ ଲକ୍ଷ୍ମଣ, ତୋ ଇଚ୍ଛା କେବେହେଲେ ପୂରଣ ହେବ ନାହିଁ । ମୁଁ ଶ୍ରୀ ରଘୁନାଥଙ୍କ ବିନା ଅନ୍ୟ କାହାର ଆଡ଼କୁ ଆଡ଼ ଆଖିରେ ସୁଦ୍ଧା ଚାହିଁବି ନାହିଁ । ତୁ ଯଦି ରଘୁନନ୍ଦନଙ୍କ ସାହାଯ୍ୟ ଲାଗି ବନକୁ ନ ଯାଉ, ତେବେ ମୁଁ ତୋ'ରି ଆଗରେ ଆତ୍ମହତ୍ୟା କରି ଦେବି !"

ସୀତାଙ୍କ ମୁଖରୁ ଏ' ପ୍ରକାର ପ୍ରଳାପ ପୂର୍ଣ୍ଣ କଟୂକ୍ତି ଶୁଣି ଲକ୍ଷ୍ମଣଙ୍କ ଆଖିରୁ ଧାର ଧାର ଲୁହଧାର ଝରି ପଡ଼ିଲା । ସେ ପୁଣିଥରେ ସୀତାଙ୍କୁ ଆଶ୍ବାସନା ଦେଇ କହିଲେ—"ମାଆ, ତୁମେ ଏ' କ'ଣ କହୁଛ ? ରାଜର୍ଷି ଜନକଙ୍କର ପୁତ୍ରୀ, ରାଜଚକ୍ରବର୍ତ୍ତୀ ଦଶରଥଙ୍କ କୁଳବଧୂ ଓ ପୁରାଣ ପୁରୁଷ ଶ୍ରୀରାମଙ୍କ ପତ୍ନୀଙ୍କ ମୁହଁରେ ଏପରି ବଚନ ଆଦୌ ଶୋଭା ପାଏ ନାହିଁ । ତୁମେ ମୋ' ଚରିତ୍ର ଉପରେ ଏପରି ଅହେତୁକ କଳଙ୍କ ଆରୋପଣ କରି ନିଜ ପ୍ରତି ଘୋର ଅନ୍ୟାୟ କରୁଛ !

ଦେବୀ ଜାନକି ! ମୁଁ ତୁମକୁ ମୋ' ଜନ୍ମଦାତ୍ରୀ ମାଆ ସୁମିତ୍ରାଙ୍କଠାରୁ ଅଧିକ ଭକ୍ତି କରେ । ଦେବି ! ମୁଁ ତୁମର ପୁଅ ! ମୋ' ପ୍ରତି ଏପରି ଅନ୍ୟାୟ କର ନାହିଁ ।"

ଜାନକୀ ଲକ୍ଷ୍ମଣଙ୍କର ଅନୁନୟ ବିନୟପୂର୍ଣ୍ଣ ବଚନ ପ୍ରତି ଆଦୌ କର୍ଣ୍ଣପାତ ନ କରି କହିଲେ—"ଲକ୍ଷ୍ମଣ, ମୋତେ ଶ୍ରେଷ୍ଠ ପିଲା ବୋଲି ତୁମେ ଭାବ ନାହିଁ । ମୁଁ ପୁରୁଷମାନଙ୍କୁ ଭଲଭାବରେ ଚହ୍ନିଛି । ସେଇଥିପାଇଁ ମୁଁ ମୋ' ପ୍ରିୟତମଙ୍କଠାରୁ କେବେହେଲେ ପୃଥକ୍ ରହି ନାହିଁ । ପୁରୁଷମାନେ କୁକୁରଙ୍କ ପରି କାମୀ ଓ ମାଙ୍କଡ଼ମାନଙ୍କ ପରି ଚଞ୍ଚଳ ଅଟନ୍ତି । ସେମାନେ ଏକାନ୍ତ ସ୍ଥାନରେ ନାରୀଙ୍କୁ ଦେଖିଲେ ସବୁକିଛି ପାଶୋରି ଦିଅନ୍ତି । ଜନସମାଜର ବନ୍ଧନ ମଧ୍ୟରେ ଏମାନେ ନିଜର ପଶୁ-ପ୍ରବୃତ୍ତିକୁ ଚରିତାର୍ଥ କରିବାର ସୁଯୋଗ ପାଆନ୍ତି ନାହିଁ । ସେମାନେ ଭାବନ୍ତି—ନାରୀ ଅବଳା, ସେ କଅଣ ଅବା କରି ପାରିବ ? ନୋହିଲେ ଆଜି ମୋ' ସ୍ୱାମୀଙ୍କୁ ବିପଦରେ ପଡ଼ିଥିବାର ଜାଣି ମଧ୍ୟ ତୁ ମୋତେ ଉପଦେଶ ଦିଅନ୍ତୁ ନାହିଁ । ତେଣୁ ମୋର ମନେ ହେଉଛି—ଭରତର ଗୁପ୍ତଚର ଏବଂ ତୋ' ମନରେ ପାପ ପୂର୍ଣ୍ଣ ହୋଇ ରହିଛି ।"

ତଥାପି ଲକ୍ଷ୍ମଣ ଧୈର୍ଯ୍ୟ ହରାଇଲେ ନାହିଁ । ସେ ପୁଣି ଥରେ ସୀତାଙ୍କୁ ବିନୟ ବଚନରେ ଶ୍ରୀରାମଙ୍କ ଶୌର୍ଯ୍ୟ ସମ୍ବନ୍ଧରେ ବୁଝାଇଲେ । ତାହାଶୁଣି ସୀତା ଆହୁରି ରାଗିଯାଇ କହିଲେ—"ଲକ୍ଷ୍ମଣ ମୁଁ କହୁଛି—ମୋ' କଥା ମାନି ତୁ ଏହିକ୍ଷଣି ଭାଇଙ୍କୁ ସାହାଯ୍ୟ କରିବା ଲାଗି ଚାଲିଯା । ନଇଲେ ମୁଁ ଜାଣିବି—ତୋ' ମନରେ ପାପ ରହିଛି । ମନେରଖ, ମୁଁ ଜୀବିତାବସ୍ଥାରେ କେବେହେଲେ ତୋତେ ମୋ ଅଙ୍ଗ ଛୁଆଁଇ ଦେବି ନାହିଁ ।

ଏହା ଶୁଣିବା ମାତ୍ରେ ଲକ୍ଷ୍ମଣ ଆଉ ଧୈର୍ଯ୍ୟଧରି ରହିପାରିଲେ ନାହିଁ । ତାଙ୍କ ହୃଦୟ ସୀତାଙ୍କ କଠୋର ବଚନରେ ଛିନ୍ନଭିନ୍ନ ହୋଇଗଲା । ସେ ରାଗରେ ତମତମ ହୋଇ କହିଲେ—"ଦେବି, ଏଇଲାଗେ ତୁମର ବୁଦ୍ଧି ବିପରୀତ ହୋଇ ଯାଇଛି । ତୁମେ ରଘୁ କୁଳର ବଧୂ ନୁହଁ, ଜଣେ ସାମାନ୍ୟ କାମିନୀ । ନଇଲେ ତୁମ ମୁହଁରୁ ଏପରି ଘୃଣିତ ବଚନ ବାହାରନ୍ତା ନାହିଁ । ମୁଁ ଯାଉଛି ! କିନ୍ତୁ ମନେରଖ, ତୁମର ମଙ୍ଗଳ ହେବ ନାହିଁ !! ମୋତେ ଅପମାନିତ କରିବାର ଫଳ ତୁମେ ନିଶ୍ଚୟ ଭୋଗ କରିବ !!!" ଏହା କହି ଲକ୍ଷ୍ମଣ ଧନୁଶର ଧରି କ୍ରୋଧ, ଲଜ୍ଜା, ଉଦ୍‌ବେଗ ତଥା ଚିନ୍ତିତ ମନରେ ଆଶ୍ରମରୁ ବାହାରି ପଡ଼ିଲେ । ସେତେବେଳେ ତାଙ୍କ ହୃଦୟ ଦୁଃଖରେ ଭାରାକ୍ରାନ୍ତ ହୋଇଗଲା । ସେ ପିଲାଦିନଠାରୁ ଶ୍ରୀରାମଙ୍କ ସହିତ ତାଙ୍କ ଅନୁରକ୍ତି ସମ୍ବନ୍ଧରେ ଅନେକ ଚିନ୍ତାକଲେ । ଶେଷରେ ସେ ସୀତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ—"ମାଆ, ମୁଁ ତୁମର କଟୁବଚନରେ ଆହତ ହୋଇ ଆଶ୍ରମ ତ୍ୟାଗ କରି

ଯାଉଛୁ ! ହେ ଦଶଦିଗପାଳ, ତୁମେମାନେ ସାକ୍ଷୀ ଥାଅ, ମୋର କିଛି ଦୋଷ ନାହିଁ । ତୁମେମାନେ ଦେବୀଙ୍କୁ ରକ୍ଷାକର !"

ଲକ୍ଷ୍ମଣ ଚଞ୍ଚଳ ଗତିରେ ଶ୍ରୀରାମଙ୍କ ପଦଚିହ୍ନ ଲକ୍ଷ୍ୟ କରି ଆଗେଇ ଚାଲିଲେ । କିଛିବାଟ ଆଗେଇ ଯିବା ମାତ୍ରେ ଦୂରରୁ ଶ୍ରୀରାମଙ୍କୁ ଆସୁଥିବାର ଦେଖି ସେ ସେହିଠାରେ ଛିଡ଼ା ହୋଇଗଲେ ।

ଶ୍ରୀରାମ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚି ତାଙ୍କୁ ଦୁଃଖ ତଥା ଶଙ୍କାକୁଳ ଚିତ୍ତରେ ବିରକ୍ତିର ସହିତ କହିଲେ—"ଲକ୍ଷ୍ମଣ, ତୁ ଏଡ଼େ ଦାୟିତ୍ୱହୀନ ବୋଲି ମୋର ଧାରଣା ନଥିଲା ! ତୁ ଜାନକୀଙ୍କୁ ଏକୁଟିଆ ଛାଡ଼ିଦେଇ ଆସିଲୁ କିପରି ? ମୁଁ ତୋତେ ବାରମ୍ବାର କହି ଆସିଥିଲି ଯେ, ତୁ ଆଶ୍ରମ ଛାଡ଼ି ପାଦେ ହେଲେ କେଉଁଆଡ଼େ ଯିବୁ ନାହିଁ ! ଅଥଚ ତୁ ମୋ ଆଜ୍ଞା ଲଙ୍ଘନ କରି ଚାଲି ଆସିଲୁ ! ସତେ କ'ଣ ମୋ' ଜାନକୀ କୁଶଳରେ ଥିବ !"

ଶ୍ରୀରାମଙ୍କ କଟୁ ବଚନ ଶୁଣିବା ମାତ୍ରେ ଲକ୍ଷ୍ମଣ କରୁଣ ହୋଇ କାନ୍ଦି ଉଠିଲେ । ଶ୍ରୀରାମ ତାଙ୍କୁ ଆଶ୍ୱାସନା ଦେଇ କାନ୍ଦିବାର କାରଣ ପଚାରନ୍ତେ ସେ ଆହୁରି ଜୋର୍‌ରେ କାନ୍ଦି ଉଠି କହିଲେ—"ଆର୍ଯ୍ୟ, ଆପଣଙ୍କ ଆର୍ତ୍ତଚିତ୍କାର ଶୁଣି, ଦେବୀ ସ୍ନେହବଶରେ ହିତାହିତ ଜ୍ଞାନ ହରାଇ ବସିଲେ । ତାଙ୍କ କଟୂକ୍ତିରେ ଆହତ ହୋଇ ମୁଁ ଅନିଚ୍ଛା ସତ୍ତ୍ୱେ ଆଶ୍ରମ ଛାଡ଼ିଆସିବାକୁ ବାଧ୍ୟ ହେଲି !"

ଲକ୍ଷ୍ମଣଙ୍କ ପିଠି ଆଉଁସି ଦେଇ ରାମଚନ୍ଦ୍ର କହିଲେ - "ଭାଇ ! ନାରୀମାନଙ୍କ କ୍ରୋଧକୁ ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ । ସେମାନେ ବେଳେ ବେଳେ ଘଟଣାର ପରିଣାମ ବିଚାର ନକରି ନିଜ ଜିଦ୍‌ରେ ଅଟଳ ରହନ୍ତି । ତେଣୁ କ୍ରୋଧରେ ଏଣୁତେଣୁ କହିଚାଲିଥିବା ସ୍ତ୍ରୀଲୋକ ଆଗରୁ ଦୂରେଇ ଯିବା ହେଉଛି—ମତିବାନ୍ ଲୋକର କାର୍ଯ୍ୟ !"

ଲକ୍ଷ୍ମଣ ପୂର୍ବପରି ଆଖିରୁ ଲୁହ ଝରାଇ କହିଲେ—"ଭାଇ, ଦେବୀ ଯାହା ମୁହଁରେ ଉଚ୍ଚାରଣ କଲେ, ବସୁଧା ଫାଟି ଦୁଇଫାଳ ହୋଇଯିବ, ସେପ୍ରକାର ଆକ୍ଷେପ-ପୂର୍ଣ୍ଣ ବଚନ କହି ମୋତେ ଧିକ୍‌କାର କରିବା ସଙ୍ଗେ ସଙ୍ଗେ ନିଜେ ଆତ୍ମହତ୍ୟା କରିବେ ବୋଲି ଧମକ ଦେଲେ । ତେଣୁ ମୁଁ ନିରୁପାୟ ହୋଇପଡ଼ିଲି ଭାଇ !"

ଶ୍ରୀରାମ ଅତ୍ୟନ୍ତ ସ୍ନେହର ସହିତ କହିଲେ—"ଲକ୍ଷ୍ମଣ, ତୁ କ'ଣ ମୋ' ଶକ୍ତି ଓ ସାମର୍ଥ୍ୟ ବିଷୟରେ ଅବଗତ ନୋହୁଁ ? ସମଗ୍ର ରାକ୍ଷସକୁଳ ଏକତ୍ରିତ ହୋଇ ମୋ' ବିରୁଦ୍ଧରେ ସଂଗ୍ରାମ କଲେ ମୋର ସେମାନେ ସାମାନ୍ୟ ମାତ୍ର କ୍ଷତି କରିପାରିବେ

କି ? ମାରୀଚ 'ହା ସୀତେ' 'ହା ଲକ୍ଷ୍ମଣ' କହି ଚିତ୍କାର କଲା । ମୋର ମନେ ହେଉଛି—ତା' ପଛରେ କିଛି ଗୁପ୍ତ ଷଡ଼ଯନ୍ତ୍ର ରହିଛି । ନାନାପ୍ରକାର ଅଶୁଭ ସୂଚନା ମିଳୁଛି । ସେଥିରୁ ମୁଁ ଜାଣୁଛି—ଜାନକୀ ଖୁବ୍ ସମ୍ଭବତଃ କିପଦରେ ନାହିଁ ।"

ଏହିପରି ଭାବରେ କଥୋପକଥନ କରି ଦୁଇଭାଇ କ୍ଷିପ୍ର ଗତିରେ ଆଶ୍ରମ ଆଡ଼କୁ ଅଗ୍ରସର ହେଲେ । ଶ୍ରୀରାମଙ୍କ ମନରେ ଅନେକ ଆଶଙ୍କା ଉଙ୍କି ମାରୁଥିଲା ଏବଂ ଲକ୍ଷ୍ମଣ ଲଜ୍ଜା, ଅପମାନ ଓ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଥିଲେ ।

## ଛପ୍ପୟ

"ନହିଁ ଜବ ଆୟୌ ହାଥ ତୀର ତକି ସିୟପତି ମାରେୟା ।
ହା ସୀତା ! ହା ଲଖନ ! ରାମସ୍ୱର ମାଁହି ପୁକାରେୟା ।।
ଲଖି ରଜନୀଚର ରାମ ଭୟେ ବ୍ୟାକୁଲ ଇତ ସୀତା ।
ପଡ଼ି ଆରତ ଶ୍ରୁନ ଶବ୍ଦ ଭଇ ଭାମିନୀ ଭୟଭୀତା ।।
ପଗ ପଗ ପୈ ପ୍ରିୟ ପ୍ରେମ ମହିଁ, ଅନହିତ ଆଶଙ୍କା ରହିତ ।
ବଚନ କହେ କଛୁ କଟୁ କୁମରି, ଦାସ ଲଖନ ସିର ଧୁନ ରହିତ ।।



# ବୈଦେହୀ ହରଣ

"ରକ୍ଷୋଽଧମେନ ବୃକବଦ୍ ବିପିନେଽସମକ୍ଷମ୍
ବୈଦେହରାଜ ଦୁହିତର୍ଯ୍ୟପୟାପିତାୟାମ୍ ।
ଭ୍ରାତ୍ରା ବନେ କୃପଣବତ୍ ପ୍ରିୟୟା ବିଭୁକ୍ତଃ
ସ୍ତ୍ରୀ ସଙ୍ଗିନୀ ଗତମିତି ପ୍ରଥୟଂଶ୍ଚଚାର ।

(ଶ୍ରୀ-ଭାଗ ୯, ସ୍କ ୧୦,ଅ ୧୧ ଶ୍ଲୋ)

## ଛପ୍ପୟ

"ବୋଲେ ଲକ୍ଷ୍ମନ ଛିଦ୍ର୍ୟାଚରତ ମତ ମାତୁ ଦଖାଓ ।
କହେଂ ଜାନକୀ ମରୁଁ ରାମ ଢିଂଗ ଯଦ ନହିଁ ଜାଓ ।।
ଲଖନ ଦୁଖିତ ହ୍ୱୈ ଚଲେ ଦଶାନନ ତବ ତହଁ ଆୟୋ ।
ସାଧୁ ସମୃଦ୍ଧିକେଂ ସୀୟ ସହମି ସାଦର ବୈଠାୟୋ ।।
ଦୁଷ୍ଟ ସୀୟ ଲୈ ଚଲ ଦୟୋ, ଧେନୁ ବଧିକ ଫଁଦେ ପରୀ ।
ଦୁଖିତ ଗୀଧ ସ୍ୱର ସୁନ ଭୟୋ, ଜାନ ଦଶାନନ ସିୟ ହରୀ ।।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍, ଏଣେ ରାକ୍ଷସାଧମ ରାବଣ ସୀତାଙ୍କୁ ଅପହରଣ କରି ନେଲା । ସାଧୁରେ ସ୍ତ୍ରୀ ସଙ୍ଗିନୀ ହୋଇ ରହିଲେ ଏପରି ଅବସ୍ଥା ହୋଇଥାଏ । ଏହି ଘଟଣାକୁ ପ୍ରତ୍ୟକ୍ଷରେ ଦେଖାଇବା ପାଇଁ ଶ୍ରୀରାମ ପ୍ରିୟତମାଙ୍କ ଦ୍ୱାରା ବିଯୁକ୍ତ ହୋଇ ଭାଇ ଲକ୍ଷ୍ମଣ ସହିତ ଦୀନ ଅବସ୍ଥାର ପ୍ରଦର୍ଶନ ପୂର୍ବକ ବନ ମଧ୍ୟରେ ବିଚରଣ କରିଥିଲେ ।

ପ୍ରେମ ହେଉଛି—ଗୋଟିଏ ଅମୃତମୟ ଦିବ୍ୟତରୁ । ଅନୁରାଗ ହେଉଛି—ତା'ର ମୂଳ, ପ୍ରେମ ସମ୍ପର୍କୀୟ ଅନ୍ୟାନ୍ୟ ବିଷୟ ହେଉଛି—ତା'ର ଶାଖା ପ୍ରଶାଖା

ଏବଂ ମିଳନ ହେଉଛି—ସ୍ନେହ ତରୁର ପୁଷ୍ପସମ୍ଭାର । ବିରହ ତା'ର ଫଳ । ଯେଉଁ ପ୍ରେମରେ ବିରହ ବା ବିପ୍ରଲମ୍ଭ ନାହିଁ, ସେ ପ୍ରେମ ଅପୂର୍ଣ୍ଣ । ବିରହ ଦ୍ୱାରା ପ୍ରେମ ସର୍ବାଙ୍ଗ ସୁନ୍ଦର ହୋଇଥାଏ । ବିରହ ହେତୁ ପ୍ରେମ ପରିପୂର୍ଣ୍ଣ ନୁହେଁ । ମିଳନରେ ସ୍ମୃତି ଅନେକ ସମୟରେ ବିସ୍ମୃତ ହୋଇଯାଇ ପାରେ; କିନ୍ତୁ ବିରହରେ ସେହି ସ୍ମୃତି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ହୋଇଥାଏ । ବିରହୀ ବା ବିରହିଣୀ ବିପ୍ରଲମ୍ଭ ଅବସ୍ଥାରେ ପରସ୍ପର ସହିତ ନିବିଡ଼ ଭାବରେ ସଂଲଗ୍ନ ହୋଇ ଥାଆନ୍ତି ।

ଜାନକୀଙ୍କ କଟୁ ବଚନରେ ଲକ୍ଷ୍ମଣ ଆଶ୍ରମ ତ୍ୟାଗ କରି ବନକୁ ଚାଲି ଯାଆନ୍ତେ, ରାବଣ ଆସି ସନ୍ନ୍ୟାସୀ ବେଶରେ ସୀତାଙ୍କ ପାଖରେ ଉପସ୍ଥିତ ହୋଇଗଲା । ରାବଣ ଗେରୁଆ ବସ୍ତ୍ର ଧାରଣ କରି, ଦଣ୍ଡକମଣ୍ଡଳୁ ସହିତ ବେଦ ଉଚ୍ଚାରଣ ପୂର୍ବକ ଆସି ପଞ୍ଚବଟୀର ଆଶ୍ରମରେ ପହଞ୍ଚିଗଲା । ନିଜ ଆଶ୍ରମ ନିକଟରେ ଗୋଟିଏ ବ୍ରାହ୍ମଣ ଅତିଥି ଆସି ପହଞ୍ଚି ଯାଆନ୍ତେ, ପତିପ୍ରାଣା ଜାନକୀ ଅତ୍ୟନ୍ତ ଆନନ୍ଦିତା ହୋଇ ଉଠିଲେ । ସେ ଅତିଥିଙ୍କୁ ପାଦ୍ୟ, ଅର୍ଘ୍ୟ ଦେଇ, ବସିବା ଲାଗି ଆସନ ପ୍ରଦାନ କଲେ ।

ରାବଣ ଆସନ ଗ୍ରହଣ ନ କରି, ଆଶ୍ରମ ଦୁଆରେ ଛିଡ଼ା ହୋଇ କହିଲା— "ଭାମିନି, ତୁମେ ସାଧାରଣ ଲଳନା ବୋଲି ମୋର ମନେ ହେଉ ନାହିଁ । ତେଣୁ ତୁମର ପରିଚୟ ପ୍ରଦାନ କରି ମୋତେ କୃତାର୍ଥ କର !"

ଏତିକି କହି ରାବଣ ସୀତାଙ୍କ ଅଙ୍ଗ ପ୍ରତ୍ୟଙ୍ଗର ସୁନ୍ଦର ବର୍ଣ୍ଣନା କରିବାକୁ ଲାଗିଲା । କପଟ ସନ୍ନ୍ୟାସୀ ରାବଣର ତୋଷାମଦ ପୂର୍ଣ୍ଣ ବାକ୍ୟ ଶୁଣି ସୀତା ଦେବୀ ନିଜର ପରିଚୟ ସଂକ୍ଷେପରେ ପ୍ରଦାନ କଲେ । ସେ ପରିଚୟ ଦେଇ ସାରି କହିଲେ— "ଆପଣ ଏ' ଆଶ୍ରମର ଅତିଥି ! ତେଣୁ ଆପଣ ପ୍ରଥମେ ଏହି ଫଳ ମୂଳ ସେବନ କରି ସୁଖରେ ଅବସ୍ଥାନ କରନ୍ତୁ । ମୋ' ସ୍ୱାମୀ ଓ ଦେବର ମୃଗୟା ଲାଗି ବନ ମଧ୍ୟକୁ ଯାଇଛନ୍ତି । ସେ ଦୁହେଁ ଏହିକ୍ଷଣି ଆସି ପହଞ୍ଚିବେ । ତା'ପରେ ଆପଣ ଭୂରି ଭୋଜନ କରି ଏଠାରୁ ପ୍ରସ୍ଥାନ କରିବେ ।"

ଛଦ୍ମ ବେଶଧାରୀ ଅଧମ ରାବଣ ଉତ୍ତର ଦେଇ କହିଲା—"ସୁନ୍ଦରି ! ମୁଁ ତୁମଠାରୁ ଫଳମୂଳ କିମ୍ବା ଭୂରି ଭୋଜନ ପାଇଁ ଏଠାକୁ ଆସି ନାହିଁ । ତୁମର କ୍ଷଣିକ ଦର୍ଶନ ଫଳରେ ମୁଁ ଏତେ ପ୍ରଭାବିତ ହୋଇଛି ଯେ, ତୁମକୁ ଚିରକାଳ ଲାଗି ହୃଦୟରେ ଜୟମାଳା ସ୍ୱରୂପ ଧାରଣ କରିବା ପାଇଁ ମୋ ମନରେ ଉତ୍କଣ୍ଠା ଜାତ ହୋଇଛି । ଅର୍ଥାତ୍ ତୁମେ ମୋ' ଉଦ୍ଦେଶ୍ୟ ବେଶ୍ ବୁଝି ପାରୁଥିବ ! ମୁଁ ତୁମକୁ ମୋର ପ୍ରିୟତମା ପତ୍ନୀ ରୂପେ ପାଇବା ପାଇଁ ଏଠାକୁ ଆସିଛି ।"

ରାବଣର ପ୍ରତ୍ୟେକ ଶବ୍ଦ ସତ୍ତା ସୀତାଙ୍କ ପ୍ରାଣରେ ବଜ୍ର ପ୍ରହାର ସଦୃଶ ଆଘାତ ଦେଲା । ସେ ସଙ୍ଗେ ସଙ୍ଗେ କ୍ରୁଦ୍ଧା ହୋଇ ଯାଇ କହିଲେ—"ଏଃ....ସାଧୁ

ବେଶଧାରୀ ନୀଚ, ତୁମେ ନିଜର ବେଶ ଭୂଷାକୁ କଳଙ୍କିତ କରିବାକୁ ବସିଛ ! ଏପରି ଲଜ୍ଜାଜନକ ବାକ୍ୟ ପ୍ରୟୋଗ କରିବାକୁ ତୁମେ ଲଜ୍ଜା ବୋଧ କରୁ ନାହଁ ? ଆରେ ପାପିଷ୍ଠ, ସାଧୁମାନେ ପରର ପତ୍ନୀକୁ ନିଜର ଭଗିନୀ ଅଥବା ପୁତ୍ରୀ ଭାବରେ ଗ୍ରହଣ କରିଥାଆନ୍ତି ! ଏଥିରୁ ମନେ ହେଉଛି—ତୁ ଗୋଟିଏ ସାଧୁ ବେଶଧାରୀ ଅଧମ ଓ ନୀଚ ପୁରୁଷ ! ତୁ କେବଳ ସ୍ୱାର୍ଥସିଦ୍ଧି ପାଇଁ ଏପରି ଏକ ଛଦ୍ମବେଶ ଧାରଣ କରିଛୁ ।"

କାମାନଳରେ ଦଗ୍ଧ ରାକ୍ଷସାଧିପ ରାବଣ ଅନୁରାଗପୂର୍ଣ୍ଣ ସ୍ୱରରେ କହିଲା—"ସୁନ୍ଦରି ! କେବଳ ତୁମକୁ ଲାଭ କରିବା ପାଇଁ ମୁଁ ଏହି ବେଶ ଧାରଣ କରିଛି । ଯଦି ମୋ' ସାଧନା ଫଳବତୀ ହୁଏ, ତେବେ ମୋ' ଜୀବନ ଧନ୍ୟ ହୋଇଯିବ ।"

ସୀତା ସିଂହିନୀ ପରି କୁପିତା ହୋଇଯାଇ କହିଲେ—"ତୁ ଏଡ଼େ ନୀଚ ବୋଲି ମୋର ଧାରଣା ନଥିଲା । ତୁ ନିଶ୍ଚୟ ଗୋଟାଏ ରାକ୍ଷସ ! ନୋହିଲେ ଏପରି ନୀଚବାକ୍ୟ ତୋ' ମୁହଁରୁ ବାହାରି ନଥା'ନ୍ତା !"

ରାବଣ ଅତ୍ୟନ୍ତ ସରଳ ଭାବରେ କହିଲେ—"ସୁନ୍ଦରି, ମୁଁ ସାଧାରଣ ରାକ୍ଷସ ନୁହେଁ ! ମୁଁ ହେଉଛି –ସମସ୍ତ ରାକ୍ଷସ କୁଳର ଅଧୀଶ୍ୱର ! କେବଳ ସେତିକି ନୁହେଁ, ମୁଁ ତ୍ରୈଲୋକ୍ୟ ବିଜୟୀ, ଅତୁଳ ଐଶ୍ୱର୍ଯ୍ୟର ଅଧୀଶ୍ୱର ! ମୁଁ କେବଳ ତୁମରି ପ୍ରେମ ପାଇଁ ପାଗଳ ହୋଇ ଏ ବେଶ ଧାରଣ କରିଛି । ମୋର ଅସଂଖ୍ୟ ସୁନ୍ଦରୀ ପତ୍ନୀମାନେ ତୋର ଚରଣସେବିକା ହୋଇ ରହିବେ ଏବଂ ମୁଁ ମଧ୍ୟ ତୁମର ଚିରଦାସ ହୋଇ ରହିବ !! ତୁମେ ଏହି ରାଜ୍ୟଭ୍ରଷ୍ଟ ଅଯୋଗ୍ୟ ବନବାସୀଟାକୁ ତ୍ୟାଗ କରି ମୋର ଲୀଳାସହଚରୀ ହୋଇଯାଅ ! ଦେଖିବ, ତୁମର ଭାଗ୍ୟ ବଦଳି ଯିବ ! ତୁମର ସୌଭାଗ୍ୟ ଯେ, ତୁମ ନିକଟରେ ମୋ'ପରି ଜଣେ ବିଶ୍ୱବିଜୟୀ ବୀର ପ୍ରଣୟପ୍ରାର୍ଥୀ ହୋଇଛି ! ତୁମେ ଜାଣିଛ କି –ମୋର ପାଦ ତଳେ ଇନ୍ଦ୍ର, ଚନ୍ଦ୍ର, ବରୁଣ, କୁବେର ତଥା ସମସ୍ତ ନାଗ, ଯକ୍ଷ, କିନ୍ନରଗଣ ସେବାରେ ରହିଛନ୍ତି ! ସେହି ତ୍ରିଭୁବନଜୟୀ ରାବଣ ଆଜି ତୁମ ସମ୍ମୁଖରେ ଯାଞ୍ଚାମାତ୍ର, ଦନ୍ତରେ ତୃଣ ଧରି ପ୍ରଣୟପ୍ରାର୍ଥୀ ହୋଇଛି !!"

ଜାନକୀ ଖୁବ୍ ରାଗିଯାଇ କହିଲେ –"ତୁ ଗୋଟିଏ କୁକୁର ! ମୁଁ ତୋ' ସହିତ କଥାବାର୍ତ୍ତା କରିବାକୁ ଚାହେଁ ନାହିଁ । ତୋର କାଳ ପୂରି ଗଲାଣି । ସେଇଥି-ପାଇଁ ତୁ ଶ୍ରୀରାମଙ୍କ ପତ୍ନୀ ପ୍ରତି ଏପରି କଥାବାର୍ତ୍ତା କରୁଛୁ ! ଶ୍ରୀରଘୁନାଥଙ୍କ ଆସିବା ପୂର୍ବରୁ ତୁ ଏଠାରୁ ପଳାଇଯା, ନୋହିଲେ ତୋର ମୃତ୍ୟୁ ସୁନିଶ୍ଚିତ !"

ରାବଣ ଗମ୍ଭୀର ହୋଇ ଯାଇ କହିଲା—"ହେ ଚନ୍ଦ୍ରାନନେ, ମୁଁ ତୁମ ବିନା ଏଠାରୁ ଯାଇ ନପାରେ ! ତୁମେ ଯଦି ସ୍ୱଇଚ୍ଛାରେ ନ ଯିବ ତେବେ ମୁଁ ତୁମକୁ

ବଳପୂର୍ବକ ନେଇଯିବ ! ମୋ' ଅନୁରୋଧ ଅନୁସାରେ ତୁମେ ଶୀଘ୍ର ଆସି ରଥରେ ବସିଯାଅ ।"

ଏହା ଶୁଣିବା ମାତ୍ରେ ଜାନକୀଙ୍କ ମୁଖମଣ୍ଡଳ କ୍ରୋଧରେ ରକ୍ତବର୍ଣ୍ଣ ହୋଇଗଲା । ସେତିକବେଳେ ରାବଣ ତା'ର ଛଦ୍ମବେଶ ତ୍ୟାଗ କରି ଭୟଙ୍କର ରୂପ ଧାରଣ କଲା । ତା'ର ବିକଟ ରୂପକୁ ଦେଖି ଜାନକୀ ଭୟରେ ଥରିବାକୁ ଲାଗିଲେ । ସେହି ଅବସରରେ ରାବଣ ତାଙ୍କୁ ବଳପୂର୍ବକ କୁଟୀର ମଧ୍ୟରୁ ଓଟାରି ନେଇ ରଥରେ ବସାଇ ଦେଲା ଏବଂ ନିଜେ ରଥରେ ବସି ଆକାଶ ମାର୍ଗରେ ଲଙ୍କା ଅଭିମୁଖେ ଯାତ୍ରା ଆରମ୍ଭ କରିଦେଲା ।

ସେହି ଅଧମ ରାକ୍ଷସର ଫାନ୍ଦରେ ପଡ଼ି ଜାନକୀ କୁରରୀ ପକ୍ଷୀ ପରି ବ୍ୟାକୁଳରେ ଛଟପଟ ହୋଇ କାନ୍ଦିବାକୁ ଲାଗିଲେ । ସେ ନିତାନ୍ତ ଅସହାୟ ଅବସ୍ଥାରେ କହି ଗ୍ଲିଲେ - "ହା...ପ୍ରାଣବଲ୍ଲଭ, ହା...ରଘୁକୁଳତିଳକ, ହା... ଲକ୍ଷ୍ମଣ ! ତୁମ ଦୁହିଁଙ୍କ ଅନୁପସ୍ଥିତିରେ ମୋତେ ରାକ୍ଷସ ବଳପୂର୍ବକ ଧରି ନେଇ ଯାଉଛି ! ହେ ମୋର ପ୍ରାଣର ସ୍ନେହୀ ଲକ୍ଷ୍ମଣ, ମୁଁ ତୁମକୁ ଯେଉଁ କଟୂକ୍ତି କହିଥିଲି, ତା'ର ଫଳ ଏବେ ପ୍ରତ୍ୟକ୍ଷରେ ଭୋଗୁଛି ।" ଏହିପରି ବିଳାପ କରି କରି ସୀତାଦେବୀ ରାମ ଲକ୍ଷ୍ମଣଙ୍କୁ ସ୍ମରଣ କରିବା ସଙ୍ଗେ ସଙ୍ଗେ ବନଦେବୀଙ୍କୁ ସାକ୍ଷୀ ରଖି ଅନେକ ଦୀନସ୍ୱ ବଚନ କହିବାକୁ ଲାଗିଲେ । ସେ ପାଗଳିନୀଙ୍କ ପରି, ଖଗ, ମୃଗ ତଥା ବନ ଜୀବମାନଙ୍କ ନାମ ଧରି ତାଙ୍କୁ ଉଦ୍ଧାର କରିବା ଲାଗି ପ୍ରାର୍ଥନା କରି ଗ୍ଲିଲେ ଏବଂ ତାଙ୍କ ଦୁର୍ଦ୍ଦଶା ସମ୍ବନ୍ଧରେ ଶ୍ରୀରାମଙ୍କ ଅବଗତ ଲାଗି ଅନୁରୋଧ ଜଣାଇଲେ ।"

ଏହି ସମୟରେ ତାଙ୍କର ଦୃଷ୍ଟି ପଡ଼ିଗଲା— ଗୃଧ୍ରରାଜ ଜଟାୟୁଙ୍କ ଉପରେ । ସେ ବ୍ୟାକୁଳରେ କାନ୍ଦି କାନ୍ଦି କହିଲେ—"ହେ ପକ୍ଷୀରାଜ, ଦେଖ, ଦେଖ, ମୋତେ ଦୁର୍ଦ୍ଦାନ୍ତ ରାକ୍ଷସ କପରି ବଳପୂର୍ବକ ଅପହରଣ କରି ନେଇ ଯାଉଅଛି ! ତୁମେ ମୋ' ସ୍ୱାମୀଙ୍କ ଆଗରେ ଏହି ସମ୍ବାଦ ଜଣାଇଦେବ ! ମୋର ବିଶ୍ୱାସ, ଏ ଖବର ଶୁଣିଲେ ମୁଁ ଯେଉଁଠାରେ ଥିଲେ ମଧ୍ୟ ସେ ମୋତେ ନିଶ୍ଚୟ ଫେରାଇ ଆଣିବେ ।"

ସୂତ ମହର୍ଷି ମୁନିମାନଙ୍କୁ ସୀତାହରଣ ବୃତ୍ତାନ୍ତ ଶୁଣାଇ କହିଲେ—"ହେ ମୁନିଗଣ, ସୀତାଙ୍କର କରୁଣ ରୋଦନ ଶୁଣିବା ମାତ୍ରେ ଗୃଧ୍ରରାଜ ଜଟାୟୁ ପକ୍ଷବିସ୍ତାର କରି ରାବଣର ରଥ ଆଗରେ ଉପସ୍ଥିତ ହୋଇ କହିଲେ—ରାକ୍ଷସାଧିପ, ତୁମେ ଏପରି ନୀଚକର୍ମ କର ନାହିଁ । ସତୀ ଶିରୋମଣି ସୀତାଙ୍କ ସହିତ ଏପରି କୁକର୍ମ କଲେ, ତା'ର ପରିଣତି ବିଷମୟ ହେବ ! ମୁଁ ତୁମକୁ ସାବଧାନ କରାଇ ଦେଉଛି, ଯଦି ତୁମେ ସୀତାଙ୍କୁ ରଥରୁ ଓହ୍ଲାଇ ନ ଦିଅ, ତେବେ ମୁଁ ତୁମକୁ ଜୀବତ ଛାଡ଼ିଦେବ ନାହିଁ !"

ଜଟାୟୁଙ୍କ ବଚନକୁ ଶୁଣି ନଶୁଣିଲା ପରି, ରାବଣ ରଥରେ ବସି ଅଗ୍ରସର ହେବାକୁ ଲାଗିଲା । ଏହା ଦେଖି ଜଟାୟୁ ରାବଣର ରଥ ଉପରେ ଘୋର ଆକ୍ରମଣ କରିଦେଲେ । ଉଭୟ ପକ୍ଷରୁ ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ଜଟାୟୁ ନିଜ ଥଣ୍ଟ ତଥା ନଖରେ ରାବଣକୁ ଆକ୍ରମଣ କରି ତା' ରଥକୁ ଭାଙ୍ଗିଦେବା ସଙ୍ଗେ ସଙ୍ଗେ ତା'ର କୋଡ଼ିଏଟି ହାତକୁ କାମୋଡ଼ି ଛିଣ୍ଡାଇ ଦେଲେ । କିନ୍ତୁ ବ୍ରହ୍ମାଙ୍କ ବରଦାନରୁ ତା'ର ଭୁଜ ପୁଣି ସୃଷ୍ଟି ହୋଇଗଲା । ରାବଣର ରଥ ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯିବା ପରେ ଜାନକୀ ତଳେ ପଡ଼ିଗଲେ । ସେ କୌଣସିମତେ ନିଜକୁ ସମ୍ଭାଳି ନେଇ ରାବଣ ଓ ଜଟାୟୁଙ୍କ ଯୁଦ୍ଧ ଭୟ, ଆଶଙ୍କା, ଆଶା ଓ ଉଲ୍ଲାସର ସହିତ ବିଚିତ୍ର ଭାବେ ନିରୀକ୍ଷଣ କରିବାକୁ ଲାଗିଲେ । ଜଟାୟୁ ବୃଦ୍ଧ ହେଲେ ମଧ୍ୟ ଅମିତ ବିକ୍ରମରେ ରାବଣ ସହିତ ଯୁଦ୍ଧ କରିବାକୁ ଲାଗିଲେ । କିନ୍ତୁ ତ୍ରିଭୁବନବିଜୟୀ ରାବଣ ଆଗରେ ସେ ନିତାନ୍ତ ବଳହୀନ ହୋଇ ପଡ଼ିଲେ । ଏହି ଅବସ୍ଥାରେ ରାବଣ ଜଟାୟୁଙ୍କର ଅଙ୍ଗରେ ଖଡ୍‌ଗ ପ୍ରହାର କରି ତାଙ୍କର ଦୁଇଟି ଡେଣାକୁ କାଟି ପକାଇଲା । ରାବଣର ନିର୍ମମ ପ୍ରହାରରେ ଜଟାୟୁ ମୃତପ୍ରାୟ ହୋଇ ଭୂମିରେ ପଡ଼ି ମୃତ୍ୟୁର ଅନ୍ତିମକ୍ଷଣକୁ ଅପେକ୍ଷା କରି ରହିଲେ ।

ଜଟାୟୁଙ୍କର ଅସହାୟ ଅବସ୍ଥା ଦେଖି, ଦେବୀ ଜାନକୀ ପୁଣି ବିକଳରେ ରୋଦନ କରିବାକୁ ଲାଗିଲେ । ସେ ନିଜ ଭାଗ୍ୟକୁ ନିନ୍ଦା କରି କହିଲେ -"କେଉଁ ଜନ୍ମରେ ମୁଁ କି ପାପ କରିଥିଲି କେଜାଣି, ଯାହାର କୁପରିଣାମରେ ମୋତେ ଏପରି ଦୀନହୀନ ଦଶା ଭୋଗ କରିବାକୁ ପଡ଼ୁଛି ! ମୋର କର୍ମ ଫଳରୁ ମୋ' ସ୍ୱାମୀଙ୍କ ଉପରେ ଗୋଟିକ ପରେ ଗୋଟିଏ ବିପତ୍ତିର ପାହାଡ଼ ଅଜାଡ଼ି ହୋଇ ପଡ଼ୁଛି । ମୋ' ସ୍ୱାମୀ ରାଜ୍ୟଭ୍ରଷ୍ଟ ହେଲେ, ପରିଜନମାନଙ୍କଠାରୁ ପୃଥକ୍ ହୋଇଗଲେ । ତଥାପି ଏ ସମସ୍ତ ବିପଦ ସତ୍ତ୍ୱେ ମୋ' ଜୀବନଧନ ରଘୁନନ୍ଦନ ମୋତେ ନିଜ ପାଖରୁ ଦିନେ-ହେଲେ ଅନ୍ତର କରି ନଥିଲେ । କିନ୍ତୁ ଦୁର୍ଦ୍ଦୈବର ପ୍ରଭାବରୁ ଆଜି ମୁଁ ମୋ' ସ୍ୱାମୀଙ୍କଠାରୁ ପୃଥକ୍ ହୋଇ ଯାଉଛି ।" ଏହା କହି ଦେବୀ ଜାନକୀ ଏଣେତେଣେ ଶରବିଦ୍ଧା ହରିଣୀ ପରି ବିକଳରେ ଧାଇଁବାକୁ ଲାଗିଲେ । ଫଳରେ ତାଙ୍କର କେଶବାସ ଅସମ୍ଭାଳ ହୋଇଗଲା । ତଥାପି ସେ ସେଥିପ୍ରତି ଦୃଷ୍ଟି ନଦେଇ, ପ୍ରାଣ ବିକଳରେ ପଳାଇବାକୁ ଲାଗିଲେ । ଦେବୀ ପ୍ରାଣବିକଳରେ ଧାଇଁ ଧାଇଁ ଯାଇ ବୃକ୍ଷ ଉହାଡ଼ରେ, ଗୁମ୍ଫା ମଧ୍ୟରେ ଓ କେତେବେଳେ ଉଚ୍ଚସ୍ଥାନର ଅନ୍ତରାଳରେ ରହି ଆତ୍ମରକ୍ଷା କରିବାକୁ ଚେଷ୍ଟା କଲେ । କିନ୍ତୁ ରାବଣର ଉପସ୍ଥିତି ତାଙ୍କୁ ଅସହାୟ ଅବସ୍ଥାରେ ପକାଇ ଦେଲା । ଶେଷରେ ସେ ଭୂମିରେ ଲୋଟିଯାଇ 'ହା ପ୍ରାଣନାଥ !' ହା ଲକ୍ଷ୍ମଣ !' ବୋଲି ଉଚ୍ଚସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ଭୂମିରୁ ଉଠିପଡ଼ି ଦେବୀ ଗୋଟିଏ ଅଶୋକ ବୃକ୍ଷକୁ ଜାକୁଡ଼ି ଧରି ଉଚ୍ଚସ୍ୱରରେ କ୍ରନ୍ଦନ କରିବା ସମୟରେ ରାବଣ ତାଙ୍କ କେଶ ଧରି ଘୋଷାରି ନେଇ କହିଲା—"କାନ୍ଦି କାନ୍ଦି ପ୍ରାଣ ହରାଇ ଦେଲେ ମଧ୍ୟ କିଛି

ଫଳ ହେବ ନାହିଁ । ତୁମକୁ ମୋ' ସହିତ ଯିବାକୁ ହେବ ! ଅନ୍ୟଥା ମୁଁ ବଳପୂର୍ବକ ତୁମକୁ ନେଇଯିବି !"

ରାବଣ ଦେବୀଙ୍କ କେଶକୁ ଧରି ଟେଣାଣି ନେବା ସମୟରେ ତାଙ୍କ କେଶପାଶରେ ସଜ୍ଜିତ ପୁଷ୍ପଗୁଚ୍ଛ ଛିଡ଼ିଯାଇ ଭୂମିରେ ବିଚ୍ଛୁଡ଼ି ପଡ଼ିଲା । ଶ୍ରୀରାମ ସେହିଦିନ ଅତି ସ୍ନେହରେ ଦେବୀଙ୍କ କବରୀରେ ପୁଷ୍ପଗୁଚ୍ଛ ସଜାଇ ଦେଇଥିଲେ । ସେହି ଅବସ୍ଥାରେ ଦେବୀଙ୍କ ପିନ୍ଧାବସନ ମଧ୍ୟ ଅସ୍ତବ୍ୟସ୍ତ ହୋଇଗଲା । ରାବଣ ଆଉ କାଳବିଳମ୍ବ ନକରି, ଦେବୀଙ୍କୁ ଦୁଇ ହାତରେ ଉଠାଇ ନେଇ ରଥରେ ବସାଇ ଆକାଶମାର୍ଗରେ ଉଡ଼ିଚାଲିଲା । ଯେ ସମୟରେ ଦେବୀଙ୍କ ପିନ୍ଧାବସନର ଅଞ୍ଚଳ ଆକାଶମାର୍ଗରେ ଫର୍ ଫର୍ ହୋଇ ଉଡ଼ୁଥିଲା । ଦେବୀଙ୍କ ଚକ୍ଷୁରୁ ନିର୍ଗତ ଅଶ୍ରୁରେ ରାବଣର ବସ୍ତ୍ର ଆର୍ଦ୍ର ହୋଇଗଲା । ରାବଣ ସେଥିପ୍ରତି ଟିକିଲମାତ୍ର ଭ୍ରୁକ୍ଷେପ ନ କରି, ଶଙ୍କିତ ମନରେ ଆକାଶ ମାର୍ଗରେ ଲଙ୍କା ଅଭିମୁଖେ ରଥ ଉଡ଼ାଇ ଅଗ୍ରସର ହେଲା ।

ଜାନକୀ ରାବଣର ରଥ ଉପରେ ଅତ୍ୟନ୍ତ କରୁଣ ସ୍ୱରରେ କ୍ରନ୍ଦନ କରୁଥିଲେ ହେଁ, ତଥାପି ଧରଣୀ ପରି ଗଛଆଡ଼କୁ ଚାହିଁ ନିଜର ରକ୍ଷା ଲାଗି କରୁଣ ନିବେଦନ କରୁଥିଲେ । ତାଙ୍କର କରୁଣ ବିଳାପ ଶୁଣି, ଆକାଶରେ ଉଡ଼ୁଥିବା ପକ୍ଷୀମାନେ ସ୍ଥିର ହୋଇଗଲେ, ପଶୁମାନେ ଘାସଚର୍ବଣ ତ୍ୟାଗ କରି ସ୍ତବ୍ଧ ହୋଇ ଉପରକୁ ଚାହିଁ ରହିଲେ । ବୃକ୍ଷମାନେ ସେମାନଙ୍କ ସ୍ୱାଭାବିକ ଅବସ୍ଥା ହରାଇ ସ୍ଥିର ହୋଇଗଲେ ଏବଂ ସୂର୍ଯ୍ୟ ମଧ୍ୟ ନିଜର ଗତିରୋଧ କରିଦେଲେ । କିନ୍ତୁ ଦେବଗଣ ସତୀଙ୍କ ବିଳାପ ଶୁଣି ମନେ ମନେ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲେ । କାରଣ, ସେମାନେ ଭଲଭାବରେ ଜାଣି ପାରିଲେ ଯେ, ରାବଣର ବିନାଶ ନିକଟରୁ ନିକଟତର ହୋଇ ଆସିଲା । ତଥାପି ସୀତାଙ୍କ ରୋଦନ ସେମାନଙ୍କ ହୃଦୟକୁ ବିଦୀର୍ଣ୍ଣ କରିଦେଲା । ପିତାମହ ଏ ଦୃଶ୍ୟ ଦେଖି ପାଷାଣ ପରି ସ୍ଥିର ହୋଇଗଲେ । କିନ୍ତୁ ଦେବୀଙ୍କ ରୋଦନ ସେହି ପାଷାଣକୁ ମଧ୍ୟ ତରଳାଇ ଦେଲା ।

ସେହି ସମୟରେ ସୀତାଦେବୀ ଶୈଳ ଶିଖରରେ ବସିଥିବା ପାଞ୍ଚଗୋଟି ବାନରଙ୍କୁ ଦେଖିଲେ । ସେ ନିଜ ଉତ୍ତରୀୟବସ୍ତ୍ରକୁ ଛିଣ୍ଡାଇ ସେଥିରେ ତାଙ୍କ ଆଭୂଷଣରତ୍ନ ବାନ୍ଧି ତଳକୁ ପକାଇ ଦେଲେ । ସେ ଭାବିଥିଲେ -- ମୋତେ ଖୋଜି ଖୋଜି ପ୍ରାଣପ୍ରିୟ ନିଶ୍ଚୟ ବନ, ଉପବନ ତଥା ଗିରି ଓ କନ୍ଦରରେ ପରିଭ୍ରମଣ କରିବେ । ସେହି ସମୟରେ ହୁଏତ ତାଙ୍କୁ ମୋ ଅଳଙ୍କାରରତ୍ନ ଏହି ବାନରମାନେ ଦେଖାଇଦେବେ । ରାବଣ ପ୍ରାଣଭୟରେ ଏପରି ଅସ୍ଥିର ତଥା ଭୟଭୀତ ହୋଇ ପଡ଼ିଥିଲା ଯେ, ସେ ଦେବୀଙ୍କ କାର୍ଯ୍ୟକୁ ଆଦୌ ଦେଖି ପାରିଲା ନାହିଁ । ସେ କ୍ଷିପ୍ର ଗତିରେ ରଥ ଉଡ଼ାଇ ନେଇ ଲଙ୍କାରେ ପହଞ୍ଚିଗଲା ଏବଂ ଲଙ୍କାଗଡ଼ ମଧ୍ୟରେ ଥିବା

ଏକ ସୁସଜ୍ଜିତ କୋଠରୀରେ ଦେବୀଙ୍କୁ ରଖାଇଲା । ତା'ପରେ ସେ କୋଠରୀର ଦ୍ୱାରଦେଶରେ ସଶସ୍ତ୍ର ପ୍ରହରୀ ଜଗାଇ ଦେଇ ସେମାନଙ୍କୁ ଆଦେଶ ଦେଲା - "ଦେଖ କେହି ଯେପରି ମୋର ବିନା ଅନୁମତିରେ ଏଠାକୁ ଆସି ନପାରେ ! ତୁମେମାନେ ସାବଧାନ ରହିବ !"

ତା'ପରେ ରାକ୍ଷସାଧିପ ରାବଣ ଦେବୀଙ୍କୁ ପ୍ରଲୁବ୍‌ଧ କରିବା ପାଇଁ ଅନେକ ପ୍ରକାର ଚାଟୁବଚନ କହି, ନିଜର ଐଶ୍ୱର୍ଯ୍ୟ ତଥା ପରାକ୍ରମ ସମ୍ବନ୍ଧରେ ବହୁ ପ୍ରୌଢ଼ି କରିବାକୁ ଲାଗିଲା । ସେଥିରେ ତା'ର ଆଶା ପୂରଣ ନ ହେବାରୁ, ସେ ଦେବୀ ସୀତାଙ୍କୁ ଅନେକ ପ୍ରକାର ଭୟ ଦେଖାଇଲା ଏବଂ ଶେଷରେ ଭୟଙ୍କର ରାକ୍ଷସୀମାନଙ୍କୁ ନିଯୁକ୍ତ କରି ସୀତାଙ୍କୁ ନାନା ପ୍ରକାର ପୀଡ଼ା ଦେବାଲାଗି ନିର୍ଦ୍ଦେଶ ଦେଲା ।

ରାବଣ ପୂର୍ବର ଅଭିଶାପକୁ ଭୟକରି ସୀତାଙ୍କ ଉପରେ ବଳାତ୍କାର କଲାନାହିଁ । କେବଳ ତାଙ୍କୁ ଯେକୌଣସି ଉପାୟରେ ବଶ କରିବା ପାଇଁ ଚେଷ୍ଟା କଲା । ରାବଣର ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇ ଯାଆନ୍ତେ, ସେ କ୍ରୋଧରେ ବିଚଳିତ ହୋଇଯାଇ କହିଲା—"ଦେଖ, ତୁମେ ଯଦି ଏହି ବାରମାସ ମଧ୍ୟରେ ମୋର ଅଙ୍କଶାୟିନୀ ହେବାକୁ ସମ୍ମତ ନ ହୁଅ, ମୁଁ ତୁମର ପ୍ରତ୍ୟେକ ଅଙ୍ଗକୁ କାଟି ପ୍ରାତଃଦିନ ଭୋଜନ କରି ମୋ ମନସାଧ ପୂରଣ କରିବ ।"

ଏହା କହି ରାବଣ ସୀତାଦେବୀଙ୍କୁ ବିକଟରୂପା ରାକ୍ଷସୀମାନଙ୍କ ଗହଣରେ ଅଶୋକ ବାଟିକାରେ ନେଇ ରଖାଇଲା । ସୀତାଦେବୀ କେବଳ ନିଜର ଭାଗ୍ୟକୁ ନିନ୍ଦା କରି ରାବଣର କଟୁ ତଥା ଚାଟୁବଚନ ନୀରବରେ ସହିବାକୁ ଲାଗିଲେ ।

ସୂତ ମହର୍ଷି କହିଲେ—"ହେ ମୁନିଗଣ ! ରାକ୍ଷସରାଜ ରାବଣର କବଳରେ ପଡ଼ି, ସୀତାଦେବୀ ନିରନ୍ତରରେ କେବଳ ଶ୍ରୀରାମଙ୍କ କମନୀୟ କାନ୍ତି ତଥା ମନୋଜ୍ଞ ମୂର୍ତ୍ତିକୁ ଧ୍ୟାନ କରି ଚକ୍ଷୁରୁ ଲୋତକ ବର୍ଷଣ ପୂର୍ବକ କାଳଯାପନ କଲେ ।

### ଛପ୍‌ପୟ

"ସମର ଦଶାନନ ସଂଗ ଗୀଧ ନେ ଅଦ୍‌ଭୁତ କୀନ୍ହୋ ।
ଅଶ୍ୱ ସାରଥୀ ମାର ନିଶାଚର ମୂର୍ଚ୍ଛିତ କୀନ୍ହୋ ॥
ପୁନ ଘାୟଲ କର ଗୃଧ୍ର ଚଲ୍ୟୋ ସୀତା ଲୈ ରାବନ ।
ନିର୍ଖି ରହୀ ପୈ ଫେଂକେ ଦୟେ ସିୟ ପଟ ଆଭୂଷନ ॥
ପୁରୀ ଲଙ୍କ ଲୈ ଜାୟ ସିୟ, ବନ ଅଶୋକ ମହଁ ରଖି ଦଈ ।
ଝୁସନ ବିନସ ସବ ତଜ ତକେ, ପତି ବିୟୋଗ ମହଁ କୃଶ ଭଈ ॥



# ବିରହୀ ଶ୍ରୀରାମ

ମର୍ତ୍ତ୍ୟାବତାରସ୍ତ୍ୱିହ ମର୍ତ୍ତ୍ୟଶିକ୍ଷଣଂ
ରକ୍ଷୋବଧାୟୈବ ନ କେବଳଂ ବିଭୋଃ ।
କୁତୋଽନ୍ୟଥା ସ୍ୟାଦ୍‌ରମତଃ ସ୍ୱ ଆତ୍ମନଃ
ସୀତା କୃତାନି ବ୍ୟସନାନୀଶ୍ୱରସ୍ୟ ।

(ଭାଗ ୫, ୧୯ସ୍କ, ୫ଅ ଶ୍ଳୋକ)

## ଛପ୍‌ପୟ

"ଇତ ମାରୀଚହିଁ ମାର ଲଖନ ଲଖି ରାମ ଉରସ୍ୟାବତ ।
କୁଟୀ ସୀୟ ବିନୁ ନିରଖି ବିଲଖି ରୋୱତ ପଛତାବତ ।।
ଜଡ଼ ଚେତନ କୋ ଭେଦ ଭୂଲ ଖମିନୀ ହୃତ ଭଟକେଁ ।
ଖଗ ମୃଗ ତେଁ ସୀୟ ପତୋ ପୂଛି ଫିର ଧୁନି କର ପଟକେଁ ।।
ଇତ ଉତ ଚିତବତ ଚକିତ ହ୍ୱୈ, ନୟନ ନୀରଧାରା ବହତ ।
ତାତ ଧୀର ଧାରନ କରୋ, ରମ ଅନୁଜ ପୁନିପୁନି କହତ ।।

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଭଗବାନ୍ ଶ୍ରୀରାମଙ୍କ ଅବତାର କେବଳ ରାବଣ ଆଦି ଅସୁରମାନଙ୍କ ବଧ ନିମିତ୍ତ ଉଦ୍ଦିଷ୍ଟ ନୁହେଁ । ସେ ମାନବ-ସମାଜକୁ ଉପଯୁକ୍ତ ଶିକ୍ଷା ଦେବାଲାଗି ମଧ୍ୟ ଅବତାର ଧାରଣ କରିଥିଲେ । ନୋହିଲେ ସାକ୍ଷାତ୍ ପରମେଶ୍ୱର ପ୍ରଭୁ, ସୀତାଙ୍କୁ ଅନ୍ତର ମଧ୍ୟରେ ଧାରଣ କରି ମଧ୍ୟ ତାଙ୍କ ବିରହରେ ଏପରି ଦୁଃଖ ପ୍ରକଟ କରିଥାଆନ୍ତେ କାହିଁକି ?

ଶ୍ରୀ ସୂତ ମହର୍ଷି କହିଲେ—"ହେ ମୁନିଗଣ ! ପ୍ରିୟଜନ ବିରହରେ ମନୁଷ୍ୟ ନିଜର ଅସ୍ତିତ୍ୱ ଭୁଲିଯାଏ । ତା'ର ଚେତନ ଓ ଜଡ଼ ଜ୍ଞାନ ରହେ ନାହିଁ । ସେହି

ବିରହାବସ୍ଥାରେ ଶରୀର ପ୍ରତି ଦୃଷ୍ଟି ଦିଆଯାଇ ପାରେ ନାହିଁ । ବିରହ ଅବସ୍ଥାରେ ମନିଷ ନିଜତ୍ୱ ଭୂଲି ଯାଇଥାଏ ଏବଂ ଲୋକଲଜ୍ଜ୍ୟାକୁ ମଧ୍ୟ ଭ୍ରୂକ୍ଷେପ କରେ ନାହିଁ। ବିରହୀ ସର୍ବଦା କେବଳ ନିଜ ପ୍ରିୟତମାର ଛବି ଦେଖିବାକୁ ପାଏ ଏବଂ କୌଣସିଠାରେ ନିଜ ପ୍ରିୟତମାର ସାଦୃଶ୍ୟ ଦେଖିବା ମାତ୍ରେ ତା'ଠାରେ ଆତ୍ମୀୟତା ରକ୍ଷା କରିବା'କୁ ଚେଷ୍ଟା କରେ । ସେ ଚେତନ ଓ ଅଚେତନ ସମ୍ବନ୍ଧରେ ଆଦୌ ଚିନ୍ତା ନକରି ତାକୁ ନିଜ ପ୍ରିୟା ସମ୍ବନ୍ଧରେ ଅସମ୍ଭବ କଥାମାନ ପଚ୍ଚରି ବସେ । ଲୋକମାନେ ତା' ବିଷୟରେ କ'ଣ ଭାବୁଛନ୍ତି, ସେ ବିଷୟରେ ସେ ଆଦୌ ଚିନ୍ତା କରିବାର ଅବକାଶ ପାଏ ନାହିଁ ।"

ହେ ମୁନିଗଣ, ମନରେ ଅନେକ ପ୍ରକାର ସଙ୍କଳ୍ପ ଓ ବିକଳ୍ପ ଭାବନା ପୋଷଣ କରି ଶ୍ରୀରାମଚନ୍ଦ୍ର ମାରୀଚକୁ ମୋକ୍ଷ ଦାନ କରି ପର୍ଣ୍ଣକୁଟୀରକୁ ଫେରି ଆସିଲେ । ସେ ଲକ୍ଷ୍ୟ କରି ଦେଖିଲେ—ଆଶ୍ରମ ଶୂନ୍ୟ ଏବଂ ତା' ମଧ୍ୟରେ ଥିବା ସମସ୍ତ ଜିନିଷ ଇତସ୍ତତଃ ହୋଇ ପଡ଼ିଛି । କୁଟୀର ମଧ୍ୟରେ କିଛି ଫଳମୂଳ ପଡ଼ିଛି ଏବଂ ଶୁଆମାନେ ମନ ଖୁସିରେ ସେହି ଫଳଗୁଡ଼ିକୁ ଚୁମ୍ବିବାରେ ଲାଗିଛନ୍ତି । ଅନ୍ୟଦିନେ ଶ୍ରୀରାମ କେଉଁଆଡ଼େ ଯାଇଥିଲେ, ସୀତା କୁଟୀର ବାହାରେ ଥିବା ଚଉତରା ଉପରେ ବସି ଏକଧ୍ୟାନରେ ତାଙ୍କ ଆସିବା ଦିଗକୁ ଚାହିଁ ରହି ଥାଆନ୍ତି ଏବଂ ତାଙ୍କ ଉପରେ ଦୃଷ୍ଟି ପଡ଼ିବା କ୍ଷଣି, ସେ କୁଟୀର ମଧ୍ୟକୁ ଧାଇଁଯାଇ ପାଣି କଳସୀ ଧେନି ଆସି ମୁହଁ ଫୁଲାଇ କହନ୍ତି—"ଆପଣ ଆଜି ଏତେ ବିଳମ୍ବ କଲେ କାହିଁକି ?" ଶ୍ରୀରାମ ତାଙ୍କୁ ଯେତେ ପ୍ରକାର ବୁଝାଇଲେ ମଧ୍ୟ ସେ ଆଦୌ ସ୍ୱୀକାର କରନ୍ତି ନାହିଁ । କିନ୍ତୁ ସେଦିନ ତାହାର ବ୍ୟତିକ୍ରମ ଦେଖି, ଶ୍ରୀରାମ ବ୍ୟସ୍ତ ହୋଇ ପଡ଼ିଲେ । ସେ ବେଶ୍ ଅନୁଭବ କଲେ—ତାଙ୍କ ବାମନେତ୍ରରେ କମ୍ପନ ସୃଷ୍ଟି ହେଉଛି ଏବଂ ତାଙ୍କ ଦକ୍ଷିଣ ପାର୍ଶ୍ୱ ଦେଇ ଶୃଗାଳ ଧାଇଁ ପଳାଉଛି । ତା'ପରେ ମଧ୍ୟ ସେ ବେଶ୍ ଜାଣି ପାରିଲେ— ତାଙ୍କ ବାମଭୁଜ କମ୍ପି ଉଠୁଛି । ତେଣୁ ସେ ମନେ ମନେ ବ୍ୟସ୍ତ ହୋଇପଡ଼ି ଡାକ ପକାଇଲେ—"ସୀତେ, ସୀତେ, ପ୍ରିୟେ, ତୁମେ ଅଛ କେଉଁଠି ?"

ତଥାପି ସୀତାଙ୍କର କିଛି ସ୍ୱର ଶବ୍ଦ ନପାଇ ଶ୍ରୀରାମ କୁଟୀର ଭିତରକୁ ବ୍ୟଗ୍ରତାର ସହିତ ପଶିଗଲେ ଏବଂ କୁଟୀରଟିକୁ ଶୂନ୍ୟ ଦେଖି ସେ ବାହାରକୁ ଆସି —"ହା.. ସୀତେ .!" କହି ଗଛ କାଟିଦେଲା ପରି ଭୂମିରେ ପଡ଼ିଗଲେ । ଲକ୍ଷ୍ମଣ ଏହା ଦେଖି କାନ୍ଦି ପକାଇଲେ ଏବଂ ଶୀଘ୍ର ଶ୍ରୀରାମଙ୍କୁ ତଳୁ ଉଠାଇ କହିଲେ— "ଭାଇ, ଆପଣ ଏତେ ଅଧୈର୍ଯ୍ୟ ହୋଇ ପଡ଼ୁଛନ୍ତି କାହିଁକି ? ଦେବୀ ଜଳ ଆଣିବା ପାଇଁ ହୁଏତ ଗୋଦାବରୀ ନଦୀକୁ ଯାଇଥିବେ ।"

"ଜାନକୀ ଗୋଦାବରୀ ନଦୀଘାଟକୁ ଯାଇଥିବେ" ଏକଥା ଶୁଣିବା ମାତ୍ରେ ଶ୍ରୀରାମ ହଠାତ୍ ଆଶାବାଦୀ ହୋଇ ଉଠିଲେ । ସେ ତତ୍‌କ୍ଷଣାତ୍ ଉଠିପଡ଼ି ଧାଇଁଚାଲେ

ଗୋଦାବରୀ ତଟକୁ । ସେ ଜଳ ଘାଟରେ ଛିଡ଼ା ହୋଇ ଡାକ ପକାଇଲେ—"ଜାନକୀ, ତୁମେ କେଉଁଠି ଅଛ, ଶୀଘ୍ର ଆସ !"

ନିକଟରେ ଥିବା ପର୍ବତ ଗୁମ୍ଫାରୁ ଶ୍ରୀରାମଙ୍କ ବାଣୀ ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେ ଆତୁର ଜୋର୍‌ରେ ଡାକିବାକୁ ଲାଗିଲେ—"ସୀତେ, ମୁଁ ମୃଗୟାରୁ ଫେରି ଆସିଲିଣି···! ତୁମେ ମୋତେ ଦେଖାଉଥ ପ୍ରିୟେ !" ତଥାପି ସୀତା ଦେଖା ଦେଲେ ନାହିଁ । ଶ୍ରୀରାମ ମନେ ମନେ ବ୍ୟାକୁଳ ହୋଇ ଉଠି କହିଲେ—"ପ୍ରିୟେ, ମୁଁ ଜାଣିଛି—ତୁମେ ଏଇ ନିକଟସ୍ଥ କେଉଁ ଲତାକୁଞ୍ଜରେ ଲୁଚିରହି ମୋ' ସହିତ ଖେଳୁଛ । ମୋର ଧୈର୍ଯ୍ୟ ପରୀକ୍ଷା କରୁଛ । କିନ୍ତୁ ପ୍ରିୟେ, ମନେରଖ, ହାସ-କଉତୁକ ସବୁବେଳେ ସୀମା ଅତିକ୍ରମ କଲେ ତା'ର ପରିଣାମ ଭଲ ହୁଏନାହିଁ । ମୁଁ ଭଲଭାବରେ ଜାଣି ଗଲିଣି—ତୁମେ ଲତା ଗହଳରେ ଲୁଚି ରହିଛ । ତୁମର ନୀଳାମ୍ବରୀ ଶାଢ଼ୀର ଅଞ୍ଚଳ ମୁଁ ଦେଖି ସାରିଲିଣି । ଆଉ ତୁମେ ମୋତେ ଠକାଇ ପାରିବ ନାହିଁ । ମୁଁ ମାୟାମୃଗ ପଛରେ ଧାଇଁ ଧାଇଁ ଅତି କ୍ଳାନ୍ତ ହୋଇ ପଡ଼ିଛି । ଆସ ପ୍ରିୟେ, ଶୀଘ୍ର ଆସ । କୁଟୀରରେ ବସି ଆମେ କଥାବାର୍ତ୍ତା ହେବା । ତୁମର କଣ୍ଠର କୋକିଳଜିଣା ବାଣୀ ଶୁଣିଲେ ମୋର କ୍ଳାନ୍ତି ଦୂର ହୋଇଯିବ !"

ଲକ୍ଷ୍ମଣ ଶ୍ରୀରାମଙ୍କ ବ୍ୟାକୁଳତାପୂର୍ଣ୍ଣ ଅବସ୍ଥା ଦେଖି ମନେ ମନେ ଭୟ କଲେ । ସେ ସମୟରେ ହଠାତ୍ କ'ଣ ଉପାୟ କରିବାକୁ ହେବ, ତାହା ସେ ଆଦୌ ଚିନ୍ତା କରି ପାରିଲେ ନାହିଁ । ତାଙ୍କୁ ଦେଖି ପକାଇ ଶ୍ରୀରାମ କହିଲେ—"ଲକ୍ଷ୍ମଣ, ମୋ' ହୃଦୟ ଅସ୍ଥିର ହୋଇ ଉଠୁଛି । ଜାନକୀଙ୍କୁ ଏଠାରେ ନପାଇ, ମୁଁ ଧୈର୍ଯ୍ୟ ହରାଇ ବସିଲିଣି । ତାଙ୍କୁ ଏକୁଟିଆ ଦେଖି କେହି ରାକ୍ଷସ ଖାଇଦେଲା କି ? ଅଥବା କେହି ତାଙ୍କୁ ଅପହରଣ କରିନେଲା କି ? ଲକ୍ଷ୍ମଣ, ଜାନକୀଙ୍କ ବିନା ମୁଁ ଜୀବିତ ରହି ପାରିବି ନାହିଁ ।"

ଲକ୍ଷ୍ମଣ ଶ୍ରୀରାମଙ୍କୁ ଧୈର୍ଯ୍ୟଧାରଣ କରିବା ପାଇଁ ଆଶ୍ୱାସନା ଦେଇ କହିଲେ—"ପ୍ରଭୋ, ଆପଣ ଏତେ ବ୍ୟସ୍ତ ହେଲେ ଚଳିବ ନାହିଁ । ଦେବୀ ଏଇ କେଉଁଠାରେ ଥିବେ; ଚାଲନ୍ତୁ ଆମେ ବନରେ ତାଙ୍କୁ ଖୋଜିବା । ନୋହିଲେ, କାହାରିକୁ ପଚାରିବା !"

ଏ କଥା ଶୁଣିବା ମାତ୍ରେ ଶ୍ରୀରାମ ଅଥୟ ହୋଇ ବାଉଳାଙ୍କ ପ୍ରାୟ ଗୋଦାବରୀ ନଦୀ, ପୁଷ୍ପମାନଙ୍କରୁ ମଧୁପାନରେ ମତ୍ତ ଭ୍ରମର, କାଳ-ବାଗୁଣୀ ପ୍ରଭୃତିଙ୍କୁ ଗୋଟି ଗୋଟି କରି ସୀତାଙ୍କ ସମ୍ବନ୍ଧରେ ପଚାରିଗଲେ । ସେମାନଙ୍କ ସହିତ

କଥାବାର୍ତ୍ତା ହେଲାବେଳେ ସେ ସୀତାଙ୍କ ରୂପ, ଗୁଣ ଓ ଆଚରଣ ବିଷୟରେ ବଖାଣିବାକୁ ଭୁଲୁ ନଥିଲେ । ଏହି ସମୟରେ ଗୋଟିଏ ହରିଣୀ ଆସି ତାଙ୍କ ଆଗରେ ଛିଡ଼ା ହୋଇଗଲା । ସେ ଶ୍ରୀରାମଙ୍କ ଆଡ଼କୁ ତା'ର ବଡ଼ ବଡ଼ ଆଖିରେ ଚାହିଁ ରହିଲା । ତାକୁ ଏପରି ଚାହୁଁଥିବାର ଲକ୍ଷ୍ୟ କରି ଶ୍ରୀରାମ କହିଲେ—"ହେ ମୃଗି ! ତୁମେ ମୋ' ଧନୁଶର ଦେଖି ଡରଯାଅ ନାହିଁ । ମୁଁ ତୁମକୁ ମାରିବି କାହିଁକି ? ତୁମେ ଅବଳା । ମୁଁ କେବଳ କନକମୃଗ ମାରିବି ! ମୋ' ପ୍ରାଣପ୍ରିୟା କନକମୃଗ ନେବା ପାଇଁ ଜିଦ୍‌ଧରିଥିଲା । ମୁଁ ସେଇଥିପାଇଁ ସୁନାହରିଣ ପଛରେ ଧାଇଁ ଯାଇଥିଲି । କିନ୍ତୁ ସେ କପରି କେଜାଣି, ଜାଣିପାରିଲା ଯେ, ମୁଁ ସୁନାହରିଣ ଆଣି ନାହିଁ । ତେଣୁ ସେ ମୋ' ଉପରେ ଅଭିମାନ କରି ଏଠାରେ କେଉଁଠି ଲୁଚି ଯାଇଛି । ତୁମେ ତ ବନର ସବୁଆଡ଼େ ବୁଲୁଛ, ମୋ' ହରିଣାକ୍ଷୀ ସୀତାକୁ କେଉଁଠି ଦେଖିଛ କି ? ଦେଖ, ତୁମେ ଗୋଟିଏ ସ୍ତ୍ରୀ ! ସ୍ତ୍ରୀମାନେ ସାଧାରଣତଃ ଅନ୍ୟ ଗୋଟିଏ ସ୍ତ୍ରୀ ଆଗରେ ମନର କଥା ଖୋଲି କହି ଦିଅନ୍ତି ! ତୁମେ ତା'ର ଚଞ୍ଚଳ, ଢଳ ଢଳ ଆଖି ଯୋଡ଼ିକ ଦେଖିଲେ, ପ୍ରକୃତରେ ମୁଗ୍ଧ ହୋଇଯିବ । ସେ ମଧ୍ୟ ଠିକ୍ ତୁମରି ପରି ସରଳା ।"

ଶ୍ରୀରାମ ତା' ଆଡ଼କୁ ଚାହିଁ କଥା କହିବାକୁ ଆରମ୍ଭ କରିବା ମାତ୍ରେ ହରିଣୀଟି ଡେଇଁ ଡେଇଁ ବଣ ଭିତରକୁ ପଳାଇ ଯାଇଥିଲା । ସେଠାରୁ ଶ୍ରୀରାମ ଆଗେଇ ଯାଇ ଗୋଟିଏ ପଦ୍ମପୁଷ୍କରିଣୀକୁ ଦେଖି ତା'ର କୂଳରେ ଛିଡ଼ା ହୋଇ ତାକୁ ମଧ୍ୟ ସୀତାଙ୍କ ସମ୍ବନ୍ଧରେ ପଚାରିଲେ । ସେଠାରୁ କିଛି ଉତ୍ତର ନପାଇ ଶ୍ରୀରାମ ଆହୁରି ବ୍ୟସ୍ତ ହୋଇ ପଡ଼ିଲେ । ସେତେବେଳକୁ ସେ ଚେତନ ଅଚେତନ ଜ୍ଞାନ ହରାଇ ବସିଥିଲେ । ତେଣୁ ପରେ ପରେ ସେ ତାଳମ୍ବୃକ୍ଷ, ଶାଳବୃକ୍ଷ, ବିଲ୍ୱବୃକ୍ଷ, ଅଶ୍ୱତ୍ଥ-ବୃକ୍ଷ, ରମ୍ଭାବୃକ୍ଷ ଆଦିଙ୍କ ପାଖରେ ଛିଡ଼ା ହୋଇ ନିଜ ମନର ବ୍ୟାକୁଳତା ଓ ସୀତାଙ୍କ ରୂପଗୁଣରେ ବର୍ଣ୍ଣନା କରି ବସିଲେ । ଏହି ସମୟରେ ଗୋଟିଏ ହାତୀ ସେହି ବାଟଦେଇ ଯାଉଥିବାର ଦେଖି ତାକୁ ଡାକ ପକାଇ ଶ୍ରୀରାମ କହିଲେ—"ହେ ଗଜେନ୍ଦ୍ର, ରୁହ ରୁହ ! ତୁମେ ପଳାଇ ଯାଉଛ କୁଆଡ଼େ ? ତୁମରି ଶୁଣ୍ଢ ପରି ମୋ' ପ୍ରାଣପ୍ରିୟାର ଉରୁ ଯୁଗଳ ଖୁବ୍ ସୁନ୍ଦର ! ତୁମେ ମୋର ସେହି ହୃଦୟେଶ୍ୱରୀ ସୀତାଙ୍କୁ ବାଟଘାଟରେ କେଉଁଠି ଦେଖିଲ କି ? ଯଦି ଦେଖିଥାଅ, ଦୟାକରି କେଉଁଠି ଦେଖିଛ କୁହ ! ମୋତେ ତୁମ ପିଠିରେ ବସାଇ ସେଇଠିକି ନେଇଚାଲ !"

ହାତୀଟି ସେଠାରୁ ଚାଲି ଯାଆନ୍ତେ ଶ୍ରୀରାମ ଗୋଟିଏ ପୁଷ୍କରିଣୀ କୂଳରେ ଯାଇ ବସି ପଡ଼ିଲେ । ସେଠାରେ ଗୋଟିଏ ହଂସୀ ଜଳ ମଧ୍ୟରେ ସନ୍ତରଣ କରୁଥିଲା । ଶ୍ରୀରାମ ତାକୁ ଦେଖି ଡକାଇ ତା'ର ଆଗରେ ସୀତାଙ୍କ ଗୁଣ ବଖାଣି ବସିଲେ ଏବଂ ସେ କିଛି ଉତ୍ତର ନ ଦେବାରୁ ସେଠାରୁ ଉଠିଯାଇ ସେ ଗୋଟିଏ ଫଳପୂର୍ଣ୍ଣ ଆମ୍ବବୃକ୍ଷ

ମୂଳରେ ଛିଡ଼ା ହୋଇ କହିଲେ—"ହେ ବିମ୍ବବୃକ୍ଷ, ତୁମର ଫଳ ପରି ଲାଲ ମୋ ପ୍ରାଣପ୍ରିୟାର ଓଷ୍ଠଯୁଗଳ । କେବଳ ଓଷ୍ଠ କାହିଁକି, ମୋ ପ୍ରଣୟିନୀ ସୀତାର ପାଦତଳ, କରତଳ ଓ ଗଣ୍ଡଯୁଗଳର ରକ୍ତିମ ଆଭାରେ ତୁମର ଫଳଗୁଡ଼ିକ ନିଷ୍ପ୍ରଭ ମଳିନ ଦିଶିବେ ! ତୁମେ ତାକୁ କେଉଁଠି ଦେଖିଛ କି ?

ସୂତ ମହର୍ଷି କହିଲେ—"ମୁନିଗଣ, ଶ୍ରୀରାମ ଏହିପରି ଭାବରେ ଜଳ, ସ୍ଥଳ, ବୃକ୍ଷ, ଲତା ଓ ଜୀବଜନ୍ତୁଙ୍କ ଆଗରେ ନିଜର ଦୁଃଖ କାହାଣୀ କହି କେତେ କ'ଣ ପଚାରି ବସିଲେ । ଶେଷରେ ପାଗଳଙ୍କ ପରି ସମଗ୍ର ବନଭୂମିରେ ବିଚରଣ କଲେ । ଲକ୍ଷ୍ମଣ ତାଙ୍କ ପଛେ ପଛେ ଠିକ୍ ଛାୟା ପରି ଅନୁସରଣ କରିବାକୁ ଲାଗିଲେ ।

ଗୋଦାବରୀ ନଦୀର ତଟ ପ୍ରଦେଶ ବନ ମଧ୍ୟରେ ସୀତାଙ୍କୁ ନପାଇ ଶ୍ରୀରାମ ପୁଣି ପଞ୍ଚବଟୀକୁ ଫେରି ଆସିଲେ । ସେ ଅସ୍ଥିରତାର ସହିତ କୁଟୀରର ପ୍ରତ୍ୟେକ ବସ୍ତୁକୁ ଝାଡ଼ିଝୁଡ଼ି କରି ଭଲ ଭାବରେ ନିରୀକ୍ଷଣ କଲେ । ଏହା ଲକ୍ଷ୍ୟ କରି ଲକ୍ଷ୍ମଣ ଅତ୍ୟନ୍ତ ବିକଳ ହୋଇ ଉଠିଲେ । ତଥାପି ସେ ସମୟରେ ସେ ଅସୀମ ଧୈର୍ଯ୍ୟଧାରଣ କରି କହିଲେ— "ପ୍ରଭୋ, ଆପଣ ଏପରି ବ୍ୟାକୁଳ ହେଲେ ଚଳିବ ନାହିଁ ! ଦେବୀ ହୁଏତ ଆମର ଧୈର୍ଯ୍ୟ ପରୀକ୍ଷା ପାଇଁ ଜାଣିଶୁଣି କେଉଁଠି ଆତ୍ମଗୋପନ କରି ରହିଥିବେ । ଚାଲନ୍ତୁ, ଧୈର୍ଯ୍ୟର ସହିତ ତାଙ୍କୁ ବନରାଜି ଖୋଜି ଖୋଜି ସେ ଯେଉଁଠି ଲୁଚିଥିଲେ ମଧ୍ୟ ଆମେ ବାହାର କରିବା !"

ଶ୍ରୀରାମ ଲକ୍ଷ୍ମଣଙ୍କ ବିନୟ ବଚନ ପ୍ରତି କର୍ଣ୍ଣପାତ ନକରି କହିଲେ—"ହୁଁ··· ଲକ୍ଷ୍ମଣ···! ତୁମେ ଆଉ ଥରେ ଗୋଦାବରୀ ତଟକୁ ଯାଇ, ସେଠାରେ ତନ୍ନ ତନ୍ନ କରି ଖୋଜି ଆସ । ସେହି ନିକଟରେ ଥିବା ପୁଷ୍କରିଣୀ ଭିତରକୁ ଯାଇ, ପଦ୍ମପୁଷ୍ପର ପ୍ରତ୍ୟେକ ପାଖୁଡ଼ାକୁ ଲେଉଟାଇ ଦେଖିବ । ପଦ୍ମନାଡ଼ଗୁଡ଼ିକୁ ଭଲଭାବରେ ପରୀକ୍ଷା କରିବ ! କାଳେ ସୀତା ତା' ମଧ୍ୟରେ ଆତ୍ମଗୋପନ କରିଥିବ ! ହୁଁ···ଆଉ ଟିକିଏ ଆଗେଇ ଯାଇ ଘନଜଙ୍ଗଲ ମଧ୍ୟରେ ବୁଲି ଆସିବ । କାଳେ ସୀତାଙ୍କର କିଛି ସନ୍ଧାନ କାହାରିଠାରୁ ମିଳିପାରେ !"

ଭାଇଙ୍କ ଆଜ୍ଞାକୁ ଲକ୍ଷ୍ମଣ କେବେହେଲେ ଅବଜ୍ଞା କରି ନ ଥିଲେ । ତେଣୁ ସେ ଶୀଘ୍ର ଗୋଦାବରୀ ତଟକୁ ଚାଲିଯାଇ ବିଭିନ୍ନ ସ୍ଥାନରେ ଆଖି ବୁଲାଇ ନେଇ ଉଦାସ ମନରେ ଫେରି ଆସିଲେ । କାରଣ, ସେ ମଧ୍ୟ ସେପରି ଏକ ଜଟିଳ ପରିସ୍ଥିତିରେ ଶ୍ରୀରାମଙ୍କୁ ଏକୁଟିଆ ଛାଡ଼ି ଦେବାକୁ ପ୍ରସ୍ତୁତ ନ ଥିଲେ । ସେ ଫେରି ଆସିବା ମାତ୍ରେ ଅତ୍ୟନ୍ତ ଉତ୍ସୁକତାର ସହିତ ଶ୍ରୀରାମ ପଚାରିଲେ—"ଲକ୍ଷ୍ମଣ, କ'ଣ ତୁମେ ସୀତାଙ୍କର

କିଛି ସନ୍ଧାନ ପାଇଲ ? ତୁମେ ମୋ ପ୍ରାଣପ୍ରିୟାର ଖବର ନ ଦେଲେ, ମୁଁ ଏହିକ୍ଷଣି ପ୍ରାଣ ହରାଇ ଦେବି !”

ଲକ୍ଷ୍ମଣ କହିଲେ—“ପ୍ରଭୋ ! ସବୁଆଡ଼େ ଖୋଜି ଖୋଜି ଥକିଗଲି ! କିନ୍ତୁ ସୀତାଙ୍କର କେଉଁଠି ହେଲେ ସନ୍ଧାନ ପାଇଲି ନାହିଁ । ଉଚ୍ଚ ବୃକ୍ଷ ଉପରକୁ ଚଢ଼ି ଅନେକ ଡାକିଲି, କୌଣସିଠାରୁ କିଛି ଉତ୍ତର ପାଇଲି ନାହିଁ ।”

ଏହା ଶୁଣିବା ମାତ୍ରେ ଶ୍ରୀରାମ ନିଜ ହାତରେ ମୁଣ୍ଡ ବାଳକୁ ଟାଣି ଟାଣି, ଛାତିରେ ପିଟିବାକୁ ଲାଗିଲେ । ସେ ଉଚ୍ଚ ସ୍ୱରରେ କାନ୍ଦି କାନ୍ଦି ବନଭୂମିକୁ ମୁଖରିତ କରିବା ସଙ୍ଗେ ସଙ୍ଗେ ଅଚେତ ହୋଇ ବନ ଭୂମିରେ ଲୋଟି ପଡ଼ିଲେ । ଭାଇଙ୍କ ଦୁଃଖରେ ଦୁଃଖିତ ହୋଇ ଲକ୍ଷ୍ମଣ ତାଙ୍କୁ ତଳୁ ଉଠାଇ ଅନେକ ପ୍ରକାର ବୁଝାଇଲେ । ସୀତାଙ୍କ ବିହୁନେ ଶ୍ରୀରାମଙ୍କୁ ଚାରିଆଡ଼ ଅନ୍ଧକାର ଦିଶିଲା । ସେ ନାନାପ୍ରକାର ଆଶଙ୍କା କରିବାକୁ ଲାଗିଲେ । କାରଣ ପ୍ରେମୀ ହୃଦୟରେ ପ୍ରେମିକାଙ୍କ ପାଇଁ ନାନାପ୍ରକାର ଅନିଷ୍ଟ ଆଶଙ୍କା ସ୍ଥାନ ପାଇଥାଏ । ଶ୍ରୀରାମ କାନ୍ଦି କାନ୍ଦି କହିଲେ—“ଲକ୍ଷ୍ମଣ, ଜାନକୀଙ୍କୁ ନିଶ୍ଚିତ ଭାବରେ କୌଣସି ରାକ୍ଷସ କିମ୍ବା ଖାଇଦେଇଛି ! ହାୟ, ମୋ' ଜାନକୀ ସେତେବେଳେ କେତେ ବିକଳ ହୋଇ ନ ଥିବ ! ତା'ର ସବୁ ସବୁ ଅଙ୍ଗ ପ୍ରତ୍ୟଙ୍ଗକୁ ସେମାନେ କେତେ ଆନନ୍ଦରେ ଖାଇଦେଇ ଦେଇଥିବେ ! ହାୟ, ଯଦି ମୋ' ପ୍ରିୟାର ଖଣ୍ଡିଏ ଅସ୍ଥି ମିଳି ଯାଆନ୍ତା, ତେବେ ମୁଁ ସେହି ପଥ ଅନୁସରଣ କରନ୍ତି । ସେ ଆଶା ମଧ୍ୟ ମୋର ମଉଳି ଯାଉଛି । କଠୋର ହୃଦୟ ରାକ୍ଷସମାନେ ତା'ର କୋମଳ ଅଙ୍ଗକୁ କାଟିବାବେଳେ, ତା'ର ସୁବର୍ଣ୍ଣ ପରି ଅଙ୍ଗରୁ ରକ୍ତ ଧାର ଧାର ହୋଇ ବହି ଯାଇଥିବ । ରାକ୍ଷସମାନେ ଶଙ୍ଖ ପରି ଶ୍ୱେତ ମୋ' ପ୍ରିୟାର କଣ୍ଠକୁ କାଟିବା ବେଳେ ସେ ବିକଳ ହୋଇ ମୋତେ ଡାକିଥିବ । ଯେଉଁ ବ୍ୟକ୍ତି ନିଜ ସ୍ତ୍ରୀକୁ ରକ୍ଷା କରି ନ ପାରେ ତାକୁ ଶତଧିକ୍ ! ଲକ୍ଷ୍ମଣ, ଜନକନନ୍ଦିନୀଙ୍କ ବିନା ମୁଁ ପ୍ରାଣ ଧାରଣ କରି ରହି ପାରିବି ନାହିଁ । ବନବାସର ଅବଧି ଶେଷ ହେବା ପରେ ମୁଁ ଅଯୋଧ୍ୟାକୁ ଫେରିଗଲେ ମୋ-ମାଆ ଧାଇଁ ଆସି ପଚାରିବେ—ମୋ' ପୁତ୍ରବଧୂ କାହିଁ ? ଜନକ ମଧ୍ୟ ଆଗେଇ ଆସି ନିଜ କନ୍ୟା କାହିଁ ବୋଲି ପଚାରିବେ । ସେତେବେଳେ ମୁଁ କି ଉତ୍ତର ଦେବି ? ଲକ୍ଷ୍ମଣ, ମୁଁ ଆଉ ଅଯୋଧ୍ୟାକୁ ଲେଉଟି ଯିବି ନାହିଁ । ତୁ ଅଯୋଧ୍ୟାକୁ ଫେରିଯାଇ ମୋ' ଅବସ୍ଥା ସମ୍ବନ୍ଧରେ ସମସ୍ତଙ୍କୁ ଜଣାଇ ଦେବୁ । ମୋ' ପାଇଁ ତୁମେମାନେ ଉତ୍ତର ଷୋଡ଼ଶ କରିଦେବେ । ମୁଁ ଆଉ ଅଧିକ କାଳ ବଞ୍ଚିରହି ପାରିବି ନାହିଁ ।”

ଲକ୍ଷ୍ମଣ ଶ୍ରୀରାମଙ୍କୁ କୋମଳ ବାଣୀରେ ବୁଝାଇ କହିଲେ—“ପ୍ରଭୋ, ସାଧାରଣ ଲୋକଙ୍କ ପରି ଅଧୀର ହେବା ଆପଣଙ୍କୁ ଶୋଭା ପାଏ ନାହିଁ । ଜାନକୀଙ୍କର

ସାମାନ୍ୟ ଅସୁବିଧା ମଧ୍ୟ ହେବ ନାହିଁ । ତାଙ୍କର ସତୀତ୍ୱ ତାଙ୍କୁ ସବୁ ବିଧ ଅସୁବିଧାରୁ ରକ୍ଷା କରିବ । ବୁଦ୍ଧିମାନ୍ ଲୋକମାନେ କେବେହେଲେ ଧୈର୍ଯ୍ୟ ହରାଇ ବସନ୍ତି ନାହିଁ । ସେମାନେ ପୌରୁଷ ଦେଖାଇ ସମସ୍ତ ପ୍ରକାର ଅସୁବିଧାକୁ ନିର୍ମୂଳ କରି ଦିଅନ୍ତି । ମୁଁ ଆପଣଙ୍କର ସେବକ ! ମୋ' ହାତରେ ଧନୁ ଥିଲେ, ଆପଣଙ୍କର ଚିନ୍ତା କ'ଣ ? ଆମେ ସମଗ୍ର ଜନସ୍ଥାନ ଦଣ୍ଡକ ଅରଣ୍ୟରେ ସୀତାଙ୍କୁ ଖୋଜିବା । ଏଠାରେ ଦେବୀଙ୍କର ସନ୍ଧାନ ନ ମିଳିଲେ ଆମେ ସମୁଦାୟ ପୃଥିବୀର ଅନ୍ଧକନ୍ଧ ଖୋଜିସାରି, ପାତାଳକୁ ପ୍ରବେଶ କରିବା । ସେଠାରେ ଯଦି ସୀତା ନ ଥା'ନ୍ତି ତା'ହେଲେ ଆମେ ସପ୍ତଲୋକ ମଧ୍ୟରେ ବୁଲି ସୀତାଙ୍କୁ ଅନ୍ୱେଷଣ କରିବା । ଆମ ପକ୍ଷରେ ଏହା ଆଦୌ ଅସମ୍ଭବ ନୁହେଁ । ଆମ ହାତରେ ଧନୁଶର ଥିଲେ ଆମର କେହି କୌଣସି ପ୍ରକାର ଅନିଷ୍ଟ କରି ପାରିବ ନାହିଁ ।

"ପ୍ରଭୋ, ଆପଣ ପୁରୁଷାର୍ଥ ଅବଲମ୍ବନ କରନ୍ତୁ । ଆପଣ ଅଧୀର ହେଲେ କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ । ଆପଣ ସାହସ ହରାଇଲେ ଚଳିବ କିପରି ? ପବନ ଦକ୍ଷିଣ ଆଡ଼କୁ ବହିବାରେ ଲାଗିଛି । ସେହି-ଆଡ଼େ ଅସୁରମାନଙ୍କ ବାସଭୂମି । ଆମେ ଦକ୍ଷିଣ ଆଡ଼କୁ ଅଗ୍ରସର ହେଲେ ସୀତାଙ୍କର ସନ୍ଧାନ ପାଇ ପାରିବା !"

ଲକ୍ଷ୍ମଣଙ୍କ କୋମଳ ବଚନ ଶୁଣି ଶ୍ରୀରାମ ବାରମ୍ବାର ଚକ୍ଷୁରୁ ଅଶ୍ରୁଧାର ଗଡ଼ାଇ କହିଲେ—"ଲକ୍ଷ୍ମଣ, ମୁଁ ସୀତାଙ୍କ ବିଚ୍ଛେଦ ଆଦୌ ସହି ପାରିବି ନାହିଁ । ମୁ ତା'ର ଗୁଣ ବାହୁନି ବାହୁନି ଶେଷ-ର ଜୀବନ ହରାଇ ଦେବି କିମ୍ବା ଆତ୍ମହତ୍ୟା କରି ଇହଲୀଳା ଶେଷ କରିଦେବି । ତୁ ଠିକ୍ କହୁଛୁ, ତୋ'ର କଥା ଅନୁସାରେ ମୁଁ ଧୈର୍ଯ୍ୟ ଧାରଣ କରୁଛି । ଚାଲ, ଆମେ ଚାରିଆଡ଼େ ସୀତାଙ୍କୁ ଖୋଜ ବାହାର କରିବା ! ଶେଷରେ ଯଦି ଆମେ ବିଫଳ ହେଉ, ତେବେ ମୁଁ ନିଶ୍ଚିତ ଭାବରେ ଆତ୍ମହତ୍ୟା କରିଦେବି ।"

ଏହା କହି ଶ୍ରୀରାମ ଲକ୍ଷ୍ମଣଙ୍କ ସହିତ ଧନୁଶର ଧାରଣ କରି ବାହାରି ପଡ଼ିଲେ । ସେ ଲକ୍ଷ୍ମଣଙ୍କ ସହିତ ଧୈର୍ଯ୍ୟ ଧରି ଚାଲିଥାନ୍ତି ସତ, କିନ୍ତୁ ସୀତାଙ୍କ ବିରହ ସମ୍ପୂର୍ଣ୍ଣ ଭାବରେ ତାଙ୍କ ହୃଦୟକୁ ଆବୋରି ରହିଥିଲା । ସେ ଯାଉଁ ଯାଉଁ ହଠାତ୍ ପଥ ମଧ୍ୟରେ ଅଟକି ଯାଇ, ସୀତାଙ୍କ ନାମ ଧରି ପ୍ରଳାପ ଓ ବିଳାପ କରିବାରେ ଲାଗିଲେ । ବାଟରେ ସେ ସୀତାଙ୍କ ବେଣୀରେ ଗୁନ୍ଥା ଯାଇଥିବା ପୁଷ୍ପଗୁଚ୍ଛ ଦେଖି ତାକୁ ତଳୁ ଗୋଟାଇ ଆଣି ଅନେକ ବିଳାପ କଲେ । କିଛିଦୂର ଅତିକ୍ରମ କରିବା ପରେ ଗୋଟିଏ ସ୍ଥାନରେ ଯୁଦ୍ଧ ହୋଇଥିବାର ସେ କେତେକ ଚିହ୍ନ ଦେଖିବାକୁ ପାଇଲେ । ସେଠାରେ ଗୋଟିଏ ବିଶାଳ ଧନୁ ଖଣ୍ଡ ଖଣ୍ଡ ହୋଇ

ପଡ଼ିଥିଲା । ରଥର ଭଗ୍ନ ଖଣ୍ଡମାନ ଏଣେତେଣେ ପଡ଼ିଥିଲା । ତାକୁ ଦେଖି ଶ୍ରୀରାମ କହିଲେ—"ଲକ୍ଷ୍ମଣ, ଏଥିରୁ ମନେ ହେଉଛି, ସୀତାକୁ କୌଣସି ରାକ୍ଷସ ଅପହରଣ କରି ନେଇଯାଇଛି ତା' ସହିତ ଆଉ କୌଣସି ଜଣେ ଯୋଦ୍ଧା ଯୁଦ୍ଧ କରିଛି । ତା'ର ଚିହ୍ନ ଓ ଲକ୍ଷଣ ଏହିଠାରେ ଅବଶେଷ ରହିଛି । ରାକ୍ଷସମାନେ ଖର, ଦୂଷଣ ଓ ତ୍ରିଶିରା ବଧର ପ୍ରତିଶୋଧ ନେବା ପାଇଁ ମୋ' ପ୍ରାଣପ୍ରିୟାକୁ ଅପହରଣ କରି ନେଇଛନ୍ତି । ମୁଁ ସେମାନଙ୍କୁ କେବେହେଲେ ଛାଡ଼ିବି ନାହିଁ । ପୃଥିବୀରୁ ସମସ୍ତ ରାକ୍ଷସ କୁଳର ବିନାଶ ଲାଗି ମୁଁ ଆଜି ଶପଥ ଗ୍ରହଣ କରୁଛି । ମୋ' କବଳରୁ ଆଉ ରାକ୍ଷସକୁଳ ରକ୍ଷା ପାଇବ ନାହିଁ ।

ସୂତ ମହର୍ଷି କହିଲେ—"ହେ ମୁନିଗଣ, ଶ୍ରୀରାମଚନ୍ଦ୍ର ଏହିପରି ଭାବରେ ବିଳାପ କରି ଗୃଧ୍ରରାଜ ଜଟାୟୁ ଆହତ ହୋଇ ପଡ଼ିଥିବା ସ୍ଥାନ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେବାକୁ ଲାଗିଲେ ।"

## ଛପ୍ପୟ

ଜମ୍ବୁ ! କଦମ୍ବ ! ରସାଳ ! ପନସ ! ସିୟପତୋ ବତାଓ ।
ପ୍ରିୟା ଛପୀ ତୁମ କହଁ । ଶୀଘ୍ର ଶଶିବଦନ ଦଖାଓ ।।
କାଇ ତରୁନ ଢିଂଗ କହତ ଜନକତନୟା ତୁମ ଦେଖୀ ।
ସରିତା ଗୋଦାବରୀ ! କହା ସଖି ସିୟ ତୁମ ପେଖୀ ।
ଯୌଁ ପ୍ରଲପ ପୁନି ପୁନି କରେଂ, ସିରୀ ସରସ ରାଘବ ଭୟେ ।
ସର ସରିତା ବନ କନ୍ଦରା, ଢୂଁଢତ ଦଶି ଦକ୍ଷିଣ ଗୟେ ।।



ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ